ତୁମର କଣ୍ଠ୍ ଜବରା ଆସରେ
ଶୁଣିଚି ସେତିକି ଥର
ଆବୃତ୍ତି ତବ ଅତି ଅପୂର୍ବ
ଅଶେଷ ମୁଗ୍‌ଧକର ।

ଶବ୍ଦ-ଧ୍ୱନିର ଏପରି ଛନ୍ଦ
ଏପରି ଉଚ୍ଚାରଣ
ଶୁଣିନି ଏ ଯାଏଁ ଯନ୍ତ୍ର ବାଣୀର
ଏପରି ଉଦ୍‌ଘୋଷଣ ।

ତୁମରି ସେଇ ସେ ପ୍ରତିଭାର ଶିଖା
ଦେଖୁନି ମୁଁ କେଉଁଠାରେ
ଏଇ ଶ୍ରୋତା ଆଜ ବନ୍ଦେ ତୁମକୁ
ଗୋଟିଏ ନମସ୍କାରେ ।

ବଂଶୀଧର ମିଶ୍ର
ପଟାପୋଲ୍
କଟକ

ଲକ୍ଷ୍ମୀଧର ନାୟକ

# ଲେଖନୀର ସୁବର୍ଣ୍ଣ ଜୟନ୍ତୀ

ସଂପାଦକ

**ମୁରାରି ମୋହନ ଜେନା**

ମୁଖ୍ୟ-ବ୍ୟବସ୍ଥାପକ, ପ୍ରଚର ପ୍ରଜା ପରିଷଦ



ବିନୋଦବିହାରୀ, କଟକ-୨

ଲକ୍ଷ୍ମୀଧର ନାୟକ
# ଲେଖନୀର ସୁବର୍ଣ୍ଣ ଜୟନ୍ତୀ

ସଂପାଦକ :
ମୁରର ମୋହନ ଜେନା
ମୁଖ୍ୟ-ବ୍ୟବସ୍ଥାପକ, ପ୍ରଡସ୍ର ପୂଜା ପରିଷଦ

ପ୍ରକାଶକ :
ନାଳନ୍ଦା
ବିନୋଦବିହାରୀ, କଟକ—୨

ପ୍ରକାଶ କାଳ :
୪ ଡିସେମ୍ବର ୧୯୮୩

ପ୍ରଚ୍ଛଦ :
ଅସିତ ମୁଖାର୍ଜୀ

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଖୋଲ୍ଲସାହି, କଟକ—୧

ମୂଲ୍ୟ :
କୋଡ଼ିଏ ଟଙ୍କା

ସୁବର୍ଣ୍ଣ ଜୟନ୍ତୀ ସମାରୋହ ଅଭ୍ୟର୍ଥନା ସମିତି

ଅଧ୍ୟକ୍ଷ : ଡକ୍ଟର କାଳନ୍ଦୀଚରଣ ପାଣିଗ୍ରାହୀ

ଉପାଧ୍ୟକ୍ଷ : ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ସଂପାଦକ : ଶ୍ରୀ ମୁରରମୋହନ ଜେନା

# ସେମାନଙ୍କ ଲେଖନୀରୁ.....

ଡକ୍ଟର କାଳନ୍ଦୀଚରଣ ପାଣିଗ୍ରାହୀ

ଉଦୟନାଥ ଷଡ଼ଙ୍ଗୀ

ଡକ୍ଟର ସଦାଶିବ ମିଶ୍ର

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

ଡକ୍ଟର ମାୟାଧର ମାନସିଂହ

ଅଧ୍ୟାପିକା ସୁଲୋଚନା ଦାସ

ପ୍ରକାଶ କୁମାର ପରିଡ଼ା

ଅଧ୍ୟାପିକା ଜାନକୀ ଜେନା

ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର

ଅକ୍ଷୟ ମହାନ୍ତି

ପରମେଶ୍ୱର ତ୍ରିପାଠୀ

ଡକ୍ଟର କୁଞ୍ଜବିହାରୀ ଦାଶ

କମଳଲୋଚନ ମହାନ୍ତି

ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି

ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ

କ୍ଷୀରୋଦଚନ୍ଦ୍ର ଘୋଷାଲ

ଭଗବତପ୍ରସାଦ ଦାସ

ଅଶୋକ ମିଶ୍ର

ଦେବେନ୍ଦ୍ରକୁମାର ଭଞ୍ଜ

ରବିନ୍ଦ୍ରନାଥ ଶତପଥି

କୃଷ୍ଣଚନ୍ଦ୍ର ମହାନ୍ତି

ଚନ୍ଦ୍ର କାନୁନ୍‌ଗୋ

ଅମ୍ବରଞ୍ଜନ ରାୟ

ଡକ୍ଟର କୃଷ୍ଣଚରଣ ବେହେରା

ସଚ୍ଚିଦାନନ୍ଦ କର

ଶ୍ରୀମତୀ ଦୁର୍ଗା ମିଶ୍ର

ଶୁକଦେବ ସାହୁ

ଶିଖା ଦେବୀ

ପ୍ରସନ୍ନକୁମାର ମହାପାତ୍ର

ଅଧ୍ୟାପକ ଲକ୍ଷ୍ମୀନାରାୟଣ ରାୟସିଂହ

ଡକ୍ଟର ପ୍ରଫୁଲ୍ଲକୁମାର ମହାନ୍ତି

ଯତୀନ୍ଦ୍ରକୁମାର ଦାସ

ଅଧ୍ୟାପକ ନବକିଶୋର ପୁଷ୍ଟି

ବଂଶୀଧର ଭୂୟାଁ

ଡାକ୍ତର ବଙ୍କିମ ଦାସ

କାର୍ତ୍ତିକ କୁମାର ଘୋଷ

ରବିନାରାୟଣ ମହାପାତ୍ର

ବ୍ରଜମୋହନ ମହାନ୍ତି

ନବକିଶୋର ଦାସ

ଧରଣୀଧର ବେହେରା



ଅଙ୍କଲେଖ ଓ ଶେଷ ପୃଷ୍ଠା : ମୁରଲୀମୋହନ ଜେନା

ଭୁବନେଶ୍ୱର
ତା ୨୪ । ୧୧ । ୧୯୮୩

ଜାନକୀବଲ୍ଲଭ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ

# ବାର୍ତ୍ତା

ପ୍ରତିଭା ପୂଜା ପରିଷଦ ପକ୍ଷରୁ ଓଡ଼ିଶାର ଅନ୍ୟତମ ଲବ୍ଧପ୍ରତିଷ୍ଠ ଲେଖକ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ ସାହିତ୍ୟ ସାଧନାର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଆୟୋଜିତ ସୁବର୍ଣ୍ଣ ଜୟନ୍ତୀ ସମାବେଶ ଅବକାଶରେ ଏକ ଗ୍ରନ୍ଥ ଉନ୍ମୋଚନ ହେଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ । ମୁଁ ଏହି ସାଧୁ ଉଦ୍ୟମ ପାଇଁ ଉଦ୍ୟୋକ୍ତାମାନଙ୍କୁ ଅଭିନନ୍ଦନ ଜଣାଉଛି ଏବଂ ଲକ୍ଷ୍ମୀଧର ବାବୁଙ୍କ ଦୀର୍ଘ ଜୀବନ କାମନା କରୁଛି ।

( ଜାନକୀବଲ୍ଲଭ ପଟ୍ଟନାୟକ )



ଯେଉଁ ସହୃଦୟ ଲେଖକ-ଲେଖିକାମାନେ ତାଙ୍କ
ଲେଖାରେ ଏହି ଅଭିନନ୍ଦନ ଗ୍ରନ୍ଥକୁ ସମୃଦ୍ଧ କରିଛନ୍ତି, ସେମାନଙ୍କୁ
'ସ୍ୱତନ୍ତ୍ର ପୂଜା ପରିଷଦ'ର ହାର୍ଦ୍ଦିକ ଧନ୍ୟବାଦ....

# ଲକ୍ଷ୍ମୀଧର ନାୟକଙ୍କ ବଂଶଲତା

ଜେଜେ— ୰ ମଧୁସୂଦନ ନାୟକ

ବାପା— ୰ ବଳଭଦ୍ର ନାୟକ

ମା— ୰ କଣୋଖମଣି ଦେବୀ

ଭାଇ—ବନବିହାରୀ ନାୟକ

ଜନ୍ମସ୍ଥାନ—ଗୁଡ଼ୁପାଇଲେ (ଡେଲାଙ୍ଗ ଷ୍ଟେସନ,
ବେରବୋଇ ନିକଟସ୍ଥ)

ଜନ୍ମକାଳ—୧୯୧୩ ନଭେମ୍ବର ୧

ପତ୍ନୀ—ସନ୍ତୁମଣି ଦେବୀ

ସ୍ୱର୍ଗତପତ୍ନୀ—ଇନ୍ଦୁମତୀ ଦେବୀ

ଜ୍ୟେଷ୍ଠାକନ୍ୟା—ପ୍ରମୋଦିନୀ ମହାନ୍ତି

ଜାମାତା—ଡକ୍ଟର ପ୍ରଫୁଲ୍ଲକୁମାର ମହାନ୍ତି

ପ୍ରଥମ ପୁତ୍ର—ବିନୋଦବିହାରୀ ନାୟକ

ପୁତ୍ରବଧୂ—ବନ୍ଦିତା ନାୟକ

ଦ୍ୱିତୀୟ ପୁତ୍ର—ଡକ୍ଟର ପୁଲିନବିହାରୀ ନାୟକ

ପୁତ୍ରବଧୂ—ଶ୍ରୀମତୀ ନଳିନୀ ନାୟକ

ଦ୍ୱିତୀୟ କନ୍ୟା—ତ୍ରିବେଣୀ ପଟ୍ଟନାୟକ

ଜାମାତା—ଶୌର୍ଯ୍ୟପ୍ରକାଶ ପଟ୍ଟନାୟକ

ତୃତୀୟ କନ୍ୟା—ଲିଲି ମହାନ୍ତି

ଜାମାତା—କମଳକାନ୍ତ ମହାନ୍ତି

ସ୍ୱର୍ଗତ ପୁତ୍ର—ଗଗନ ବିହାରୀ ନାୟକ

ସ୍ୱର୍ଗତକନ୍ୟା—ଦୀପ୍ତି, ମୀରା, ପୂର୍ଣ୍ଣିମା

ଜନ୍ମିତ ଗ୍ରାମ 'ଗୁଡ଼ୁପାଇଲେ'ରୁ ୧୯୪୫ରେ ଜଟଣୀ ଆସିଲେ ଓ ସେଠାରେ ସ୍ଥାୟୀଭାବେ ମା'ଙ୍କ ନାମାନୁସାରେ ନିଜ ବାସଭବନକୁ 'କଣୋଖ ଭବନ' ନାମିତ କଲେ । ସେହି ଦିନଠାରୁ ଜଟଣୀରେ ଶ୍ରୀ ନାୟକ ସପରିବାର ସ୍ଥାୟୀଭାବେ ବସବାସ କରିଆସୁଅଛନ୍ତି ।

●

## ଶ୍ରୀ ନାୟକଙ୍କ ଏଯାବତ୍ ପ୍ରକାଶିତ ପୁସ୍ତକାବଳୀ ଓ ତାହାର ପ୍ରକାଶକାଳ

| | | | |
|---|---|---|---|
| **କବିତା :** | | ଆସିବ କେବେ ପ୍ରିୟ | ... ୧୯୫୨ |
| ବରହୂଣୀ ଓ ଅନ୍ୟାନ୍ୟ କବିତା | ... ୧୯୩୪ | ପ୍ରତିମା କଥା କୁହ | ... ୧୯୪୬ |
| ସେ | ... ୧୯୪୦ | ନାୟିକା ବଧୂ | ... ୧୯୮୨ |
| ଝୋମ୍ ଝର୍ଣା | ... ୧୯୭୦ | ସେଇ ଅଲୁଅ ପାଇଁ | ... ୧୯୮୨ |
| ଦ୍ୱଚନ୍ଦ୍ର ଜ୍ୟୋସ୍ନା | ... ୧୯୮୨ | ବର୍ଷାର ଶେଷ | ... ୧୯୫୨ |
| **ଗଳ୍ପ :** | | ସର୍ବହରା | ... ୧୯୪୭ |
| ଗୋଟିଏ ଘଡ଼ର ସାଥି | ... ୧୯୫୫ | ମୋ ସ୍ୱପ୍ନର ସହର | ... ୧୯୮୧ |
| କଙ୍କାଳ | ... ୧୯୫୫ | ଭୁଲିଲ ସବେ ସଖୀ | ... ୧୯୩୪ |
| ଚନ୍ଦ୍ର ଗୁଞ୍ଜନ | ... ୧୯୪୭ | ଚରିତ୍ରହୀନାର ଚିଠି | ... ୧୯୪୨ |
| **ନାଟକ :** | | ସେଇ ସୁନ୍ଦରୀ ତରୁଣୀ | ... ୧୯୫୭ |
| ଧର୍ମପତ୍ନୀ | ... ୧୯୫୦ | ବାହାନ୍ତି ପାଠାଗାର | ... ୧୯୪୬ |
| ଜମିଦାର | ... ୧୯୪୨ | ଅପୂର୍ବ ପ୍ରେମ | ... ୧୯୫୦ |
| ଲଲ ସ୍ୱରୂଜ | ... ୧୯୪୨ | ହେରୁ କଣ ମିଛ | ... ୧୯୩୬ |
| **ପ୍ରବନ୍ଧ :** | | ନୁହେଁ ସେ ପ୍ରେମିକା | ... ୧୯୪୦ |
| ସିଂହଭୂମିର ଗୋପବନ୍ଧୁ | ... ୧୯୬୭ | ସୁକାନ୍ତର ସ୍ତ୍ରୀ | ... ୧୯୪୦ |
| କେବେକେବେ ଲେଖା | ... ୧୯୮୦ | ସୁରଭି ସେବନାଳୟ | ... ୧୯୪୭ |
| **ଉପନ୍ୟାସ :** | | ସୁନା ପ୍ରତିମା | ... ୧୯୪୫ |
| ଉଦ୍‌ଭ୍ରାନ୍ତ | ... ୧୯୩୪ | ସେ ମରନାହିଁ | ... ୧୯୪୭ |
| ହା'ରେ ଦୁର୍ଭାଗା ଦେଶ | ... ୧୯୫୭ | ବେଲାଭୂମିର ଅନୁରାଧା | ... ୧୯୭୫ |
| ରକ୍ତଝର ଘେର | ... ୧୯୮୧ | **କେନ୍ଦ୍ର ପ୍ରେମିକ :** | |
| ନଷ୍ଟୀ ପୁନସ୍ମନା | ... ୧୯୮୨ | କେନ୍ଦ୍ର ପ୍ରେମିକା | ... ୧୯୭୦ |
| | | ଧରହୁଆଁର ବାହାରେ | ... ୧୯୩୮ |

### ପୁସ୍ତକର ପ୍ରାପ୍ତିସ୍ଥାନ :

ବୁକ୍‌ସ ଏଣ୍ଡ ବୁକ୍‌ସ, ବାଙ୍କାବଜାର, କଟକ-୨

ଓଡ଼ିଶା ବୁକ୍‌ଷ୍ଟୋର, ବିନୋଦବିହାରୀ, କଟକ-୨

ପୁସ୍ତକ ଭଣ୍ଡାର ବ୍ରହ୍ମପୁର-୧, ବାଙ୍କାବଜାର, କଟକ-୨

ଫେଣ୍ଡି ବୁକ୍‌ସ, ଜଗଶାଣ ଭବନ, ପୋ : ଜଟଣୀ, (ପୁରୀ)



# ଅଗ୍ରଲେଖ

ଓଡ଼ିଶାର ବରିଷ୍ଠ କବି, ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର ଓ ପ୍ରାବନ୍ଧିକ ଶ୍ରୀ ଲକ୍ଷ୍ମୀଧର ନାୟକ ତାଙ୍କର ନିରବଚ୍ଛିନ୍ନ ସାହିତ୍ୟ ସାଧନା ପାଇଁ ଓଡ଼ିଶାର ବିଦଗ୍ଧ ପାଠକ ମଣ୍ଡଳରେ ସୁପରିଚିତ ।

ଲୌହନଗରୀ ଜାମସେଦପୁରଠାରେ ଅବସ୍ଥାନ କରୁଥିବା ସମୟରେ ତାଙ୍କ ଲେଖକ ଜୀବନର ଶୁଭାରମ୍ଭ ହୋଇଥିଲା ୧୯୩୪ ମସିହାରେ । ସେଇ ବର୍ଷ ଗଞ୍ଜାମରେ 'ନିଖିଳ ଉତ୍କଳ କବି ସମ୍ମିଳନୀ'ର କବିତା ପ୍ରତିଯୋଗିତାରେ ଶ୍ରୀ ନାୟକଙ୍କ "ବିରହିଣୀ" କବିତା ସର୍ବଶ୍ରେଷ୍ଠ ବିବେଚିତ ହେବାରୁ ମଞ୍ଜୁଷା ଯୁବରାଜ କୃପାସିନ୍ଧୁ ପଟ୍ଟଦେବଙ୍କ ପ୍ରଦତ୍ତ ସ୍ୱର୍ଣ୍ଣ ପଦକ ପାଇ ସେ ସମ୍ମାନିତ ହୋଇଥିଲେ ।

ସେଇ ୧୯୩୪ରେ ପ୍ରଖ୍ୟାତ ସାହିତ୍ୟିକ ବାଳକୃଷ୍ଣ କରଙ୍କ ସଂପାଦିତ "ଆନନ୍ଦ ଲହରୀ ଉପନ୍ୟାସ ମାଳାର 'ସ୍ୱର୍ଗ' ଉପନ୍ୟାସ ସିରିଜ୍‌ରେ ଶ୍ରୀ ନାୟକଙ୍କର ଦୁଇଟି ଉପନ୍ୟାସ 'ଉଦ୍‌ଭ୍ରାନ୍ତ' ଓ 'ଭୁଲିଲ ପଥେ ପକ୍ଷୀ' ପ୍ରକାଶ ପାଇଥିଲା ଏବଂ ସେଥିପାଇଁ ୫ କର ତାଙ୍କୁ ଉତ୍ସାହିତ ପାରିଶ୍ରମିକ ଦେଇଥିଲେ । ଲେଖା-ଲେଖିପାଇଁ ବାଳକୃଷ୍ଣଙ୍କ ଭଳି ଜଣେ ସାହିତ୍ୟିକ, ସଂପାଦକ ତଥା ପ୍ରକାଶକଙ୍କଠାରୁ ପାରିଶ୍ରମିକ ପାଇବାରେ ଶ୍ରୀ ନାୟକ ହେଉଛନ୍ତି ଓଡ଼ିଶାରେ ସର୍ବ ପ୍ରଥମ ଔପନ୍ୟାସିକ ।

ବାଳକୃଷ୍ଣ କରଙ୍କ ଏଇ ଉତ୍ସାହ ଓ ପ୍ରେରଣା ହିଁ ଶ୍ରୀ ନାୟକଙ୍କର ସାହିତ୍ୟ ସାଧନା ପୀଠରେ ତାଙ୍କର ଅର୍ଘ୍ୟ ଢାଳି ଦେବା ପାଇଁ ସୁଯୋଗ ଦେଇଥିଲା ଏବଂ ତା' ପରଠୁ ଓଡ଼ିଶାର ତତ୍କାଳୀନ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା "ସହକାର", ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂପାଦିତ 'ନବଭାରତ', ସବୁଜ ସାହିତ୍ୟ ଗୋଷ୍ଠୀ ପକ୍ଷରୁ ପ୍ରକାଶିତ 'ଯୁଗବୀଣା' ଏବଂ କୃପାସିନ୍ଧୁ ପଟ୍ଟଦେବଙ୍କ ସଂପାଦିତ ସାପ୍ତାହିକ 'ନନ୍ଦନ'ରେ ଶ୍ରୀ ନାୟକ ଧାରାବାହିକ ଭାବେ ଲେଖାଲେଖି ଆରମ୍ଭ କରିଥିଲେ ।

ସେଇ ୧୯୩୪ ରେ 'ଭାରତ ସେବକ ସମାଜ'ର ସଭ୍ୟ କର୍ମବୀର ଲକ୍ଷ୍ମୀ-ନାରାୟଣ ସାହୁଙ୍କ ଉତ୍ସାହରେ ଶ୍ରୀ ନାୟକ ଜାମ୍‌ସେଦପୁରଠାରେ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ପ୍ରତିଷ୍ଠା କରି ଓଡ଼ିଆ ଭାଷା-ସାହିତ୍ୟର ସୁରକ୍ଷା ପାଇଁ ଅନୁଷ୍ଠାନିକ ପଦକ୍ଷେପ ନେଇଥିଲେ । ବିଭିନ୍ନ ସମୟରେ ଏହି ଅନୁଷ୍ଠାନ ପକ୍ଷରୁ ଆୟୋଜିତ ବାର୍ଷିକ ସମ୍ମିଳନୀ ମାନଙ୍କରେ ଉଦ୍‌ବୋଧନ ଦେବାପାଇଁ ବିଶିଷ୍ଟ ଅତିଥି ଭାବେ ଅଠମଲ୍ଲିକ ରାଜା କିଶୋର ଚନ୍ଦ୍ର ଦେଓ, କେନ୍ଦୁଝରର ଶ୍ରେଷ୍ଠରାଜ୍ୟ ଲକ୍ଷ୍ମୀ-ନାରାୟଣ ଭଞ୍ଜଦେଓ, କବି ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ଯଦୁମଣି ମଙ୍ଗରାଜ, ଡ଼ଃ କାଳନ୍ଦୀ ଚରଣ ପାଣିଗ୍ରାହୀ, ଡକ୍ଟର ମାୟାଧର ମାନସିଂହ, କବି ରାଧାମୋହନ ଗଡ଼ନାୟକ, ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ, ଗୋକୁଳଚନ୍ଦ୍ର ଶତପଥୀ, ବାମଦେବ ମିଶ୍ର ପ୍ରଭୃତି ଆସି-ଥିଲେ । ଏଇ ଜନନାୟକ ଓ ସାହିତ୍ୟିକ ମାନଙ୍କ ନିବିଡ଼ ସଂପର୍କରେ ଆସି ଶ୍ରୀ ନାୟକ ଜାତୀୟତାବାଦୀ ମନୋଭାବରେ ଅନୁପ୍ରାଣିତ ହୋଇ ଓଡ଼ିଶା ସହିତ ବିଚ୍ଛିନ୍ନାଞ୍ଚଳ ସିଂହଭୂମିର ସାଂସ୍କୃତିକ ଯୋଗସୂତ୍ରକୁ ନିବିଡ଼ତର କରିବା ଦିଗରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ ।

ଏଣୁ ୧୯୩୪ ସାଲଟି ହେଉଛି, ଶ୍ରୀ ନାୟକଙ୍କ ଜୀବନରେ ସାହିତ୍ୟ ସାଧନାର ପ୍ରଥମ ଉନ୍ମେଷ ବର୍ଷ ଏବଂ ସେଇ ୧୯୩୪ରୁ ଏଇ ୧୯୮୩ ପର୍ଯ୍ୟନ୍ତ ଜଣେ ନୀରବ ନିଷ୍ଠାବାନ ସାହିତ୍ୟ ସାଧକ ଭାବେ, ଉତ୍କଳ ସାରସ୍ୱତ ପୀଠରେ ସେ ତାଙ୍କର ଅର୍ଘ୍ୟ ନିବେଦନ କରି ଆସିଛନ୍ତି ।

ଏ ଭିତରେ ତାଙ୍କର ୨୫ଟି ଉପନ୍ୟାସ, ୨ଟି ଗଳ୍ପ ପୁସ୍ତକ, ୩ଟି କବିତା ସଂଗ୍ରହ, ୩ଟି ନାଟକ, ୨ଟି ପ୍ରବନ୍ଧ ପୁସ୍ତକ ଛଡ଼ା ବିଭିନ୍ନ ପତ୍ରପତ୍ରିକାରେ ବହୁ କବିତା, ଗଳ୍ପ, ପ୍ରବନ୍ଧାଦି ପ୍ରକାଶ ପାଇଛି ।

ଶ୍ରୀ ନାୟକ ସ୍ୱକୀୟ ସାହିତ୍ୟ କୃତିରେ କେବଳ ମାତ୍ର ସନ୍ତୁଷ୍ଟ ନରହି ତାଙ୍କ ସଂସ୍ପର୍ଶରେ ଆସିଥିବା ବହୁ ତରୁଣ ପ୍ରତିଭାକୁ ଲେଖା-ଲେଖି କରିବା ପାଇଁ ଉତ୍ସାହ ଓ ପ୍ରେରଣା ଦେଇଛନ୍ତି । ତାଙ୍କର କର୍ମକ୍ଷେତ୍ର ଜାମସେଦପୁର, ରାଉରକେଲା, କଟକ ଏବଂ ତାଙ୍କର ନିବାସସ୍ଥଳୀ କଟଣୀଠାରେ ବିଭିନ୍ନ ସାହିତ୍ୟାନୁଷ୍ଠାନ ପ୍ରତିଷ୍ଠା କରିବାରେ ସେ ମୁଖ୍ୟ ଭୂମିକା ମଧ୍ୟ ଗ୍ରହଣ କରିଛନ୍ତି ।

କବି ଓ ଔପନ୍ୟାସିକ ଭାବେ କେବଳ ନୁହେଁ, ଜଣେ ଯଶସ୍ୱୀ ନାଟ୍ୟକାର ଭାବେ ଶ୍ରୀ ନାୟକ ମଧ୍ୟ ଓଡ଼ିଶାରେ ସୁପରିଚିତ । ତାଙ୍କର 'ଧର୍ମପତ୍ନୀ' ନାଟକ

ଓଡ଼ିଶାର ବ୍ୟବସାୟୀ ରଙ୍ଗମଞ୍ଚ ଅନ୍ନପୂର୍ଣ୍ଣା ଥିଏଟର ଦ୍ୱାରା (ଏ ଗ୍ରୁପ) କଟକରେ ମଞ୍ଚସ୍ଥ ହୋଇଥିଲା ୧୯୪୬ ରେ । ତତ୍କାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ଏହାକୁ ଉଦ୍‌ଘାଟନ କରିଥିଲେ ଏବଂ ସେହି ନାଟକର ଆଦର୍ଶ କଥାବସ୍ତୁ ଏବଂ ନୂତନ ଶୈଳୀରେ ମୁଗ୍ଧ ହୋଇ ସାହିତ୍ୟିକ ବାଳକୃଷ୍ଣ କର, ଉତ୍କଳ ସାହିତ୍ୟ ସମାଜର ତତ୍କାଳୀନ ସଂପାଦକ ତଥା 'କଳଙ୍କ ଭରତି'ର ପ୍ରତିଷ୍ଠାତା ବଲ୍ଲଭ ଚରଣ ପଟ୍ଟନାୟକ ଏବଂ ଓଡ଼ିଶା ବିଧାନ ସଭାର ସଭ୍ୟା ଶ୍ରୀମତୀ ସରଳା ଦେବୀ, ଅନ୍ନପୂର୍ଣ୍ଣା ଥିଏଟରର ପାଦପ୍ରଦୀପ ସମ୍ମୁଖରେ ସେମାନଙ୍କର ଉତ୍ସାହଜନକ ଅଭି-ଭାଷଣ ଦେଇ ଶ୍ରୀ ନାୟକଙ୍କୁ ଅଭିନନ୍ଦିତ କରିଥିଲେ ।

ଅନ୍ନପୂର୍ଣ୍ଣା ଥିଏଟର ସଂସ୍ଥା ପକ୍ଷରୁ ଏଥିପାଇଁ ଶ୍ରୀ ନାୟକଙ୍କୁ ଦେଢ଼ଶହ ଟଙ୍କା ପାରିଶ୍ରମିକ ମଧ୍ୟ ଦିଆଯାଇଥିଲା ଏବଂ ବ୍ୟବସାୟୀ ରଙ୍ଗମଞ୍ଚ ପାଇଁ ନାଟକ ଲେଖି ପାରିଶ୍ରମିକ ପାଇବାରେ ଶ୍ରୀ ନାୟକ ହେଉଛନ୍ତି ଓଡ଼ିଶାରେ ସର୍ବ ପ୍ରଥମ ନାଟ୍ୟକାର ।

'ଧର୍ମପତ୍ନୀ' ନାଟକର ଅସାମାନ୍ୟ ସଫଳତା ପରେ ଶ୍ରୀ ନାୟକଙ୍କୁ ଅନ୍ୟ ନାଟକ ଲେଖିବା ପାଇଁ ଅନ୍ନପୂର୍ଣ୍ଣା ଥିଏଟରର ପରିଚାଳକ ବାଉରିବନ୍ଧୁ ମହାନ୍ତି ଅନୁରୋଧ କରନ୍ତି ଏବଂ ଶ୍ରୀ ନାୟକଙ୍କ ଅନ୍ୟ ଦୁଇଟି ନାଟକ "ଜମିଦାର" ଏବଂ 'ଲାଲ ସୁରୁଜ' ମଧ୍ୟ ମଞ୍ଚସ୍ଥ ହୁଏ କଟକରେ । ଲାଲସୁରୁଜର ଭାଷା, ଶୈଳୀ ଏବଂ କଥାବସ୍ତୁ ଏପରି ଅଭିନବ ଏବଂ ଯୁଗୋପଯୋଗୀ ହୋଇଥିଲା ଯେ ସେଥିପାଇଁ ଏ ସଂପର୍କରେ 'ନୂଆ ଦୁନିଆ' ସାପ୍ତାହିକ ପତ୍ରିକା ମନ୍ତବ୍ୟ ଦେଇ ଲେଖିଥିଲା—"ଲାଲସୁରୁଜ ନାଟକ ଓଡ଼ିଆ ରଙ୍ଗମଞ୍ଚରେ ଏ ପର୍ଯ୍ୟନ୍ତ ଅଭିନୀତ ହୋଇ ଆସୁଥିବା ନାଟକ ଗୁଡ଼ିକର ଗତାନୁଗତିକତା ବିରୁଦ୍ଧରେ ଏକ ନୂତନ ବିଦ୍ରୋହ । ଏହାର କଥାବସ୍ତୁ ଏକ ନୂତନ ଚିନ୍ତାଧାରାର ବାର୍ତ୍ତାବହ ।" ଏହି ନାଟକଟି କଟକରେ ଏକାଦିକ୍ରମେ ସେ ସମୟରେ ୫୦ ରାତି ଧରି ଅଭିନୀତ ହୋଇ ଏକ ନୂତନ ରେକର୍ଡ ସୃଷ୍ଟି କରିଥିଲା ।

ଯଶସ୍ୱୀ ନାଟ୍ୟକାର ଭାବେ କେବଳ ନୁହେଁ, ୧୯୫୦ ମସିହାରେ ଏକ ଚଳନ୍ତି ସଂସ୍ଥା 'ଭାରତୀ ନାଟ୍ୟ ମନ୍ଦିର ଲି' ମଧ୍ୟ ସେ ପ୍ରତିଷ୍ଠା କରିଥିଲେ ଏବଂ 'ରୂପଶ୍ରୀ ଥିଏଟର' ମ୍ୟାନେଜର ପୃଷ୍ଠପୋଷକତା କରିବାକୁ ଯାଇ ଆର୍ଥିକ ଦୃଷ୍ଟିରୁ ହତଶ୍ରାନ୍ତ ହୋଇଥିଲେ । ଏହି "ରୂପଶ୍ରୀ" ଥିଏଟର ଦୀର୍ଘ ୧୩ ମାସ କାଳ ଶ୍ରୀ ନାୟକଙ୍କ ତତ୍ତ୍ୱାବଧାନରେ ରହି ଓଡ଼ିଆ ରଙ୍ଗମଞ୍ଚର ଅଭିନୟ କ୍ଷେତ୍ରରେ ଏକ ନୂତନ କଳା ଶୈଳୀର ଦିଗ୍‌ଦର୍ଶନ ହେଉଥିଲା ।

ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ଶ୍ରୀ ନାୟକଙ୍କର ସୁନାମ ରହିଛି । ଇସ୍ପାତ-ନଗରୀ ରାଉରକେଲାରେ ସେ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ (P.T.I)ର ପ୍ରତିନିଧି ଥିଲେ । ଦୈନିକ ମାତୃଭୂମିର ପ୍ରତିନିଧି ରୂପେ ସେ ବହୁବର୍ଷ କାର୍ଯ୍ୟ କରିଥିଲେ । ଦ୍ୱନଷ୍ଟ ତାଙ୍କ ସମ୍ପାଦନାରେ ଜାମସେଦପୁରରୁ "ବଛିନ୍ନା", ରାଉରକେଲାରୁ ଇଂରାଜୀ ସାପ୍ତାହିକ 'ରାଉରକେଲା ପୋଷ୍ଟ' ଓ ଓଡ଼ିଆ ସାପ୍ତାହିକ 'ଅଞ୍ଚଳର ଡାକ' ପ୍ରକାଶ ପାଉଥିଲା ।

ଓଡ଼ିଶାର ସର୍ବ ପ୍ରଥମ ଚଳଚ୍ଚିତ୍ର ପତ୍ରିକାର ସଂପାଦକ ଭାବେ ମଧ୍ୟ ଶ୍ରୀ ନାୟକ ହେଉଛନ୍ତି ଅଗ୍ରଣୀ । ତାଙ୍କଦ୍ୱାରା ସମ୍ପାଦିତ "ଚିତ୍ରଲେଖା" ଓଡ଼ିଶାର ନାଟକ ଓ ସିନେମା ଦର୍ଶକଙ୍କ ଭିତରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ।

ଶ୍ରୀ ନାୟକଙ୍କ ସମ୍ପାଦନାରେ ପ୍ରକାଶିତ ଅନ୍ୟ ଏକ ଦ୍ୱିମାସିକ ପତ୍ରିକା, "ହାତୀ ସିଂହ" ମଧ୍ୟ ତାର ବିଶେଷତ୍ୱ ପାଇଁ ବିଦଗ୍ଧ ପାଠକ ମହଲରେ ଉଚ୍ଚ ପ୍ରଶଂସିତ ହୋଇଥିଲା । ବର୍ଷରେ ପ୍ରକାଶିତ ଛଅଟି ସଂଖ୍ୟାରୁ ଗୋଟିଏ ସଂପୂର୍ଣ୍ଣ କବିତା, ଗୋଟିଏ ସାମାଜିକ ନାଟକ ଓ ଚାରୋଟି ସଂପୂର୍ଣ୍ଣ ଉପନ୍ୟାସ ପ୍ରକାଶ ପାଉଥିଲା । ଏଥିରେ ପ୍ରଥିତଯଶା ପ୍ରାବନ୍ଧିକ ଗୋବିନ୍ଦ ତ୍ରିପାଠୀଙ୍କ 'ମାୟାବୀ' ଉପନ୍ୟାସ ଏବଂ କବି ନନ୍ଦକିଶୋର ଦାସଙ୍କ 'ଛିନ୍ନ ଶୃଙ୍ଖଳ" ଉପନ୍ୟାସ ଆତ୍ମ ପ୍ରକାଶ କରିଥିଲା । ଶ୍ରୀ ନାୟକଙ୍କ ଏକ ସଂପୂର୍ଣ୍ଣ କାବ୍ୟ 'ସେ' ଏବଂ ଉଚ୍ଚପ୍ରଶଂସିତ ସାମାଜିକ ନାଟକ "ଧର୍ମ ପତ୍ନୀ" ଏହି ସିରିଜ୍‌ରେ ଆତ୍ମପ୍ରକାଶ କରିଥିଲା ।

କବି ଶ୍ରୀ ନାୟକ, କବିତା ଆବୃତ୍ତିରେ ଏକ ଅନନ୍ୟସାଧାରଣ ଶିଳ୍ପୀ । ତାଙ୍କ ପ୍ରଣୀତ "ଖୋଲା ଝର୍କା" କବିତା ପୁସ୍ତକରୁ ନିର୍ବାଚିତ ୧୦ଟି କବିତାରୁ ଏକକ ଆବୃତ୍ତି ବ୍ୟବସ୍ଥା କରି ଯାଇଥିଲା ୧୯୭୦ ମସିହାରେ କଟକର ଶ୍ରୀରାମଚନ୍ଦ୍ର ଭବନରେ । ଏହାର ବ୍ୟବସ୍ଥାପକ ଥିଲେ ଓଡ଼ିଶାର ବରିଷ୍ଠ ଔପନ୍ୟାସିକ ଆଡ଼ଭୋକେଟ ଶ୍ରୀ ରାଜକିଶୋର ପଟ୍ଟନାୟକ । ଏହି ଆବୃତ୍ତି ବ୍ୟବସ୍ଥାର ଅଭିନବତ୍ୱ ହେଲା ଏହାର ଶ୍ରୋତା ମାନଙ୍କୁ ପ୍ରବେଶ ମୂଲ୍ୟ ଦେଇ କବିତା ଶୁଣିବାକୁ ପଡ଼ିଥିଲା । ବିଶେଷ କରି ଶ୍ରୋତା ମାନଙ୍କ ପାଇଁ ଉଚିତ ସ୍ଥାନ ସଂରକ୍ଷିତ କରି ନ ଯାଇ ମାତ୍ର ପଚିଶ ପଇସା ମୂଲ୍ୟର ଟିକେଟ କଣାରେ ବସିବାର ବ୍ୟବସ୍ଥା କରି ଯାଇଥିଲା ଓ ଅନ୍ୟୁନ ୧୭୦ ଜଣ ଶ୍ରୋତାଙ୍କ ସମ୍ମୁଖରେ ସାର୍ଦ୍ଧ ଦେଢ଼ଘଣ୍ଟା ଧରି ଶ୍ରୀ ନାୟକ ତାଙ୍କର ଓଜସ୍ୱିନୀ ଗଳାରେ ଆବୃତ୍ତି ଶୈଳୀର ଏକ ଚମତ୍କାର ଯାଦୁକାର୍ଯ୍ୟ ଉପସ୍ଥାପିତ କରିଥିଲେ ଏବଂ ଏଥିଯୋଗୁ ସାହିତ୍ୟିକ ତଥା ଆଡ଼ଭୋକେଟ ମଧୁ ମହାନ୍ତିଙ୍କ ଦ୍ୱାରା ବିଶେଷଭାବେ ଅଭିନନ୍ଦିତ ହୋଇଥିଲେ । ଏହି 'ଖୋଲା ଝର୍କା' କବିତା ପୁସ୍ତକର ଦୁଇଟି କବିତା ଏବେ ନିକଟ ଅତୀତରେ

ଓଡ଼ିଶାର ବରିଷ୍ଠ ସଙ୍ଗୀତଜ୍ଞ ଅକ୍ଷୟ ମହାନ୍ତିଙ୍କ ପ୍ରଯୋଜନାରେ 'ଗାଥାନି କମ୍ପାନି' ରେକର୍ଡ଼ ସଂସ୍ଥା ଦ୍ୱାରା କବିଙ୍କ ସ୍ୱ କଣ୍ଠରେ ରେକର୍ଡ଼ କରାଯାଇ ଓଡ଼ିଆ କବିତାରେ ପ୍ରଥମ ଆବୃତ୍ତି ରେକର୍ଡ଼ ହିସେ ସମଗ୍ର ଓଡ଼ିଶାରେ ପ୍ରଶଂସିତ ଓ ପ୍ରଶଂସିତ ହୋଇଛି ।

ଶ୍ରୀ ନାୟକଙ୍କ ପ୍ରଣୀତ ପୁସ୍ତକ ଗୁଡ଼ିକର ଅଧିକାଂଶର ବହୁ ସଂସ୍କରଣ ହୋଇ ସାରିଛି । ବିଶେଷ କରି ୧୯୬୪ରେ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ସଂପାଦିତ 'ଆନନ୍ଦ ଲହରୀ' ଉପନ୍ୟାସମାଳାରେ ପ୍ରକାଶିତ 'ବୁଲବୁଲ ସତ୍‌ଚ ପକ୍ଷୀ' ଉପନ୍ୟାସର ଏକବିଂଶତମ ପରିମାର୍ଜିତ ଶୋଭନ ସଂସ୍କରଣ ଚଳିତ ୧୯୮୩ରେ ପ୍ରକାଶ ପାଇବା ଆମ ଓଡ଼ିଆ ସାହିତ୍ୟର ଆଳାପ ଆଲୋଚନା ତଥା ବିଚାର ବିବେଚନାରେ ନିଶ୍ଚିତ ଭାବେ ଏକ ଉଲ୍ଲେଖଯୋଗ୍ୟ ଘଟଣା ।

ଓଡ଼ିଶାର ଇସ୍ପାତ ନଗରୀ ରାଉରକେଲାଠାରେ ୭ ଜଣ ଯୁବ ସାହିତ୍ୟିକ "ସପ୍ତରଥୀ"ଙ୍କୁ ନେଇ ସେ "ରାଉରକେଲା କଲଚରାଲ ଏକାଡେମୀ" ପ୍ରତିଷ୍ଠା କରିଥିଲେ ଏବଂ ତା'ର ପ୍ରଥମ ସଭାପତି ଓ ସେ ଅନୁଷ୍ଠାନର ମୁଖପତ୍ର "ନବପତ୍ର" ସାହିତ୍ୟ ପତ୍ରିକାର ତତ୍କାଳୀନ ସଂପାଦକ ଭାବେ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟର ପ୍ରସାର ଦିଗରେ ବିଶେଷ ଭୂମିକା ଗ୍ରହଣ କରିଥିଲେ ।

ଏହାଛଡ଼ା ସେ ଜଣେ ଗୀତିକାର ଓ ସଙ୍ଗୀତଜ୍ଞ ମଧ୍ୟ । ବିଶେଷତଃ ସେ ନିଜେ ହାରମୋନିୟମ ବଜାଇ ଗୀତ ଗାଇବା ଆରମ୍ଭ କରିବା ପରିବେଶ ଯେ ନିଜେ ନ ଦେଖିଛି ସେ ତାଙ୍କର ସଙ୍ଗୀତ ଗାନର ବୈଚିତ୍ର୍ୟ ଓ ମାଧୁର୍ଯ୍ୟ ଉପଲବ୍ଧି କରିପାରିବ ନାହିଁ । ଏଇଠି ତାଙ୍କର ଗୋଟିଏ ସଙ୍ଗୀତ ଗାନର ଘଟଣା ଉଲ୍ଲେଖ କରୁଛି । ସେ ଦିନ ଡକ୍ଟର ମାୟାଧର ମାନସିଂହଙ୍କ ଦଶମ ବାର୍ଷିକ ଶ୍ରାଦ୍ଧ ସଭା ପ୍ରତିଷ୍ଠା ପୂଜା ପରିଷଦ ପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ପାଳିତ ହେଉଥାଏ । ସେ ଦିନର ଶ୍ରାଦ୍ଧ ସଭାରେ ଶ୍ରୀ ନାୟକ ସଭାପତିର ଦାୟିତ୍ୱ ତୁଲାଉ ଥାଆନ୍ତି । ଶ୍ରାଦ୍ଧ ଦିବସ ଖୁବ୍ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ସାହିତ୍ୟିକ ପରିବେଶରେ ଆରେଇ ଚାଲିଥାଏ । ବିଭିନ୍ନ ବକ୍ତାମାନଙ୍କ ଭାଷଣ ଶେଷ ହେଲାପରେ ଶ୍ରୀ ନାୟକ ତାଙ୍କ ସଭାପତି ଭାଷଣ ଆରମ୍ଭ କଲେ । ପ୍ରାୟ ୧୦।୧୫ ମିନିଟ ଭାଷଣ ଦେଲାପରେ ମାନସିଂହଙ୍କ ମୃତ୍ୟୁର ଠିକ ଦିନ ପରେ ସେ ପ୍ରବାସରେ ରହି ତାଙ୍କ ସଂପର୍କରେ ଯେଉଁ ସଙ୍ଗୀତଟି ଲେଖିଥିଲେ, ତାହାହିଁ ହାରମୋନିୟମ ଧରି ଆକୁଳ କଣ୍ଠରେ ଗାଇ ଉଠିଲେ । ସେ ଦଙ୍ଗୀତରେ କି ଅପୂର୍ବ ନକୁଡ଼ତା ! ସଭାସ୍ଥଳୀ ବିଷାଦମୟ ହୋଇ ଉଠିଲା । ଗୀତ ଶେଷ ଅଧିକ ବେଳକୁ ତାଙ୍କ ଆଖିରୁ ଧାରା ଶ୍ରାବଣ ପରି ଲୁହ ଗଡ଼ି ଯାଉଛି, ସମସ୍ତ ଉପସ୍ଥିତ ସହୃଦୟ ବର୍ଗଙ୍କୁ ସେଇଭଳି ଲୁହ-ଗାଧୁଆ କରି ! ଏଇଭଳି ସଙ୍ଗୀତଜ୍ଞ ହିସାବରେ ତାଙ୍କର ମରମୀ ଓ ଦରଦୀ ପ୍ରାଣ ।

ଏଣୁ ଶ୍ରୀ ନାୟକଙ୍କ ବିଗତ ପଚାଶ ବର୍ଷର ଲେଖକ ଜୀବନ—ସୃଜନଶୀଳ ସାହିତ୍ୟ, ସାଂସ୍କୃତିକ ଓ ଜାତୀୟତାବାଦୀ ସଂଗଠନର ଏକ ବହୁମୁଖୀ ସାଧନାର ଇତିହାସ ।

ଏଇ ସବୁ ଉପଲବ୍ଧି କାରଣରୁ ଶ୍ରୀ ନାୟକଙ୍କ ସାହିତ୍ୟ ସାଧନା ଉତ୍କଳ ଭାରତୀ ପୀଠରେ ଏକ ଅନୁଷ୍ଠାନିକ ମହତ୍ତ୍ୱ ବହନ କରୁଥିବାରୁ ୧୯୩୪ଠାରୁ ୧୯୮୩ ପର୍ଯ୍ୟନ୍ତ ୫୦ ବର୍ଷ ପୂର୍ତ୍ତି ଅବକାଶରେ ଶ୍ରୀ ନାୟକଙ୍କ ସକ୍ରିୟ ସୃଷ୍ଟିଶୀଳ ଲେଖକର ସୁବର୍ଣ୍ଣ ଜୟନ୍ତୀ ପାଳନର ଯେ ଯଥାର୍ଥତା ରହିଛି, ତା' ଉପଲବ୍ଧି କରି "ପ୍ରତିଭା ପୂଜା ପରିଷଦ" ପକ୍ଷରୁ ସୁବର୍ଣ୍ଣ ଜୟନ୍ତୀ ସମାରୋହର ଆୟୋଜନ ଓ ଏଇ ଅବସରରେ 'ଲେଖକର ସୁବର୍ଣ୍ଣ ଜୟନ୍ତୀ ଗ୍ରନ୍ଥ ପ୍ରକାଶନର ବ୍ୟବସ୍ଥା କରାଯାଇଛି । ଲେଖକମାନଙ୍କ ଜନ୍ମ ତିଥିରେ ତାଙ୍କ ଜୟନ୍ତୀ ପାଳନର ପରମ୍ପରା ଆମ ସାହିତ୍ୟିକ ବାୟୁମଣ୍ଡଳରେ ଗତ କେତେ ବର୍ଷ ଧରି ବେଶ୍ ଘନେଇ ଉଠିଛି ଓ ସାହିତ୍ୟିକ ଜୀବନକୁ ନିଜ ଜୀବଦ୍ଦଶାରେ ଜାଣିବାର ବହୁ କିଛି ପ୍ରେରଣା ପ୍ରଦାନ କରୁଛି ।

ସେଇ ପ୍ରଚଳିତ ପରମ୍ପରାରେ ଏହା ଲକ୍ଷ୍ମୀଧର ନାୟକଙ୍କର ୧୯୧୩ ମସିହାର ଜନ୍ମତିଥି ଅନୁଯାୟୀ ସତୁରି ବର୍ଷର ଜୟନ୍ତୀ ପାଳନ ନୁହେଁ । ଏହା ତାଙ୍କର ସକ୍ରିୟ ଓ ସୃଜନଶୀଳ ଲେଖକର 'ସୁବର୍ଣ୍ଣ ଜୟନ୍ତୀ' । ଲେଖକର ସୁବର୍ଣ୍ଣ ଜୟନ୍ତୀ ପାଳନ ଆମ ସାହିତ୍ୟିକ ସହୃଦୟତାର ସେତୁବନ୍ଧ ସଦିଚ୍ଛାରେ ଆମର ଉତ୍ତର ଦାୟାଦ ମାନଙ୍କ ନିକଟରେ ଯେ ଏକ ନୂତନ ପରିବେଶ ଓ ପରମ୍ପରା ସୃଷ୍ଟି କରି ସ୍ମରଣୀୟ ହୋଇ ରହିବ, ସେଇ ବିଶ୍ୱସ୍ତ ବିଶ୍ୱାସହିଁ ପୋଷଣ କରୁଛି ।

ବୟସ ଦୃଷ୍ଟିରୁ ଶ୍ରୀ ନାୟକ ଆଜି ଜୀବନର ଅପରାହ୍ଣ ପାର ହୋଇ ଆଜି କିଛିବାଟ ଆଗେଇ ଗଲେଣି । ତଥାପି ସାହିତ୍ୟର ସୃଷ୍ଟି ଓ ସର୍ଜନା ପାଇଁ ତାଙ୍କର ଯୁବକ ସୁଲଭ ଉନ୍ମାଦନାର ଚିର ଚଞ୍ଚଳ ଆବେଗ ଓ ଜୀବନ୍ତ ସାହିତ୍ୟର ଉତ୍ତର ସାଧକଙ୍କୁ ଯେ ପଦେ ପଦେ ଆଗାମୀ ଦିନର ସାହିତ୍ୟ ସୃଷ୍ଟିରେ ଉଦ୍‌ବେଳିତ ଓ ଉନ୍ମାଦିତ କରିବ, ମୁଁ ତାଙ୍କୁ ମୋ ଅନ୍ତରରେ ଏଇଥିପାଇଁ ବାରମ୍ବାର ପ୍ରଣତି ଓ ଅଭିନନ୍ଦନ ଏଇ ଅବସରରେ ତାହାହିଁ ଜଣାଇବାକୁ ସ୍ଥିର କରିଛି ମାତ୍ର ।

**Gangadhar Mohapatra**
MINISTER
Education & Youth Services
Orissa

Telephone { Office-51500
Res-50701
Bhubaneswar
The 3rd November 1983
Do. No. 2327/MEYS

Dear Sri Jena,

I am happy to know that Prativa Puja Parishad is going to falicitate Shri Lasmidhar Nayak, an eminent writer in a befitting manner on completion of the 50th year of his devoted service to the cause of Oriya Literature. Shri Nayak will continue to be remembered for his contribution to the Oriya literature.

I wish your function all success.
with regards
Yours sincerely
Sd/ Gangadhar Mohapatra

**Shri Murari Mohan Jena**
Chief Organiser
Prativa Puja Parishad
Bhagat Pur, Cuttack-9



**Shri Jugal Kishore Pattanaik**
Minister of state
Labour & Employment, Tourism
Sports & Culture, Orissa.

Bhubaneswar
15-11-83

# MESSAGE

I am glad to know that Prativa Puja parishad are bringing out a souvenir on the occassion of 50th year of literary creation of Shri Laxmidhar Nayak, a reputed writer of Orissa. This is no doubt a new attempt so far Oriya literature is concerned.

I wish every success of the souvenir & its unveiling ceremony.

Sd / J. K. Pattanaik
15-11-83



Former President, Utkal P. C. C.

Phone : 50627
5 Ekamra Colony
Ashok Nagar
Bhubaneswar-9
Orissa, Pin-751009
Date : 6-11-83

ପ୍ରିୟ ମୁରଳି ବାବୁ,

ଅତି ଆନନ୍ଦ ତଥା ଗର୍ବର ବିଷୟ ଯେ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ ସାହିତ୍ୟ ସାଧନାର ସୁବର୍ଣ୍ଣ ଜୟନ୍ତୀ ମହା ସମାରୋହରେ ପାଳନ କରିବାକୁ 'ପ୍ରତିଭା ପୂଜା ପରିଷଦ' ପକ୍ଷରୁ ଆପଣମାନେ ବ୍ରତୀ ହୋଇଛନ୍ତି । ଆପଣମାନଙ୍କ ଉଦ୍ୟମ ସଫଳୀଭୂତ ହେଉ ।

ଗତ ୫୦ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ଲକ୍ଷ୍ମୀଧର ବାବୁଙ୍କ ସହ ଓ ତାଙ୍କ ପରିବାର ସହ ଘନିଷ୍ଠ ଭାବରେ ଜଡ଼ିତ । ତାଙ୍କ ସ୍ୱର୍ଗୀୟ ପିତା ଟାଟା କମ୍ପାନୀର ବୃତ୍ତିରେ ରହି ଓଡ଼ିଆ ଭାଷା-ସାହିତ୍ୟ ଆନ୍ଦୋଳନ ସହ ଜଡ଼ିତ ଥିଲେ ଏବଂ ମୋର ସ୍ୱର୍ଗୀୟ ପିତାଙ୍କ ସହ ମୁଁ ମଧ୍ୟ ତାଙ୍କ ଆତିଥ୍ୟ ଗ୍ରହଣ କରିବାର ଅବକାଶ ପାଇଛି ।

ଯୁବାବସ୍ଥାରୁ ଲକ୍ଷ୍ମୀଧର ବାବୁ ସାହିତ୍ୟାନୁରାଗୀ ଥିଲେ ଏବଂ ତାଙ୍କ ଲେଖନୀରୁ ଓଜସ୍ୱିନୀଭାବ ପ୍ରକାଶ ପାଉଥିଲା । ଲକ୍ଷ୍ମୀଧର ବାବୁଙ୍କ ଦ୍ୱାରା ଛିନ୍ନମସ୍ତା ଉତ୍କଳ ଜନନୀର ପ୍ରଚ୍ଛଦପଟ ସହ ଜାମସେଦପୁରରୁ ପ୍ରକାଶିତ ମାସିକ ପତ୍ର "ବିଚ୍ଛିନ୍ନା" ଆଜି ମଧ୍ୟ ଆଖି ଆଗରେ ନାଚି ଉଠୁଛି । ତାଙ୍କ ଓଜସ୍ୱିନୀ ଲେଖନୀ ବିଚ୍ଛିନ୍ନାଞ୍ଚଳର ଓଡ଼ିଆଙ୍କ ମନୋବଳ ବୃଦ୍ଧି କରିବାରେ ସହାୟକ ହୋଇଥିଲା । ସେ ସିଂହଭୂମି ସାହିତ୍ୟ ସମାଜର ପ୍ରତିଷ୍ଠାତା ରୂପେ ଓଡ଼ିଶାର ବରେଣ୍ୟ ସାହିତ୍ୟିକ ତଥା ନେତୃବର୍ଗଙ୍କୁ ନେଇ ଜାମସେଦପୁର ଉତ୍କଳ ଆସୋସିଏସନ ସଭାପତିତ୍ୱରେ ଯେଉଁ ଅଧିବେଶନ ସବୁ କରାଉଥିଲେ ତା'ର ଏକମାତ୍ର ଉଦ୍ଦେଶ୍ୟ ସାହିତ୍ୟ ସାଧନା ସହ ବିଚ୍ଛିନ୍ନାଞ୍ଚଳ ସିଂହଭୂମିର ଓଡ଼ିଆଙ୍କ ଭାଷା ଓ ସଂସ୍କୃତିକୁ ରକ୍ଷା କରିବା ହିଁ ଥିଲା । ଆଜି ତାଙ୍କ ଅନୁପସ୍ଥିତିରେ ସେ ଅଭାବ ପଦେପଦେ ଅନୁଭୂତ ହେଉଛି ।

ଲକ୍ଷ୍ମୀଧର ବାବୁ ଆଜୀବନ ସାହିତ୍ୟାନୁରାଗୀ ଏବଂ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କ ଦାନ ଚିର ସ୍ମରଣୀୟ ହୋଇ ରହିବ । ଜଗନ୍ନାଥ ତାଙ୍କୁ ସୁସ୍ଥ ରଖି ଓଡ଼ିଆ ସାହିତ୍ୟ ସେବାରେ ନିୟୋଜିତ ରଖନ୍ତୁ, ଏହାହିଁ କାମନା ।

ଆପଣଙ୍କର

ବିଜୟ କୁମାର ପାଣି

ଡକ୍ଟର କେଶବଚନ୍ଦ୍ର ସାହୁ
ପ୍ରଫେସର ପଡ଼ା                ତା ୩-୧୧-୮୪

ସ୍ନେହେଷୁ ମୁରଲୀ ମୋହନ,

ସାହିତ୍ୟିକ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକଙ୍କ ଲେଖନୀର ସୁବର୍ଣ୍ଣ ଜୟନ୍ତୀ ସମାରୋହ ପ୍ରଭାତ ପୂଜା ପରିଷଦର ମୁଖ୍ୟ-ବ୍ୟବସ୍ଥାପକ ହିସାବରେ ତମେ ଯେଉଁ ଉଦ୍ୟମ କରିଛ, ତାହା ନିଶ୍ଚିତଭାବେ ଓଡ଼ିଆ ସାହିତ୍ୟ ଇତିହାସରେ ଏକ ଉଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିବ । ଏଥିପାଇଁ ତମକୁ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ଯାହାଙ୍କ ଲେଖନୀର ଏ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ହେଉଛି, ତାଙ୍କର ସୁସ୍ଥ ଜୀବନ କାମନା କରୁଛି ।

ତୁମର
ଶୁଭାନୁଧ୍ୟାୟୀ
କେଶବଚନ୍ଦ୍ର ସାହୁ
ସମ୍ପାଦକ "ବାଳୀ କଲମ"



**Sri B. K Mahanti**

P. O. Birmitrapur
Dist. Sundergarh (Orissa)
Pin Code-770033
Date—11-11-83

Dear Sri Jena

I have learnt from news-paper that you are observing the "Golden Jublee" of the literary carrier of Sri Laxmidhar Nayak, writer of repute of Orissa and also an intimate friend of mine. On this occasion you are also bringing out a souvenir to high-light his literary activities. Any compliment will be inadequate in his favour. Moreover the novels, short stories, poems, as well as dramas written by him is no doubt high in order so far Oriya literature is concerned.

Your untiring effort to honour Sri Nayak, as a literary talent of Orissa is no doubt highly commendable. I wish your function a success and also pray God for long life of Sri Nayak.

Yours,
**Binoy Mohanty**

To

**Sri Murari Mohan Jena**
Chief Executive,
Prativa Puja Parisad,
Bhagatpur, Cuttck-9.

କାମଦେବପୁର
୩/ନଭେମ୍ବର ୧୯୮୩

ପ୍ରିୟ ଜେନାବାବୁ,

"ପ୍ରତିଭା ପୂଜା ପରିଷଦ" ତରଫରୁ ପ୍ରେରିତ ଆପଣଙ୍କର ପତ୍ରଟି ତା ୨-୧୧-୮୩ରେ ପାଇଲି । ସଙ୍ଗେ ସଙ୍ଗେ ମୋର ମତାମତ ଦେଉଛି । ଲକ୍ଷ୍ମୀଧର ବାବୁଙ୍କ ପ୍ରତିଭାର ମୁଁ ମଧ୍ୟ ଜଣେ ପୂଜାରୀ । ତାଙ୍କର ଦୁର୍ଭାଗ୍ୟ ସେ ଓଡ଼ିଶାରେ ଜନ୍ମ ଗ୍ରହଣ କଲେ । ଆମ ଜାତି କେତେଦୂର ପ୍ରତିଭା ପୂଜା କରି ଜାଣେ, ସେ ବିଷୟରେ ଆପଣ ନିଜେ ଜାଣିଥିବେ । ମୁଁ ବା କଣ କହିବି ? ତଥାପି ଆପଣମାନେ ଏ ବିଷୟରେ ଅଗ୍ରଣୀ ହୋଇ ଯେ ପଦକ୍ଷେପ ଉଠାଇଛନ୍ତି, ସେଥି-ପାଇଁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ।

ଲକ୍ଷ୍ମୀଧର ବାବୁଙ୍କର ବହୁମୁଖୀ ପ୍ରତିଭାର ମୂଲ୍ୟାୟନ କରିବାର କ୍ଷମତା ମୋର ନାହିଁ । ତାଙ୍କ ସାଙ୍ଗରେ ଆଳାପ କଲାବେଳେ ମନେହୁଏ ସେ ଯେପରି କେବେ କ୍ଳାନ୍ତି ଅନୁଭବ କରନ୍ତି ନାହିଁ ଏବଂ ସବୁବେଳେ କର୍ମ-ତତ୍ପରତା ଏବଂ ଯୁବ ସୁଲଭ ହସ୍ତର ଏକ ଜ୍ୱଳନ୍ତ ପ୍ରମାଣ । ଓଡ଼ିଆ ଭାଷା/ଓଡ଼ିଆ ସାହିତ୍ୟ/ଓ ଓଡ଼ିଶାକୁ ସେ ସବୁବେଳେ ଦୁନିଆ ଆଗରେ ଶ୍ରେଷ୍ଠ ବୋଲି ପ୍ରତିପାଦିତ କରିବା ପାଇଁ ଚେଷ୍ଟିତ ଓ କାର୍ଯ୍ୟରତ । ସେ ପ୍ରବଳ ଇଚ୍ଛାଶକ୍ତିର ଏକ ଜ୍ୱଳନ୍ତ ଉତ୍ସ ।

ମୋର ଈଶ୍ୱରଙ୍କଠାରେ ପ୍ରାର୍ଥନା, ସେ ସୁସ୍ଥ ଶରୀରରେ ଦୀର୍ଘ ଜୀବନ ଯାପନ କରନ୍ତୁ । ଏ ଦେଶ ଓ ଜାତି ତାଙ୍କଠାରୁ ଅନେକ କିଛି ଆଶା କରେ ।

॥ ଇତି ॥
ଗୁଣମୁଗ୍ଧ
ଶ୍ରୀ ରଘୁନାଥ ମିଶ୍ର
କାମଦେବପୁର

# ଓଡ଼ିଶା ସାହିତ୍ୟ ଏକାଡେ଼ମୀ
## ଭୁବନେଶ୍ୱର
### ମାନନୀୟ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ

ମହୋଦୟ,

ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ବଳିଷ୍ଠ ଔପନ୍ୟାସିକ ଭାବରେ ଆପଣ ସମ୍ମାନିତ ।

ଏକାଧାରରେ ଔପନ୍ୟାସିକ, ଗାଳ୍ପିକ, କବି ଓ ନାଟ୍ୟକାର ଭାବରେ ଆପଣ ବହୁମୁଖୀ ପ୍ରତିଭାର ଅଧିକାରୀ ।

ଓଡ଼ିଶା ଓ ଓଡ଼ିଶା ବାହାରେ ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର ପାଇଁ ଆପଣଙ୍କର ନିରବଚ୍ଛିନ୍ନ ଉଦ୍ୟମ ପ୍ରଶଂସନୀୟ ।

ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଆପଣଙ୍କୁ ଅଭିନନ୍ଦନ ଜ୍ଞାପନ କରି ଗୌରବାନ୍ୱିତ ମନେ କରୁଅଛି ।

ମନୋରଞ୍ଜନ ଦାସ
ସମ୍ପାଦକ

ମତଲୁବ୍ ଅଲି
ସଭାପତି

ତା ୧୬-୩-୬୭



# ଓଡ଼ିଆ ନାଟକ ଶତବାର୍ଷିକୀ

୧୯୭୭

ଶ୍ରୀ ଲକ୍ଷ୍ମୀଧର ନାୟକ

ମହାଶୟେ,

ଓଡ଼ିଆ ନାଟ୍ୟକଳାର ସମୃଦ୍ଧି ଓ ସଂରକ୍ଷଣ କଲେ ଆପଣଙ୍କର ଅବିରାମ ଶ୍ରମ-ସାଧନା ଅବିସ୍ମରଣୀୟ ।

ଅଜିର ଏହି ଓଡ଼ିଆ ନାଟକ ଶତବାର୍ଷିକୀ ଅବସରରେ ଆପଣଙ୍କ ଅନବଦ୍ୟ କୃତିତ୍ୱ ସ୍ମରଣ କରି 'ଉତ୍କଳ ନାଟ୍ୟ ସଂଘ' ଆପଣଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜ୍ଞାପନ କରୁଅଛି ।

| ବୃନ୍ଦାବନ ଚନ୍ଦ୍ର ରଥ | କିଶୋର ଜେନା | |
|---|---|---|
| ସାଧାରଣ ସମ୍ପାଦକ | ଶ୍ରୀ ଶ୍ୟାମସୁନ୍ଦର ଦାସ | ରାଜକିଶୋର ଦାସ |
| ଉତ୍କଳ ନାଟ୍ୟ ସଂଘ | ସଭାପତି | ସଭାପତି |
| | | ଶତବାର୍ଷିକୀ କମିଟି |



## ଓଡ଼ିଶାର ବଶିଷ୍ଠ ଔପନ୍ୟାସିକ, ଗାଳ୍ପିକ, ପ୍ରାବନ୍ଧିକ, ସଂଗଠକ ଓ ସାଂବାଦକ
## ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ,

ମହାଶୟ, ସମୀପେଷୁ ।

ଆପଣ ଉତ୍କଳ ଭରତଙ୍କର ଜଣେ ପ୍ରିୟ ନନ୍ଦନ । ଆପଙ୍କ ପ୍ରତଭାର ଆଲୋକରେ ଓଡ଼ିଆ ସାହିତ୍ୟର ଦଶ-ଦଶ ଉଜ୍ଜ୍ୱଳ । ଅପଙ୍କର କୃତ ଓ କୃତିଙ୍କୁ ସର୍ବସ୍ତରଗସ୍ତ ସୁଖ୍ୟାତ ଅର୍ଜନ କରିବାରେ ସକ୍ଷମ ହୋଇଛ । କଥା ଓ କାର୍ଯ୍ୟର ସମନ୍ୱୟ ସଂପାଦନା କରିବା ଆପଙ୍କ ଚରିତର ବୈଶିଷ୍ଟ୍ୟ । ଗଭୀର ନମ୍ରତା, ଅଟଳ ଅଧ୍ୟବସାୟ, ପ୍ରବଳ ପ୍ରଚେଷ୍ଟା ଓ କଠୋର କର୍ତ୍ତବ୍ୟ-ପରାୟଣତା ଅପଙ୍କୁ କୋଟିକରେ ଗୋଟିଏ କରି ଗଢ଼ି ତୋଳିଛି । ଅପଙ୍କର ସୌଜନ୍ୟ-ସ୍ନିଗ୍ଧ ବ୍ୟବହାର ଶତ୍ରୁକୁ ବି କ୍ଷଣକରେ ମିତ୍ର କରିଥାଏ ।

ଆଜ ଏହି ପୁଣ୍ୟ ଅବସରରେ 'କଳାବିନୋଦ' ପକ୍ଷରୁ ଅପଙ୍କୁ ସମ୍ମାନିତ କରିଯିବା ସଙ୍ଗେ ସଙ୍ଗେ ଅପଣ ଦୀର୍ଘ ଜୀବନ ଲାଭ କରି, ନିରାମୟ ଶରୀରରେ, ଦଶ, ଦେଶର ସେବାରେ ସତତ ବ୍ରତୀ ରହନ୍ତୁ ବୋଲି ଈଶ୍ୱରଙ୍କଠାରେ ପ୍ରାର୍ଥନା କରାଯାଉଛି । ॥ ଇତ ॥

| | | |
|---|---|---|
| ବିନ୍ଧ୍ୟାନନ୍ଦ କର | B. N. Mohapatra | ଅପଙ୍କର ସଦ୍‌ଗୁଣ-ମୁଗ୍ଧ |
| ସଭାପତି | ମୁରଲୀ ଜେନା | ପରମାନନ୍ଦ ଅଧିକାରୀ |
| କଳାବିନୋଦ | ମନୋରମା ମହାପାତ୍ର | ଭିକାରୀ ବଳ |
| | ଉପ-ସଭାପତି | ସମ୍ପାଦକ |
| | କଳାବିନୋଦ | କଳାବିନୋଦ |

ଉତ୍ସବର ବିଶିଷ୍ଟ ଅତିଥି ବୃନ୍ଦ :

ଦୁର୍ଗାମାଧବ ମିଶ୍ର
ଶ୍ରୀରାମଚନ୍ଦ୍ର ଦାଶ
କୃତ୍ତିବାସ ଦାଶ
ହରିହର ମହାପାତ୍ର
ସଦାଶିବ ମିଶ୍ର

ଉଦୟନାଥ ଷଡ଼ଙ୍ଗୀ
ଉତ୍ସବର
ସଭାପତି
୧୭ । ୧୦ । ୭୨

# କଲଚରାଲ ଏକାଡେମୀ

## ପ୍ରଥିତଯଶା ଔପନ୍ୟାସିକ, କବି ଓ ନାଟ୍ୟକାର
## ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ

ସମ୍ମାନାସ୍ପଦେଷୁ ।

ମହାଶୟ,

କଲ୍‌ଚରାଲ୍‌ ଏକାଡେମୀ ପକ୍ଷରୁ ଆୟୋଜିତ ପ୍ରଥମ ରାଜ୍ୟସ୍ତରୀୟ ଲୋକ-ନାଟକ ମହୋତ୍ସବ ଅବସରରେ ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇବାର ସୁଯୋଗ ଲାଭକରି ଆମ୍ଭେମାନେ ଆଜି ଅସୀମ ଆନନ୍ଦରେ ଉଦ୍‌ବେଳିତ ।

ଅର୍ଦ୍ଧ ଶତାବ୍ଦୀ ଧରି ଓଡ଼ିଆ ସାହିତ୍ୟର ନିରବଚ୍ଛିନ୍ନ ସାଧକ ଏବଂ ସ୍ରଷ୍ଟା ହିସାବରେ ଉପନ୍ୟାସ, ଗଳ୍ପ, କବିତା ଏବଂ ନାଟକ ରଚନା କ୍ଷେତ୍ରରେ ଆପଣ ଅଶେଷ କୃତିତ୍ୱ ପ୍ରଦର୍ଶନ କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ବିଚ୍ଛିନ୍ନାଞ୍ଚଳ ସିଂହଭୂମି ଅଞ୍ଚଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ ଆପଣ ମଧ୍ୟ ଜୀବନର ଦୀର୍ଘ ସମୟ ସଂଗ୍ରାମ କରିଛନ୍ତି ।

ଆପଣ କେବଳ ସୁନିପୁଣ ଲେଖକ ଓ ସାହିତ୍ୟ ସ୍ରଷ୍ଟା ନୁହନ୍ତି, ସୁ-ବକ୍ତା ମଧ୍ୟ । ସାହିତ୍ୟ ତଥା ସଂସ୍କୃତି କ୍ଷେତ୍ରରେ ସୁଦକ୍ଷ ସଂଗଠକ ଭାବେ ଆପଣଙ୍କର ସୁଖ୍ୟାତି ରହିଛି । ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଆପଣ ବହୁ ଅନୁଷ୍ଠାନର ଜନ୍ମଦାତା ହିସାବରେ ଅଜସ୍ର ତରୁଣ ପ୍ରାଣକୁ ଅନୁପ୍ରାଣିତ କରିଛନ୍ତି ।

ରାଉରକେଲାରେ ଅବସ୍ଥାନ କାଳରେ ଆପଣ ଆମର ଏହି ମହାଭାରତୀୟ ଶିଳ୍ପ ନଗରୀରେ ଯେଉଁ ପ୍ରଥମ ସାହିତ୍ୟିକ ଅନୁଷ୍ଠାନ 'କଲଚରାଲ ଏକାଡେମୀ ପ୍ରତିଷ୍ଠା କରିଥିଲେ, ତା'ର ପକ୍ଷରୁ ଲୋକନାଟକ ମହୋତ୍ସବ ଆୟୋଜିତ ହେଉଛି ।

ଆପଣ ଆମ ଅନୁଷ୍ଠାନର ପ୍ରତିଷ୍ଠାତା ସଭାପତି ଓ ଆମର ସାହିତ୍ୟିକ ମୁଖପତ୍ର 'ନବପଥ'ର ପ୍ରଥମ ସମ୍ପାଦକ । ଆମେମାନେ ଏକଦା ଆପଣଙ୍କର ସତୀର୍ଥ ସହକର୍ମୀ ରୂପେ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରି ଆମର ମିଳିତ ପ୍ରଚେଷ୍ଟାରେ ପ୍ରତିଷ୍ଠିତ ସାହିତ୍ୟ ଅନୁଷ୍ଠାନକୁ ବହୁ ଝଡ଼ ଝଞ୍ଜା ମଧ୍ୟରେ ଦୀର୍ଘ ଷୋଳ ବର୍ଷ ଧରି ବଞ୍ଚାଇ ରଖି ପାରିଛୁ ।

ହେ ବରେଣ୍ୟ ଅତିଥି ! ଆଜିର ଏହି ଶୁଭ ଅବସରରେ ଆପଣ ଆମର ଶ୍ରଦ୍ଧାପୂର୍ଣ୍ଣ ବିନମ୍ର ଅଭିନନ୍ଦନ ଗ୍ରହଣ କରନ୍ତୁ । ଆପଣଙ୍କର ସ୍ନେହାସ୍ପଦ ବିନୀତ ବନ୍ଧୁ ହିସାବରେ ଆମ୍ଭେମାନେ ଆପଣଙ୍କର ସୁଦୀର୍ଘ କର୍ମମୟ ଜୀବନ କାମନା କରୁଛୁ ।

ଆପଣଙ୍କର ଶୁଭାନୁଧ୍ୟାୟୀ
କଲ୍‌ଚରାଲ୍‌ ଏକାଡେମୀ
ସଭ୍ୟବୃନ୍ଦ

ରାଉରକେଲା
ତା ୨୧ । ୧୧ । ୭୬

# ପଦ୍ମମଣି ସାହିତ୍ୟ ସଂସଦ

## ଉଦୟପୁର,(ନୂଆ ଗାଁ) ପୁରୀ

ମାନପତ୍ର .

ସାହିତ୍ୟ ସମୁନ୍ନତି ବ୍ରତୀ କନକସ୍ତୁ

ଶ୍ରୀ ଲକ୍ଷ୍ମୀଧର ନାୟକ, ମହୋଦୟ
କଟଣୀ (ପୁରୀ)

ମାନନୀୟେଷୁ !

ଆପଣଙ୍କର ନିପୁଣ ଲେଖନୀ, ମାନବ ପ୍ରାଣରେ ଗଭୀର ନୈରାଶ୍ୟ ମଧ୍ୟରେ ଉଜ୍ଜ୍ୱଳ ଆଶାର ସଞ୍ଚାର କରିଅଛି ।

ଆପଣ ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର ତଥା କବି ରୂପେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ଆପଣଙ୍କ ସୃଷ୍ଟି ସମ୍ଭାରରେ ଦୁଷ୍ଟ, ଶିଷ୍ଟ, ଆଦର୍ଶ, ଅନାଦର୍ଶ, ଇତ୍ୟାଦି ସମାଜର ନାନାବିଧ ଚରିତ୍ରର ବୈଷମ୍ୟ, ବୈଚିତ୍ର୍ୟ ତଥା ବିଚ୍ଛିନ୍ନତାହିଁ ଆତ୍ମପ୍ରକାଶ କରି ବିଷାଦ ମଧ୍ୟରେ ହର୍ଷର ଆଲୋଡ଼ନ, ପୁଣି ଜୀବନ ପଥରେ ଅନ୍ଧକାରକୁ ବିଦୂରିତ କରି ଦିବ୍ୟ ଆଲୋକର ସନ୍ଧାନ ଦେଇଛି ।

ଓଡ଼ିଆ ସାହିତ୍ୟ, ସଂସ୍କୃତି, ଶିଳ୍ପ ଓ ସ୍ଥାପତ୍ୟର ବିକାଶ କଳ୍ପେ ପ୍ରତିଷ୍ଠିତ ଏହି ଅନୁଷ୍ଠାନ ଆଜି ଆପଣଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରି ସ୍ୱ କର୍ତ୍ତବ୍ୟ ମାତ୍ର ସମ୍ପାଦନ କରୁଅଛି ।

ଉଦୟପୁର
୨୫।୪।୯୮

ରମାନାଥ ପଣ୍ଡା
ସଭାପତି

ର. ମିଶ୍ର
ସହପତି

ଦାଶରଥି ପଟ୍ଟନାୟକ
ସମ୍ପାଦକ

ପ୍ରତାପଚନ୍ଦ୍ର ମହାନ୍ତି
ସମ୍ମାନିତ ଅତିଥି

ନିତ୍ୟାନନ୍ଦ ମହାପାତ୍ର
ମୁଖ୍ୟ ଅତିଥି



# ସାହିତ୍ୟିକ ପତ୍ରାବଳୀ

( ସେମାନଙ୍କର ବନ୍ଧୁ ପତ୍ରମଧ୍ୟରୁ ଗୋଟିଏ, ଦୁଇଟି··· )

---

*Radhamohan Gadanayak*

ବନ୍ଧୁ ଲକ୍ଷ୍ମୀଧର ନାୟକ, ପ୍ରୀତିଭାଜନେଷୁ

## ପ୍ରେମ ଓ କଳା

ବହୁପର ଜୀବନରେ ଖାଇଅଛୁ ନିଶାର ଚନ୍ଦ୍ରିକା
କୁହୁଡ଼ ପଥେ ତୁହି ଗ୍ରାସିଅଛୁ ତୁମାରିକା ଉଷାର ଭୂମିକା
ସେଥିପାଇଁ ଯିଏ ଭଜେ ଯାହା ସ୍ୱପ୍ନ, ଯାହା ବସ୍ତୁ,
ଆଜି ଏଇ ଅଦ୍ଭୁତ ଜଗତେ
ବନ୍ଧୁ ଏ ଦୁଷ୍କୃତ ତୋର ନାନ୍ଦୀ ତୋଳେ ମୋ ଜୀବନ ପଥେ ।

ଅପୂର୍ଣ୍ଣ ଅତୃପ୍ତ ପ୍ରେମ ପ୍ରାଣେ ସୃଜେ ଉଦ୍‌ବେଳ ଉଚ୍ଛ୍ୱାସ
ରେଖା-ଲେଖା-ଶିଳ୍ପତଳେ ଦିଏ ତା'ର ସ୍ମୃତିର ପ୍ରକାଶ ।
ପ୍ରେମର ଅଗାଧ ରସେ ମଜ୍ଜିଗଲେ ଆତ୍ମା ଅହରହ,
ହଜିଯାଏ କଥା, କାବ୍ୟ, ହଜିଯାଏ କଳା ।

କଥାର ଉଚ୍ଛ୍ୱାସେ ତୁହି ହଜାଇଛୁ ଆପଣାର କଥା-କଳା-ଶିଳ୍ପ
ହୃଦର ନିଶ୍ୱାସେ ତୁହି ନିଭାଇଲୁ ରଙ୍ଗମଞ୍ଚ ଅନ୍ତରର ଦୀପ,
ଦହନର ଦାହେ ତୁହି ଜାଳିଅଛୁ କବିତାର ବସନ୍ତ-କାନନ
ପ୍ରେମ କରି ଉଜାଡ଼ିଛୁ ଭକ୍ତିଭୂମି କଳାର ଭୁବନ ।

କଳାର ପୂଜାରୀ ନୋହୁ, ଆଜି ତୁହି କଳାର ନାୟକ
ପ୍ରେମାସକ୍ତ କବି ମୁହିଁ ଆଜି ତୋର ସମୁଗ୍ଧ ଗାୟକ ।



ତୋର
ମୋହନ

କଟକ
୨୨।୮।୭୪

*Radhamohan Gadanayak.*

ପ୍ରୀତିର ଲକ୍ଷ୍ମୀଧର,

କବି Walt Whitman କହିଛନ୍ତି—
'He who touches my book
Touches a man"

ତୋ ଚିଠି ଖାଲି ହରଫ୍‌ର ସମାହାର ନୁହେଁ, ରକ୍ତ ମାଂସର ବସ୍ତୁ । ସ୍ପର୍ଶ ଯଦି, କଥା କହେ; ଚିଠିରେ ମୁଁ ପାଇଛି ତୋର କଣ୍ଠର ସ୍ୱର, ତୋର ସମ୍ପର୍ଶ । ସବୁଠି ଲେଖିଛୁ—ପ୍ରତିଦାନରେ ଦେବାର କିଛି ନାହିଁ ।

ସ୍ନେହର, ପ୍ରୀତିର ଏତେ ପ୍ରାଚୁର୍ଯ୍ୟ ମୁଁ ରଖିବି କେଉଁଠି ? ଘରକୁ ନେଇ ଯିବାକୁ ପ୍ରଲୋଭନ ହେଉଛି, ମାତ୍ର ଯିବାର ପରିସ୍ଥିତି ନାହିଁ । ଟିକିଏ ଭଲ ହେଇ ଗଲଣି । ତୁ ଆ, ଦଶହରା ପରେ ମୁଁ ଯାଇ ୭।୮ ଦିନ ରହି ଆସିବି ।

ତୁ କେବେ ଆସି ପାରିବୁ ପଠିବ ଲେଖ । ନାନା ଜଞ୍ଜାଳ, ତା' ଭିତରୁ ବାହାରି ଆସିବା, ସମ୍ଭବ ନୁହେଁ ଜାଣିଛି, ତଥାପି ତୁ ଆସି ପାରିଲେ ମୋର ଦୁଇଟି ଦିନ ସୁପ୍ତିଲ ହୋଇ ଉଠିବ ।

ଶ୍ରୀମତୀଙ୍କୁ ମୋର ନମସ୍କାର, ପିଲାପିଲିମାନଙ୍କୁ ସ୍ନେହ ଦେବୁ । ତୁ ହରଷ ନେବୁ । ଉତ୍ତର ଶୀଘ୍ର ଦେବୁ ।

ତୋର
ମୋହନ



*Dr. Harekrushna Mahatab*

Phone-52002
Ekamra Nivas
Bhubaneswar-751002
ତା ୧୭।୧୨।୭୭

ଲକ୍ଷ୍ମୀଧର,

'ସିଂହଭୂମିର ଗୋପବନ୍ଧୁ' ପୁସ୍ତକଟି ପାଇଲି ଏବଂ ପଢ଼ିଲି । ସିଂହଭୂମିରେ ଗୋପବନ୍ଧୁଙ୍କ କାର୍ଯ୍ୟ ସାଧାରଣ ସ୍ତରରେ ଜଣାଥିଲା । କିନ୍ତୁ ପୁସ୍ତକଟିରୁ ତାଙ୍କର ବିସ୍ତୃତ କାର୍ଯ୍ୟକ୍ରମର ବିବରଣୀ ଜଣାପଡ଼ୁଛି । ପରିଶ୍ରମ କରି ପୁସ୍ତକଟି ପ୍ରକାଶ କରିଛ, ସେଥିପାଇଁ ଧନ୍ୟବାଦ ।

ହରେକୃଷ୍ଣ ମହତାବ୍



କଟକ-୯
୨୫ । ୯ । ୭୭

ପ୍ରିୟ ଲକ୍ଷ୍ମୀଧର ବାବୁ

ଆପଣଙ୍କ ପତ୍ର ପାଇଲି । ସେ ଏକ କବିତା କହିଲେ ଚଳେ ।

ଆପଣ କଟକରୁ ଫେରିବେ ଓ ଏଠୁ ରାଉରକେଲା ଯିବେ ବୋଲି ମୁଁ ଅପେକ୍ଷା କରିଥିଲି । ପରେ ପ୍ରଫୁଲ୍ଲଙ୍କ ଘରକୁ ଯିବାରେ ଜାଣିଲି ଯେ ଆପଣ ସେଇଆଡ଼େ ସେଇଆଡ଼େ ଚାଲିଗଲେ । ଆପଣଙ୍କ ସହିତ ଦେଖା ଓ କଥା ହେଲେ, ମୁଁ ଏକ ବିଶୁଦ୍ଧ ଆନନ୍ଦ ପାଉଛି । କାରଣ ଆପଣ ନିଷ୍କପଟ ଲୋକ । ବିଶୁଦ୍ଧ ଆତ୍ମିକ ସାହଚର୍ଯ୍ୟ ପାଇଁ ମୋର ଆତ୍ମା ଯେ କି ବିଫଳ ଚିତ୍କାର କରି ଆସିଛି ଏହି ଦୀର୍ଘ ଜୀବନଯାକ, ତମେ, ଲକ୍ଷ୍ମୀଧର ବାବୁ, ଏଇ ଗତ କେତେ ଦିନର ସହବାସ ଫଳରେ ହୁଏତ କିଂଚିତ୍ ଧାରଣା କରିପାରିଥିବ । ଆପଣ ଏଠାରୁ ଚାଲିଗଲା ପରେ, ମୁଁ ତେଣୁ, ପୂର୍ବ ଅପେକ୍ଷା ଅଧିକ ଏକାକୀ ଅନୁଭବ କରୁଚି ।

ମୁଁ ଏଠାରେ ବନ୍ଧୁମାନଙ୍କୁ 'ରାଉରକେଲା ପୋଷ୍ଟ' ନେଇ କହୁଚି । ସମସ୍ତେ ସ୍ୱୀକାରନ୍ତି ବଡ଼ କୌଶଳରେ ଯୋଗ । ଓଡ଼ିଆ ବୁଦ୍ଧିଜୀବୀମାନଙ୍କ ଭିତରେ ଆପଣ ହେଉଛନ୍ତି ଏକମାତ୍ର ଲୋକ, ଯେ ନିଜ ବୁଦ୍ଧି, ଚତୁରତା ଓ କର୍ମକୁଶଳତା ସହିତ ଲୋକଙ୍କ ପରିଚାଳନା କରି ଏବଂ ତଥାପି ସାଧୁ ଆତ୍ମନିର୍ଭରତା ଓ ଆତ୍ମମର୍ଯ୍ୟାଦାକୁ ଅକ୍ଷତ ରଖି, ସମୃଦ୍ଧି ଓ ସମ୍ମାନିତ ଜୀବନଯାପନ କରିପାରିଛନ୍ତି । ମୋ ଜୀବନଟା ଯେ ,ଅଧିକାଂଶରେ 'ବେକାର' ଭଳି ରହିଗଲା,' ଜୀବନର ଶେଷ ପାଦରେ ସେଥିପାଇଁ ଅନ୍ତରରେ ଅସୁସ୍ଥତା ବୋଧ କରୁଛି । କିନ୍ତୁ ମୁଁ ତ ଆପଣଙ୍କ ପରି କାମିକା ନଥିଲି କେବେ; ତେଣୁ ଯେ ଭିକ୍ଷୋପଜୀବୀ ନହେବାକୁ ପଡ଼ିଛି ତମ ଦେଶରେ ଜନ୍ମ ହୋଇ, ସେହି ହିଁ ପରମ ସୌଭାଗ୍ୟ କହିବାକୁ ହେବ ।

ଆପଣ କେବେ ପୁଣି ଏଣେ ଆସିବେ ? 'ଯୋଗସ୍ଥ' ହୋଇ କିଛି କରି ପାରିବା ନା ଆଉ ଏ ବୟସରେ ? ଏ ତ ଆସିଗଲା ବିଯୋଗର ସମୟ । ଯୋଗ-ସ୍ଥିତିର ସମ୍ଭାବନା କାହିଁ ? ତେବେ ଆପଣଙ୍କ ସାହଚର୍ଯ୍ୟ ହିଁ ଅନ୍ତତଃ ମୋ ପକ୍ଷରେ ଏକ ଯୋଗ (+) ଅର୍ଥାତ୍ ଆନନ୍ଦ ଯୋଗ, ଆତ୍ମିକ ଯୋଗ । ପଶାକରେ ହେତକ ଦେବାରେ ଆପଣ କୁଣ୍ଠିତ ହେବେ ନାହିଁ ।

॥ ଇତି ॥
ଶୁଭାନୁଧ୍ୟାୟୀ
ମାୟାଧର ମାନସିଂହ



କଟକ
୨୭।୮।୭୨

ସ୍ନେହାସ୍ପଦ ଲକ୍ଷ୍ମୀଧର ବାବୁ !

ତା ୨୩ ରାତିରେ ଦିଲ୍ଲୀରୁ ଫେରି ଆପଣଙ୍କ କାର୍ଡ ଖଣ୍ଡି ପାଇଲି । ଆପଣ ରାଉରକେଲା ଆସି ସେଠାରେ ମଧ୍ୟ ସାହିତ୍ୟ ସାଧନା ଆରମ୍ଭ କରିଥିବା ଆନନ୍ଦର କଥା । ମାତ୍ର ଜାମସେଦ୍‌ପୁରକୁ ତାହା ଜମା ଛାଡ଼ି ଆସିଲେ ? ଓଡ଼ିଶାର ଉପାନ୍ତ ଅଞ୍ଚଳରେ ବିଶେଷତଃ ଶିଳ୍ପକେନ୍ଦ୍ରମାନଙ୍କରେ ଆପଣ ସାହିତ୍ୟ ସଂସ୍କୃତିର ଯେଉଁ ଦୀପ ଜାଳି ଦେଇଛନ୍ତି ତାହା ଚିରକାଳ ଅନିର୍ବାଣ ରହୁ । ଆପଣଙ୍କ ସଂଶ୍ଳିଷ୍ଟ ସାଂସ୍କୃତିକ ଉତ୍ସବକୁ ଯାଇ ଯୋଗଦେବା ସୌଭାଗ୍ୟ ନିକଟରେ ମୋର ଘଟିପାରିବ ନାହିଁ । ମଝେ ମଝେ ଲେଖା ପଠାଇବି । ଆଶା ସମସ୍ତ କୁଶଳ ।

ଆପଣଙ୍କର
କାଳନ୍ଦୀ ଚରଣ ପାଣିଗ୍ରାହୀ

□

Dr. Gopal Chandra Mishra

Professor of Oriya
Jyoti Vihar
Burla, Sambalpur
Dt. 18. 11. 80

ମାନନୀୟେଷୁ ,

ଆପଣଙ୍କର ପ୍ରେରିତ 'ସିଂହଭୂମିର ଗୋପବନ୍ଧୁ' ପୁସ୍ତକ ଖଣ୍ଡିକ ପାଇ ବିଶେଷ ଆନନ୍ଦିତ ହେଲି । ଏହି ପୁସ୍ତକ ଖଣ୍ଡିକ ଆପଣଙ୍କର ବହୁଦିନର ଅଧ୍ୟୟନ, ଗବେଷଣା ଏବଂ ସଂଗ୍ରହ ଉପରେ ଆଧାରିତ । ଓଡ଼ିଶାର ଚଳିତ ଶତାବ୍ଦୀର ଇତିହାସରେ ଗୋପବନ୍ଧୁଙ୍କ ଭୂମିକା ଉପଲବ୍ଧି କରିବା ଲାଗି ଏହି ପୁସ୍ତକ ସହାୟକ ହେବ । ଆପଣଙ୍କୁ ଏହି ତାତ୍ପର୍ଯ୍ୟପୂର୍ଣ୍ଣ ପୁସ୍ତକ ପାଇଁ ଧନ୍ୟବାଦ ଜଣାଉଛି ।

ମୁଁ ଆପଣଙ୍କୁ ବରାବର ମନେ ରଖିଅଛି । ଆପଣଙ୍କର ମୋ ପ୍ରତି ଯେଉଁ ସ୍ନେହ ଶ୍ରଦ୍ଧା ତାହା ଭୁଲିବାର ନୁହେଁ ।

ଦୟାକରି ଗୋଟିଏ କ୍ଷୁଦ୍ରଗଳ୍ପ ପଠାଇ ପାରିବେ କି ? ଗୋଟିଏ ନୂତନ ପତ୍ରିକା ପାଇଁ ଆପଣଙ୍କର ଏହି ଗଳ୍ପଟି ଉଦ୍ଦିଷ୍ଟ ।

ଏତଦ୍‌ବ୍ୟତୀତ ଆପଣଙ୍କର ସଂକ୍ଷିପ୍ତ ଜୀବନୀ ଓ ପ୍ରକାଶିତ ଗ୍ରନ୍ଥ ତାଲିକା ମୋର ଦରକାର । ମୋର ଆଶା ଆପଣ କ୍ଷମା ସ୍ୱୀକାର ପୂର୍ବକ ଏହି ବିବରଣୀ ପଠାଇବେ । ମୁଁ କେବେ ଜମସେଦ୍‌ପୁର ଗଲେ ଆପଣଙ୍କୁ ଦେଖା କରିବି । ନମସ୍କାର ଜଣାଇ ରହିଲି ।

ସ୍ନେହାଧୀନ
ଗୋପାଳଚନ୍ଦ୍ର ମିଶ୍ର

□

# ପାଠକ ପତ୍ରାବଳୀ

(ସେମାନଙ୍କର ବହୁ ପତ୍ରମଧ୍ୟରୁ ଗୋଟିଏ.........)

Kapoor Bungalo
Rourkela
Date-7. 4. 67

ମାନନୀୟେଷୁ ଲକ୍ଷ୍ମୀଧର ବାବୁ,
ପ୍ରଣାମ ନେବେ ।

ଆପଣଙ୍କର ନବଭାରତରେ ଲେଖା ହୋଇଥିବା ଚିଠିଟି ଯେତେଥର ପଢ଼ିଛି ଅଧିକ ପଢ଼ିବାକୁ ଇଚ୍ଛା ହେଉଛି । ଆମର ଇଚ୍ଛା ଆପଣ ରାଉରକେଲାରେ ଆସି ରହନ୍ତୁ । ଆପଣଙ୍କ ବିନା ରାଉରକେଲାର ସାଂସ୍କୃତିକ ଜୀବନ ନିଷ୍ପ୍ରାଣ । କେବଳ ରାଉରକେଲାର ସାଂସ୍କୃତିକ ଜୀବନ ନୁହେଁ, ଆମର ସାମାଜିକ ଜୀବନ ମଧ୍ୟ । ଯେତେ ସମୟ ଆପଣଙ୍କ ସଙ୍ଗ ଆମର କଟିଛି ଦେଖୁବେଳେ ଆମେ ଆପଣଙ୍କ company ଉପଭୋଗ କରିଛୁ । ଯନ୍ତ୍ରକାଳର ଯାନ୍ତ୍ରିକ ସଭ୍ୟତା, ଉତ୍ପୀଡ଼ିତ କର୍ମକ୍ଳାନ୍ତ ଜୀବନ, ନୈରାଶ୍ୟମୟ ବାତାବରଣ ଭିତରେ ଆପଣଙ୍କ ପରି ପ୍ରାଣବନ୍ତ; ସଦାହାସ୍ୟମୁଖର ଉଚ୍ଛଳ ବ୍ୟକ୍ତିତ୍ୱ ଆମେ ଦେଖୁଥିବା ସବୁ society ଭିତରେ ଏକ ଏକକ ବ୍ୟତିକ୍ରମ ।

American ପତ୍ରିକା Readers Digest ପଢ଼ୁ ପଢ଼ୁ ଆଜି ସେଥିରେ ନିୟମିତ ଚାହାଁଉଥିବା ଗୋଟିଏ ପରିଚ୍ଛେଦରେ ଆଖିପଡ଼ିଗଲା । Write about : The most unforgettable character you have met.

ପାଠକ ପାଠିକାମାନେ କିଏ କେତେ ପ୍ରକାରେ ଉତ୍ତର ଦେଇଛନ୍ତି । କେତେ ପ୍ରକାର ଲୋକଙ୍କ କଥା ଲେଖିଛନ୍ତି । ମୁଁ ଯଦି ଏହାର ଉତ୍ତର ଦିଅନ୍ତି ତା'ହେଲେ କେବଳ ଜଣେ ବ୍ୟକ୍ତିବିଶେଷଙ୍କ କଥା ଲେଖନ୍ତି—ସେ ହେଉଛନ୍ତି ଆପଣ ।

ଆପଣ ବଦନ୍ଧ, କିନ୍ତୁ ବିଷଣ୍ଣ ନୁହନ୍ତି । ଆପଣ ସମସ୍ତଙ୍କର ସହାନୁଭୂତିଶୀଳ ବନ୍ଧୁ; କିନ୍ତୁ କାହାରିପାଇଁ ସମବେଦନାରେ ଲୁହ ନପକାଇ ସାହାଯ୍ୟ ଓ ପ୍ରେରଣା ଦେଇଛନ୍ତି । ଆପଣ ଯାହାଠାରୁ ଆଘାତ ପାଇଛନ୍ତି ତାକୁ ପ୍ରତ୍ୟାଘାତ କରି ନାହାନ୍ତି—କ୍ଷମା ଦେଇଛନ୍ତି ।

ଆପଣଙ୍କର ବହୁମୁଖୀ ବଳିଷ୍ଠ ବ୍ୟକ୍ତିତ୍ୱର ଅନେକ ପରିଚୟ ଭିତରୁ ଏହା କେବଳ ଗୋଟିଏ ମାତ୍ର ଦିଗ ଯାହା ସମସ୍ତଙ୍କୁ ଭଲ ଲାଗିଛି । ଏଥିରେ ଆପଣଙ୍କର ମହତ୍ତ୍ୱ । ଆଶାକରୁ ସପରିବାର କୁଶଳରେ ଥିବେ । ଚିଠି ଦେବେ ।

ଆପଣଙ୍କର
'ସୀମା'
( ସୁଷମା ଦାସ ମହାପାତ୍ର )



ମନ୍ତ୍ରୀଙ୍କ ମହଲ
ୟୁନିଟ-୩ ଭୁବନେଶ୍ୱର-୧

ମାନନୀୟ ମହାଶୟ,

'ହା'ରେ ଦୁର୍ଭାଗା ଦେଶ' କେଜାଣି କାହିଁକି ମୋତେ ଏତେ ଦୂର ମନ୍ତ୍ରମୁଗ୍ଧ କରିରଖିଛି ଯେ ମୁଁ ବାହାରେ କ'ଣ ଘଟୁଛି, ଜାଣି ପାରୁନି । ବିଶେଷତଃ ଏହାର ନାୟକ 'ଉପେନ୍ଦ୍ର'ର ଚରିତ୍ର ମୋ ପରି ଏହି 'ଦୁର୍ଭାଗା ଦେଶ'ର ଏକ ନଗଣ୍ୟ ଯୁବ ପ୍ରାଣକୁ ଏତେଦୂର ଆନ୍ଦୋଳିତ କରିଛି, ଯାହା ଭାଷାରେ ପ୍ରକାଶ କରିବା ଅସମ୍ଭବ । ଓଡ଼ିଆ ଭାଷାର ଯେ କୌଣସି 'ତଥାକଥିତ' ଉଚ୍ଚକୋଟୀର ଉପନ୍ୟାସ ଠାରୁ ଯେ ଏହାର ସ୍ଥାନ କୌଣସି ଗୁଣରେ ନ୍ୟୂନ ନୁହେଁ ଏହା ମୁଁ ଦୃଢ଼ କଣ୍ଠରେ କହିପାରେ ।

ତେବେ 'ହା'ରେ ଦୁର୍ଭାଗା ଦେଶ' ପଢ଼ିଲା ବେଳେ ମୋତେ ଆପଣଙ୍କ ଅନ୍ୟାନ୍ୟ ବହି ପଢ଼ିଲାବେଳେ ଯେପରି ଦୁଃଖ ଲାଗେ, ତାହାହିଁ ହେଲା । ସେ ଦୁଃଖ ଅବଶ୍ୟ ଉପନ୍ୟାସର ବିଷୟବସ୍ତୁ ଦିଗରୁ ନୁହେଁ । ଓଡ଼ିଶାର ଏକ ବରିଷ୍ଠ ସାହିତ୍ୟିକ ପ୍ରତିଷ୍ଠା ଆଜିପର୍ଯ୍ୟନ୍ତ ଏପରି ଭାବରେ ଉପେକ୍ଷିତ, ଅବହେଳିତ ହୋଇଚି ଯେ ଏ ଦେଶର ସାହିତ୍ୟ, ଇତିହାସଠାରୁ ଆରମ୍ଭକରି ବିଶ୍ୱବିଦ୍ୟାଳୟର ଓଡ଼ିଆ ସ୍ତର ପର୍ଯ୍ୟନ୍ତ ସବୁଠି ଏହାର ପଦଧ୍ୱନି । ଲଜ୍ଜ୍ୟା ଲାଗୁଚି ଲେଖିବାକୁ, ଦୁର୍ଭାଗ୍ୟ ଦୂରାର ଏ ବ୍ୟତିକ୍ରମ ।

ମୋର ନମସ୍କାର ଗ୍ରହଣ କରିବେ ।

'ସ୍ନେହାଧୀନ
ଛବିଦୋଷ



ପ୍ରିୟ ମହାଶୟ,
Durgapur
17. 5. 78

ନମସ୍କାର ନେବେ ।

ଆପଣଙ୍କର ଲେଖା 'ହିଲ୍ ଉପରେ ବର୍ଷା' ବହିଟି ମୁଁ ୧° ବର୍ଷ ପୂର୍ବେ ପୁରୀରେ ଥିଲାବେଳେ ପଢ଼ିଥିଲି । ସେପରି ରସସିକ୍ତ ବହି କେତେ ଅଳ୍ପ ପରିମାଣ ମୁଁ ଦେଖିବାକୁ ପାଇନି । ଏଠାରେ ମୋର ଦୁଇଟି ବନ୍ଧୁଙ୍କ ସହିତ କଥୋପକଥନ ଛଳରେ ଆପଣଙ୍କ ଏହି ବହିଟି ସମ୍ବନ୍ଧେ ଆଲୋଚନା କରୁଥିଲୁ । ସେମାନେ ବହି-ଟିକୁ ପଢ଼ିବା ପାଇଁ ଖୁବ୍ ଆଗ୍ରହାନ୍ୱିତ । ବହିଖଣ୍ଡିକ ପଢାଇବା ପାଇଁ ମୋ ସହିତ ଖୁବ୍ ଜିଦ ଲଗାଇଛନ୍ତି । ମୋର ପୁଣି ଥରେ ପଢ଼ିବା ପାଇଁ ଖୁବ୍ ଆଗ୍ରହ ଜନ୍ମିଛି । ଆପଣ ଦୟାକରି ପାର୍ଶଲରେ ଯଦି ବହିଟିଏ ପଠାଇ ଦିଅନ୍ତେ ଖୁବ୍ ଉପକୃତ ହୁଅନ୍ତି । ମୁଁ ଏଠାରେ ତାହା ପଇସା ଦେଇ ପାର୍ଶଲ ଛଡ଼ାଇ ନେବି । ନହେଲେ ଦୟାକରି ଚିଠି ଖଣ୍ଡିଏ ଲେଖିବେ କେତେ ପଇସା ଲାଗିବ, ମୁଁ ସେ ଟଙ୍କା ମନିଅର୍ଡ଼ର କଲେ ତା'ପରେ ଆପଣ ବହି ଖଣ୍ଡି ପଠାଇବେ ।

ଆପଣଙ୍କ ଖବର ଏବଂ ବହି ପ୍ରତୀକ୍ଷାରେ ରହିଲି ।

ଆପଣଙ୍କ ସ୍ନେହଭାଜନ
କଲ୍ୟୀ

J. K. Nayak
16/21, H. B. Road
Durgapur-4

ତପନ ପଟ୍ଟନାୟକ
ବାଲୁଗାଁ (ପୁରୀ)

ପିନ - ୭୫୨୦୩୦
ତା ୧୫-୧-୭୮

ପୂଜ୍ୟାସ୍ପଦେଷୁ,

ପ୍ରଣାମ ନିଅନ୍ତୁ ।

ଆପଣଙ୍କ ବଳିଷ୍ଠ ଆନ୍ତରିକତା, ସାହିତ୍ୟିକତା ଓ ମାନବିକତାରେ ମୁଗ୍ଧ ହୋଇ ମୁଁ ମୋହିତ ଚିତ୍ତ ହୋଇଛି । ଏକାଧାରରେ ଏତେ ଗୁଡ଼ାଏ ଶକ୍ତିର ଅଧିକାରୀ ଆପଣ ହେଲେ କେମିତି ? ବିସ୍ମିତ ଲାଗେ ।

ଜୀବନରେ କେତେ ମଣିଷ ଦେଖିଛି । ଆପଣଙ୍କ ପରି ଗୋଟିଏ ମଣିଷର ଅଭାବ ଥିଲା । ପୂରଣ ହୋଇଗଲା କି !

କେତେ ଲୋକ ଆସିବେ, ଯିବେ । କିଛି ବଦଳିବନି । ଏଇ ମଣିଷଙ୍କର ଅସ୍ଥିକଙ୍କ ବଟ ପାଦରେ ଯଦି ତା ଭିତରେ କିଛି ଥିବ ! ହୃଦସ୍ପନ୍ଦ ହରାଇ ଦେଲେ, ତା' ଭିତରେ ଆଉ ଯେତେ ଯାହା ଥିଲେ ବି ସେ କ'ଣ କିଛି କାମରେ ଆସିବ ? ସେଇ ଟିକକ ସମସ୍ତଙ୍କ ପାଖରେ ନଥାଏ । ଯାହା ପାଖରେ ଥାଏ ସେ କାଳ ଭଲ ବଟେ ।

ଆଶା ଭଲ ଅଛନ୍ତି । ଚିଠି ଦେବେ ।

॥ ଇତି ॥

ସ୍ନେହାଧୀନ
ତପନ



# ସ୍ରଷ୍ଟା ଲକ୍ଷ୍ମୀଧର

ସରସ୍ୱତୀ ପ୍ରିୟ ଶିଷ୍ୟ ବନ୍ଧୁ ଲକ୍ଷ୍ମୀଧର,
ଉଦୟ ସାହିତ୍ୟାକାଶେ ନବ ଉତ୍କଳର ।
ଅପୂର୍ବ ପ୍ରତିଭା ତବ ନବ ନବ ରୂପେ
ଫୁଟି ଉଠେ ଗଦ୍ୟପଦ୍ୟ ସକଳ ବିଭାଗେ
କବି ନାଟ୍ୟକାର ତଥା ଗାଳ୍ପିକ ବରିଷ୍ଠ
ବିସ୍ମୟେ ବିମୁଗ୍ଧ କଲ ପାଠକର ଚିତ୍ତ ।

ଆଧୁନିକ ଉତ୍କଳର ସାରସ୍ୱତ ପୂଜାପୀଠେ
ବରେଣ୍ୟ !
ଆହେ ଦିଗ୍‌ବିଜୟୀ ଲକ୍ଷ୍ମୀଧର
ଅମୃତ ସନ୍ଧାନୀ କବି
ଗାଳ୍ପିକ/ଔପନ୍ୟାସିକ/ପ୍ରାବନ୍ଧିକ
ଘରେ ଘରେ ବାଜେ ତବ ସ୍ୱର

ହେଲାଣି ସାର୍ଦ୍ଧ-ଶତାବ୍ଦୀ
କାଳପର ଲାଗେ ତାହା
ଗଞ୍ଜାମରେ ଉତ୍କଳୀୟ କବି ସମ୍ମିଳନୀ
ପ୍ରତିଯୋଗିତାରେ ଶ୍ରେଷ୍ଠ
ହେଲା ତବ "ବରବର୍ଣ୍ଣୀ",
ଲଭିଲ ସ୍ୱର୍ଣ୍ଣ ପଦକ
ନନ୍ଦୁର ଧମନ ।

‘ଝଡ୍ଭ୍ରାନ୍ତ’ ଉପନ୍ୟାସ ବା
‘ଦ୍ମଲଲ କ ଫଟେ ସଖୀ’
ଚବୀଲେଖକଙ୍କୁ ଝର
ଝରେ ଅଦ୍ୟାବଧି
ନବ ନବ ମୂର୍ଚ୍ଛନାରେ
ଅପରୂପ ସର୍ଜନାରେ
କେହି ତା’ର ମୂଲ୍ୟାୟନ
କରିପାରେ ଯଦ

ନବଯୁଗ ସାହିତ୍ୟର
ଅନ୍ୟତମ ଶ୍ରେଷ୍ଠ ସ୍ରଷ୍ଟା
ଉତ୍କଳର ଉପାନ୍ତ ଅଞ୍ଚଳେ

ସାଧନାର ହୋମାନଳ
ହୁଙ୍କୁଁ ହୋଇ ଉଜ୍ୱଳ
ଗଗନେ ପବନେ ଅଙ୍କ ଖେଳେ ।



ସ୍ୱପ୍ନପୁରୀ
ପିଠାପୁର
କଟକ—୧

# ଅନନ୍ୟ-ପ୍ରତିଭାମଣ୍ଡିତ ଶ୍ରୀ ନାୟକ

●

ଉଦୟନାଥ ଷଡ଼ଙ୍ଗୀ

ପରମ ଶ୍ରଦ୍ଧାସ୍ପଦ ବନ୍ଧୁ

ଲକ୍ଷ୍ମୀଧର ବାବୁ,

ଆପଣ ମୋ ପାଖରେ, ଏକା ମୋ ପାଖରେ କାହିଁକି, ମୋ ଭଳି ପଢ଼ିବା-କାଙ୍ଗାଳ ପାଠକ ମହଲରେ ପ୍ରକୃତରେ ଜଣେ 'ନାୟକ' ।

ଆଜକାଲିର ସିନେମା ପାଗଳ ପିଲାମାନେ ଯେପରି ଚଳଚ୍ଚିତ୍ରର ନାୟକ (ହିରୋ) (ନାୟିକା ମଧ୍ୟ) ମାନଙ୍କୁ ଭକ୍ତି ଶ୍ରଦ୍ଧା କରନ୍ତି, ଆଦର କରନ୍ତି, ସେମାନଙ୍କୁ ଅନ୍ତମାନସ ଅଧିକାଂଶ ସ୍ତରରେ ରଖି ମନେ ମନେ ପୂଜା କରନ୍ତି; ସେମାନଙ୍କ କଥା ବାର୍ତ୍ତା, ରଙ୍ଗ ଢ଼ଙ୍ଗ, ବେଶ ପୋଷାକ, ଚାଲି ଚଳଣିକୁ ଅପାରଗ ଅନୁକରଣ କରିବାକୁ ଚେଷ୍ଟା କରନ୍ତି, ଓଡ଼ିଆ ପାଠକ ମହଲରେ ଆପଣ ସେହି ସ୍ଥାନର ଅଧିକାରୀ—ଅନ୍ତତଃ ମୋ ପାଖରେ ଏବଂ ବିଶ୍ୱାସ, ମୋରି ସ୍ୱଭାବର ଅନ୍ୟମାନଙ୍କ ପାଖରେ ମଧ୍ୟ ।

ସେତେବେଳକୁ 'ମୁକୁର' ଲୋପ ପାଇସାଇଥାଏ, 'ଉତ୍କଳ ସାହିତ୍ୟ'ର ମୁମୂର୍ଷୁ ଅବସ୍ଥା । ତିନି ଚାରି ମାସରେ ଅତି କ୍ଷୀଣ ଶରୀରରେ ଗୋଟିଏ ଗୋଟିଏ ସଂଖ୍ୟା ପ୍ରକାଶ ପାଉଥାଏ । ପଡ଼ୋଶୀ ଭାଷାରେ ପ୍ରକାଶିତ 'ପ୍ରବାସୀ', 'ଭାରତ ବର୍ଷ', 'ବସୁମତୀ' ସାହିତ୍ୟ ପତ୍ରିକାର ଆଭିଜାତ୍ୟରେ ଆମେ ରବେଇ ଖବେଇ ହେଉଥାଉଁ । ସେହି ସମୟରେ ପୂର୍ବରୁ ଲୁଚି ଯାଇଥିବା ଲକ୍ଷ୍ମୀନାରାୟଣ ସାହୁଙ୍କ 'ସହକାର' ବାଳକୃଷ୍ଣ ବାବୁଙ୍କ ହାତରେ ପଡ଼ିଲା । ପାଠକମାନେ ଟିକିଏ ଆଶ୍ୱସ୍ତ ହେଲେ । ସେଥିରେ ଗଳ୍ପ, କବିତା, ନିବନ୍ଧ, ଭ୍ରମଣ କାହାଣୀର ଲେଖକମାନଙ୍କ ମଧ୍ୟରୁ ଅନେକ ନୂଆ ବୋଧ ହେଲେ ।

ମୋର ସ୍ମୃତିଶକ୍ତି ଟିକିଏ କ୍ଷୀଣ । ସେ ସମସ୍ତଙ୍କ ନାମ ଏବେ ମନେ ପଡ଼ୁନାହିଁ । ତଥାପି ଲକ୍ଷ୍ମୀଧର ନାୟକ ଆଉ ନୃସିଂହ ଚରଣ ମହାନ୍ତି ମନକୁ ଏଭଳି ଆକୃଷ୍ଟ କରିଥିଲେ ଯେ ସେ ଦୁଇଟି ନାମ ମନରେ ଯେ ସ୍ଥାନ ମାଡ଼ି ବସି ରହିଛି କେବଳ ସେତିକି ନୁହେଁ, ଘରେ ହୋଇ ଯାଇଛନ୍ତି ଅନ୍ତରଙ୍ଗ ବନ୍ଧୁ । ମୋ ଆଖିରେ ନାୟକ ଜଣେ ଓଡ଼ିଶା

ବାହାର ଝାଟାନଗରର ଫେରନ୍ତା ଓ ଆଉ ଜଣେ ଭରତ ବାହାର ବଳାତ ଫେରନ୍ତା ।

ଲକ୍ଷ୍ମୀଧରବାବୁ, ପ୍ରଥମ ସାକ୍ଷାତରୁ ଧରି ନେଇଥିଲି, ଆପଣ ଔପନ୍ୟାସିକ । କେତେ ପ୍ରକାର ଚରିତ୍ର ଗଢଣ କରିବାରେ ପାରଙ୍ଗମ । ଗୋଟାକ ପରେ ଗୋଟାଏ ଉପନ୍ୟାସ ଆନନ୍ଦ ଲହରୀ ଗ୍ରନ୍ଥମାଳା ଅନୁଗ୍ରହରୁ ପଢିବାକୁ ପାଇଲି—ପାଇଲି ନୁହେଁ, ପାଇଲୁ 'ଉଦ୍‌ଭ୍ରାନ୍ତ' ।

ନୂଆ ନୂଆ ଲାଗିଲା । ସରଳ ଭାଷା, ସାବଲୀଳ ପ୍ରକାଶ ଭଙ୍ଗୀ, ପ୍ରକୃତରେ ଉଦ୍‌ଭ୍ରାନ୍ତ କରିଦେଲା ।

ଏଇ ନୂଆ ଲେଖକଙ୍କର ବହିକୁ ପାଠକମାନେ ଆଦର କଲେ । ଲେଖା ଓ ଲେଖକଙ୍କ ଦର ବଢିଲା । ଭାବି ବସିଲେ, ଆଉ କଅଣ ଆସିବ ?

ପରେ ପରେ ଅଳ୍ପଦିନର ବ୍ୟବଧାନରେ ପଢିବାକୁ ମିଳିଲା, 'ହା'ରେ ଦୁର୍ଭାଗା ଦେଶ' । ଦେଶ-ପ୍ରୀତିର ଅପରୂପ ଆଲେଖ୍ୟ । ମୁହଁରେ ମୁହଁରେ ତାର ପ୍ରଶଂସା ପ୍ରଚାରିତ ହୋଇଚାଲି । ଓଡ଼ିଆ ବହି କିଣିବାକୁ ପରାଙ୍ମୁଖ ପାଠକ ଦୋକାନକୁ ଯାଇ ଏହି ବହି ମାଗିଲେ, ମଗାଇ ଦେବାକୁ ବରାଦ ଦେଲେ । ଏବେ ଜାଣିଲି ବାଳକୃଷ୍ଣ ବାବୁଙ୍କ ଆନନ୍ଦ ଲହରୀ ଉପନ୍ୟାସରେ ପ୍ରକାଶିତ 'ଭୁଲିଲି ସତେ ସଖି' ଉପନ୍ୟାସର ଏକାଂଶ ସମ୍ପ୍ରସାରଣ ହୋଇଛି—ଓଡ଼ିଆ ପୁସ୍ତକ ଜଗତରେ ଏକା ବେଳକେ ନୂଆ କଥା, ଚମକପ୍ରଦ ଘଟଣା ।

'ସନ୍ଦେହ', 'ଚରିତ୍ର ହୀନାର ଗତି', 'ମୋ ସ୍ୱପ୍ନର ସହର'—ଆଉ କେତୋଟି ମଧ୍ୟ । ଏହା ତ କେବଳ ଉପନ୍ୟାସ ନୁହେଁ, ଗଦ୍ୟର ପ୍ରକାଶ ପଦ୍ୟ ଛଟାରେ ।

ହଁ, ନାୟକବାବୁ ଆପଣଙ୍କ ଅନ୍ତର ଯେ କବିର, ପଢୁଆ ତାର ସୂଚନା ମିଳେ ସେହି ବର୍ଣ୍ଣନା ଭଙ୍ଗୀ ଓ ପ୍ରକାଶ ଭଙ୍ଗୀରୁ ।

ସଦ୍ୟ ଦେଖା ଦେଇଥିବା ଗଦ୍ୟ କବିତା (ଅମିତାକ୍ଷର ନୁହେଁ) ପାଠକ ମାନଙ୍କ ପାଖକୁ ଯାହା ଅଳ୍ପ ଅଳ୍ପ ଆସୁଥାଏ, ତାହାର ସମାଲୋଚନା ହେଉଥାଏ ବହୁତ ବେଶୀ ।

ତାପରେ ଆପଣଙ୍କ ନାମରେ ପ୍ରକାଶ ପାଇଲା ନାଟକ । ଔପନ୍ୟାସିକଙ୍କ ହାତରେ ନାଟକ । ଏହା ବେଶୀ କିଛି ଆଶ୍ଚର୍ଯ୍ୟ

ବୋଧହେଲା ନାହିଁ । ତଥାପି ପାଠକ ଆଦର କଲେ 'ଧର୍ମଦ୍ରୋହୀ', 'ଜମିଦାର', 'ଲାଲ ସ୍ତବକ' ।

ପାଠକମାନଙ୍କ ମତରେ ପ୍ରକୃତ ପ୍ରତିଭା ଫୁଟି ଉଠିଲା କବିତା ସଙ୍କଳନରେ । ଆପଣଙ୍କ କବି ହୃଦୟର ପ୍ରସ୍ରବଣ । ତାର ଗତିଶୀଳ ସ୍ୱଭାବ ଓ କଳ କଳ ଧ୍ୱନିର ମୋହନ ମନ୍ତ୍ର ସମସ୍ତଙ୍କୁ ଆନନ୍ଦ ଦେଲା । ଅନବଦ୍ୟ, ଅତୁଳନୀୟ ।

ମୁଁ ଠିକ୍ ରୂପେ ଜାଣିନାହିଁ, ବୋଧହୁଏ ଏବର ଶେଷ ଅଥଚ ଶ୍ରେଷ୍ଠ ସଙ୍କଳନ ସମାଲୋଚନାମୂଳକ ସନ୍ଦର୍ଭ—ସ୍ମୃତି ଚୟନ "ସ୍ୱପ୍ନ ଭୂମିର ଗୋପବନ୍ଧୁ" । ଆପଣଙ୍କ ଅନ୍ତର ବେଦନାର ସ୍ପଷ୍ଟ ପରିପ୍ରକାଶ । ହୁଏତ ଏହା କାହାରିକୁ ସୁଖ ନ ଲାଗି ପାରେ, ମାତ୍ର ଏଥିରେ ଯେ ଆପଣଙ୍କ ମନ ଭିତରର ବେଦନା ଅତି ଖୋଲା ଖୋଲି ଭାବରେ ରୂପ ପରିଗ୍ରହ କରିଛି, ଏହା ମୁକ୍ତ କଣ୍ଠରେ ସମସ୍ତେ ସ୍ୱୀକାର କରୁଛନ୍ତି । ଅଳ୍ପ ଦିନ ମଧ୍ୟରେ ଏହାର ଦ୍ୱିତୀୟ ମୁଦ୍ରଣ ହିଁ ତାର ପ୍ରମାଣ ଦିଏ ।

ପ୍ରିୟ ନାୟକ, ଚଳଚ୍ଚିତ୍ରର ନାୟକ ନାୟିକା କେବଳ ଅଭି-ନୟରେ ପଟୁ ନୁହନ୍ତି, ନୃତ୍ୟ, ଗୀତ, ବାଦ୍ୟ ଯନ୍ତ୍ରରେ (ଗାଇବା, ବଜାଇବା, ନାଚିବା) ମଧ୍ୟ ଦକ୍ଷତା ହାସଲ କରି ଥାଆନ୍ତି । ଆପଣ କେବଳ ଔପ-ନ୍ୟାସିକ, ନାଟ୍ୟକାର କି କବି ନୁହନ୍ତି, ଅପୂର୍ବ ଆବୃତ୍ତି ପାଠବରେ ଶ୍ରୋତା ମାନଙ୍କୁ ମଧ୍ୟ ମୋହିତ କରି ଦିଅନ୍ତି । ବାର୍ତ୍ତାରେ ମଧ୍ୟ । ଆପଣଙ୍କ ବକ୍ତୃତା ସ୍ରୋତ ଶ୍ରୋତାମାନଙ୍କ ମନରେ ଆଲୋଡ଼ନ ସୃଷ୍ଟି କରେ—ଚିନ୍ତାର ଖୋରାକ ଯୋଗାଏ । ତାହା ଯୋଲ ଫାଙ୍କିଆ ନୁହେଁ କି ଉପର ଠାଉରିଆ ନୁହେଁ ।

ଆମ ଜାତିର ପ୍ରାତଃସ୍ମରଣୀୟ ପଣ୍ଡିତ ଗୋପବନ୍ଧୁଙ୍କ ଆଶୀର୍ବାଦ-ଧନ୍ୟ ଆପଣ । ତେଣୁ ଅନନ୍ୟପ୍ରତିଭା-ମଣ୍ଡିତ ।

ଆପଣଙ୍କ ସାହିତ୍ୟ ସାଧନାର ଏ ଜୟନ୍ତୀ ଉତ୍ସବରେ ଜଣାଉଛି ଅନ୍ତରର ଶତ ଶତ ପ୍ରଣତି । ଦୋଷ ଦେବେ ନାହିଁ । ଏ ପ୍ରଣତି ଆପଣଙ୍କର ଅମୂଲ୍ୟ ପ୍ରତିଭା ପ୍ରତି—ଯା' ପାଖରେ ବୟସର ମୂଲ୍ୟ ଅତି ତୁଚ୍ଛ ।

●

ବାର୍ତ୍ତା ସମ୍ପାଦକ, ସମାଜ

# ଲକ୍ଷ୍ମୀଧରଙ୍କ ସାହିତ୍ୟକୃତି



ଡକ୍‌ଟର ସଦାଶିବ ମିଶ୍ର

ଶ୍ରଦ୍ଧେୟ ବନ୍ଧୁ ଲକ୍ଷ୍ମୀଧର ବାବୁ ପ୍ରତିଷ୍ଠିତ ସାହିତ୍ୟିକ ହେବାର କୀର୍ତ୍ତି ଅର୍ଜନ କରିଛନ୍ତି । ଜନ୍ମଭୂମିର ସେବା ତାଙ୍କର ପବିତ୍ର କର୍ତ୍ତବ୍ୟ ରୂପେ ଗ୍ରହଣ କରିଛନ୍ତି । ସେଇ ଜନନୀର ମହାତ୍ମ୍ୟରେ ଅଭିଭୂତ ହୋଇଛନ୍ତି । "ତୋ ଆନନ୍ଦେ ହୋଇବା ସୁଖୀ, କ୍ରନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ"—ଏହାକୁ ଜୀବନର ଧର୍ମରୂପେ ଗ୍ରହଣ କରିଛନ୍ତି ।

ଉତ୍କଳର ନଦୀ ପର୍ବତରେ ଲକ୍ଷ୍ମୀଧର ବାବୁ ଦେଖିଛନ୍ତି ଏ ସୁଷମା । ତା'ର କଥା, କାହାଣୀ, କିମ୍ବଦନ୍ତୀରେ ଦେଖିଛନ୍ତି, ଆତ୍ମାର ପରପ୍ରକାଶ । ତା'ର ଚର୍ଯ୍ୟା ପଦାଣୀରେ ଉପଲବ୍ଧି କରିଛନ୍ତି ଜୀବନର ପ୍ରବାହ । ଓଡ଼ିଆ ଭାଷାର ଛାନ୍ଦ, ଚଉପଦୀରେ ଉଦ୍‌ବୁଦ୍ଧ ହୋଇଛନ୍ତି । ଓଡ଼ିଆର ନୃତ୍ୟ-ନାଟକରେ ପାଇଛନ୍ତି ନବରସର ଆସ୍ୱାଦ । ତାଙ୍କର ନାଟକ ଉପନ୍ୟାସ, କବିତା, ପ୍ରବନ୍ଧରେ ପ୍ରକଟିତ ହୋଇଛି ଏ ସମସ୍ତ ବିଭବ । ଏ ସକଳ ଗୌରବରେ ଭୂଷିତ ହୋଇ ତାଙ୍କର ସାହିତ୍ୟ ସୃଷ୍ଟି ସମୃଦ୍ଧ ହୋଇଛି ।

ଉତ୍କଳର କେତେ କୁଶଳୀ କଳାକାର କେତେ କୀର୍ତ୍ତି ସୌଧ ରଚି ଯାଇଛନ୍ତି । ପୁଣି ଆଜିର ଅନେକେ ନୂତନ କୀର୍ତ୍ତିସ୍ତମ୍ଭ ଗଢ଼ି ଲାଗିଛନ୍ତି । ତେବେ ଲକ୍ଷ୍ମୀଧର ବାବୁଙ୍କର ବିଶେଷତ୍ୱ କେଉଁଠାରେ ? ବିଶେଷତ୍ୱ ତାଙ୍କର ନିଷ୍କାମକର୍ମ । ତାଙ୍କ ସାହିତ୍ୟ ଖାଲି କଳ୍ପନା ବିଳାସର ରସ ସୃଷ୍ଟି ନୁହେଁ । ତାଙ୍କର କର୍ମମୟ ଜୀବନ ଆଉ ସାହିତ୍ୟ ସାଧନା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଉତ୍କଳୀୟ ସଂସ୍କୃତିର ପ୍ରଚାର ପାଇଁ,

ଉପାନ୍ତ ଅଞ୍ଚଳର, ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆଙ୍କ ସଂସ୍କୃତିର ସୁରକ୍ଷା ପାଇଁ, ଓଡ଼ିଆ ଭାଷା ଓ ସାହିତ୍ୟର ଧାରା ପ୍ରବାହିତ କରିବା ପାଇଁ ସେ କୈଶୋରରୁ ଲାଗି ପଡ଼ିଛନ୍ତି ।

ପଣ୍ଡିତ ଗୋପବନ୍ଧୁ ଏବଂ ପଣ୍ଡିତ ଗୋଦାବରୀଶଙ୍କ ଆଦର୍ଶରେ ସେ ଦୀକ୍ଷିତ ହୋଇଥିଲେ । ଉପାନ୍ତ ଓଡ଼ିଆ ଅଞ୍ଚଳକୁ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବା ପାଇଁ ଆନ୍ଦୋଳନରେ ଆତ୍ମୋତ୍ସର୍ଗ କରିଥିଲେ । ତାଙ୍କ ସାହିତ୍ୟ ଏହି ଆନ୍ଦୋଳନରେ ହୋଇଥିଲା ଏକ ବଳିଷ୍ଠ ମାଧ୍ୟମ । ଏହି ଆନ୍ଦୋଳନରେ ଯୋଗ ଦେଇ ସେ ବହୁ ନିର୍ଯ୍ୟାତନା ଭୋଗିଛନ୍ତି; ମାତ୍ର କେବେହେଁ ତାଙ୍କ ଲକ୍ଷ୍ୟରୁ ଅପସରି ଯାଇ ନାହାନ୍ତି । ତାଙ୍କ ସାହିତ୍ୟରେ ଅଛି ଉଦ୍‌ବୋଧନର ଉନ୍ମେଷ । ତା'ପରେ ଅଛି ନିଷ୍ଫଳତାର ଅବସାଦ । ଅନ୍ତରର ସଂବେଦନା ଚରିଜସ୍ତୁ ମାନ ନାହିଁ । ଲେଖକଙ୍କର ପ୍ରସ୍ରବଣ ପରାହତ ହୋଇ ନାହିଁ ।



ପ୍ରଫେସର ପଣ୍ଡା
କଟକ

# ମଣିଷ ପରି ମଣିଷ

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

କବି ଓ ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କର ବଡ଼ ପରିଚୟ ତାଙ୍କର ଦରଦୀ ପ୍ରାଣ ଓ ମଣିଷ ପଣିଆ । ସିଏ ଜଣେ ବଶିଷ୍ଟ ଓଡ଼ିଆ ।

ରବୀନ୍ଦ୍ରନାଥ ବଙ୍ଗ ଜନନୀଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—"ସେତ କୋଟି ସନ୍ତାନେର ହେ ବଙ୍ଗ ଜନନୀ, ବାଙ୍ଗାଲି କରେଛ କିନ୍ତୁ ମାନୁଷ୍ କରେନି" । ଯଦି ରବୀନ୍ଦ୍ରନାଥଙ୍କ ସମକକ୍ଷ କେହି ଓଡ଼ିଆ କବି ଥାନ୍ତେ, ତେବେ ଲକ୍ଷ୍ମୀଧର ନାୟକଙ୍କୁ ଲକ୍ଷ୍ୟକରି କହିଥାନ୍ତେ, ଖାଲି ଓଡ଼ିଆ ପରି ଓଡ଼ିଆଟାଏ ନୁହେଁ, ମଣିଷ ପରି ମଣିଷଟାଏ ।

ଲକ୍ଷ୍ମୀଧର ଓଡ଼ିଆଙ୍କ ଦୁଃଖରେ କେବଳ କାନ୍ଦି ନାହାନ୍ତି, ତାଙ୍କ ଲେଖାର ଦରଦରେ ବହୁ ଲୋକଙ୍କ ମନକୁ ଓଦା କରିଛନ୍ତି । ସେ ଭାରତ ଦରବାରରେ ଓଡ଼ିଆଙ୍କର ସମ୍ମାନ ଯେପରି ଦାବୀ କରିଛନ୍ତି, ବିଶ୍ୱ-ଦରବାରରେ ମଣିଷପଣିଆର ଜୟଗାନ ସେପରି କରିଛନ୍ତି । ତାଙ୍କୁ ଅଭିନନ୍ଦିତ କରିବାରେ ଓଡ଼ିଆ ଜାତିର ଅଭିନନ୍ଦନ ।



ନିର୍ଦ୍ଦେଶକ
ଅନ୍ତର୍ଜାତିକ ଭାଷାକେନ୍ଦ୍ର
ମାନସ ଗଙ୍ଗୋତ୍ରୀ
ମହୀଶୂର

# ଉଦ୍‌ଭ୍ରାନ୍ତ : ଏକ ଆଲୋଚନା



ଡକ୍ଟର ମାୟାଧର ମାନସିଂହ

ଓଡ଼ିଶାର ସୁପରିଚିତ ଔପନ୍ୟାସିକ ଓ ନାଟ୍ୟକାର ଲକ୍ଷ୍ମୀଧର ନାୟକଙ୍କର ଏହି ଉପନ୍ୟାସଟି ବହୁ ବର୍ଷ ଧରି ଆଉଟ୍-ଅଫ୍-ପ୍ରିଣ୍ଟ୍ ରହିବା ପରେ, ଏବେ ପରିବର୍ଦ୍ଧିତ ଚତୁର୍ଥ ସଂସ୍କରଣରେ ଆତ୍ମପ୍ରକାଶ କରିଛି । ସେଥିପାଇଁ ପ୍ରକାଶକ ଦାସ-ବ୍ରଦର୍ସ ଆମ୍ଭମାନଙ୍କର ଧନ୍ୟବାଦାର୍ହ । ଲକ୍ଷ୍ମୀଧର ବାବୁଙ୍କର ଲେଖନୀ ବହୁ ବର୍ଷ ହେଲା ନୀରବ ରହି ଆସିଛି । ଯାହା ହେଉ, ଜୀବନର ଅପରାହ୍ଣ କାଳରେ ସେ ପୁଣି ଖାଣ୍ଟି ସାହିତ୍ୟ ଦେବାକୁ ଫେରି ଆସିଲେ, ଦେଶ ପାଇଁ ଓ ତାଙ୍କ ପାଇଁ ଶୁଭଙ୍କର ହୁଅନ୍ତା ବୋଲି ବିଶ୍ୱାସ ।

ଉଦ୍‌ଭ୍ରାନ୍ତ, ଶ୍ରୀ ନାୟକଙ୍କର ତରୁଣ ବୟସର ରଚନା ଏବଂ ସ୍ୱାଭାବିକ ଭାବରେ ତାରୁଣ୍ୟ-ଧର୍ମୀ । ଏହା ଏକ ପ୍ରେମ-ତରଙ୍ଗର କାହାଣୀ । ନର-ନାରୀର ପ୍ରେମ ବିଶ୍ୱ ସାହିତ୍ୟର ଯେ ପ୍ରାଣବିନ୍ଦୁ, ଏଥିରେ ଅତ୍ୟୁକ୍ତି ନାହିଁ । ତେବେ ଯାହା ଶ୍ରେଷ୍ଠ ଓ ଚିରନ୍ତନ ସେଠି ପ୍ରେମ ପରିଣତ ହୋଇଯାଏ ଯୋଗରେ ।

ଶ୍ରୀ ନାୟକଙ୍କ 'ଉଦ୍‌ଭ୍ରାନ୍ତ' ତରୁଣ ପ୍ରେମର ସଙ୍ଘର୍ଷର ଗାଥା । ଏବଂ ମୀତ ବା ସମ୍ଭାବ୍ୟତା ହେଉଛି ଯାହା ବିଦୂର ହେଉନା କାହିଁକି, ଶ୍ରୀ ନାୟକ ଯେ ଉଦ୍‌ଭ୍ରାନ୍ତର ନାୟକର ଚରିତ୍ରରେ ପ୍ରେମ ଜନିତ ସଙ୍ଘର୍ଷକୁ ନିପୁଣ ଭାବରେ ଫୁଟାଇ ପାରିଛନ୍ତି, ଏଥିରେ ସନ୍ଦେହ ନାହିଁ ।

ନବ୍ୟଭାରତର ତରୁଣ ନାୟକ ଉମାକାନ୍ତ ପରେ ପରେ ଆରତି, ଅଳକା, ବେଲା ନାମକ ତିନୋଟି ଭଦ୍ର ହୃଦୟା ବାଳିକା ଓ ତରୁଣୀଙ୍କଠାରେ ଜନୈକା ବାଙ୍ଗନାର ଆଦର-ଆକର୍ଷଣ ପାଇଛନ୍ତି । ଯେହେତୁ ଏ ଗ୍ରନ୍ଥ ଉମାକାନ୍ତଙ୍କ ଆତ୍ମଚରିତ ଭାବରେ ଲିଖିତ, ତେଣୁ ତାଙ୍କ ନିଜର ରୂପ-ଗୁଣର ବର୍ଣ୍ଣନା ଏଥିରେ ଉଗ୍ର ଭାବରେ ନ ରହିବାର କଥା । ତେଣୁ ଲେଖକଙ୍କର ତତ୍ ସମ୍ପୃକ୍ତ ନୀରବତା କେବଳ ବିଚକ୍ଷଣତାର ପରିଚାୟକ । ତେବେ କଥା ପ୍ରସଙ୍ଗରେ, ଅନ୍ୟମାନଙ୍କ ମୁଖରେ, ଉମାକାନ୍ତ ଜଣେ ସୁନ୍ଦର ସୁପୁରୁଷ ଓ ଅଭିଜାତ ଥିବାର ଜଣାପଡ଼ୁଛି । ଏପରି ସ୍ଥଳେ, ସେହି ବୟସରେ ପରସ୍ପରର ଅଜ୍ଞାତରେ ଜଣକ ପରେ ଜଣେ ତରୁଣୀ କନ୍ୟା ତାଙ୍କ ପ୍ରତି ଆକୃଷ୍ଟ ହେବା ଆଦୌ ଅସ୍ୱାଭାବିକ ନୁହେଁ । ବରଂ ଏହି ସମୂହ ଆକର୍ଷଣ ଭିତରେ ଉମାକାନ୍ତ ଯେ ତାଙ୍କର ପ୍ରଥମ ପ୍ରେମ-ବାହିନୀ ଆରତି ପ୍ରତି ଶେଷ ପର୍ଯ୍ୟନ୍ତ ଅକଳଙ୍କ ଭାବରେ ଅନୁରକ୍ତ ରହି ପାରିଛନ୍ତି, ତାହାହିଁ ଏହି ଉପନ୍ୟାସର ମହତ୍ତ୍ୱ ଓ କୌଶଳ । ବନ୍ଧୁ ସୁରେଶର ଈର୍ଷାଜନିତ ଚକ୍ରାନ୍ତ ଫଳରେ ସରଳା ଆରତି ତା ଇଚ୍ଛା ବିରୁଦ୍ଧରେ ଆଉ ଜଣକୁ ବିବାହ କରିବାକୁ ବାଧ୍ୟ ହୁଏ । ଏ ବିପର୍ଯ୍ୟୟରେ ତରୁଣ ଉମାକାନ୍ତର ହୃଦୟର ଦାବଦାହ ଲେଖକ ନିପୁଣ ଯଥାର୍ଥତା ସହ ବର୍ଣ୍ଣନା କରି ପାରିଛନ୍ତି । ଏହି ସମୟରେ ଉମାକାନ୍ତ ଜଣେ ବିଦ୍ୱାନ୍ ବଙ୍ଗାଳୀ ସରୋଜବାବୁ ଏବଂ ଶାନ୍ତିନିକେତନ ଛାତ୍ରୀ ତାଙ୍କ ଭଉଣୀ ଅଳକାର ମନୋହର ସାମାଜିକ ଓ ସାଂସ୍କୃତିକ ସମ୍ପର୍କରେ ଆସନ୍ତି । ଏଇ ଭଉଣୀ ଦୁହେଁ, ଉମାକାନ୍ତଙ୍କର ମାନସିକ ବିପର୍ଯ୍ୟୟର କଥା ଜାଣି ପାରି ତାଙ୍କୁ ପୁନରୁଦ୍ଧାର କରିବା ଆଶାରେ, ତାଙ୍କ ପ୍ରତି ଯଥେଷ୍ଟ ମମତା ଓ ସହାନୁଭୂତି ଦେଖାନ୍ତି । ତରୁଣୀ ଅଳକାର ସହାନୁଭୂତି କ୍ରମେ ତାହାର ଆକର୍ଷଣରେ ପରିଣତ ହୁଏ । ସେ ଗୀତ-ନୃତ୍ୟ-ସାହିତ୍ୟ କଳାବିଜ୍ଞ ଏକ ପରମ ଶାନ୍ତିନିକେତନୀ ଆକର୍ଷଣ ଥିଲେ ମଧ୍ୟ, ଉମାକାନ୍ତ ତାଙ୍କୁ ବନ୍ଧୁ ଛଡ଼ା ଅଧିକ କିଛି ଭାବେ ନେଇ ପାରିବେ ନାହିଁ ବୋଲି ସ୍ପଷ୍ଟ ଜଣାଇ ଦିଅନ୍ତେ, ଅଳକା ଆତ୍ମହତ୍ୟା କରେ । ସରୋଜ ବାବୁ, ଭଉଣୀର ଏକପ୍ରକାର କଳଙ୍କାଙ୍କିତ ମୃତ୍ୟୁରେ ଉତ୍କ୍ଷିପ୍ତ ହୋଇ ପୂର୍ବର ସକଳ

ସୌହାର୍ଦ୍ଦ୍ୟ ଭୁଲିଯାଇ, ଉମାକାନ୍ତଙ୍କ ବିରୁଦ୍ଧରେ ମକଦ୍ଦମା ରୁଜୁ କରନ୍ତି । ଫଳରେ ଅଭିଜାତ ଓ ନିଷ୍ପାପ ଉମାକାନ୍ତଙ୍କୁ ସଶ୍ରମ କାରାବାସ ଖଟିବାକୁ ହୁଏ—ସାଧାରଣ ଅପରାଧୀମାନଙ୍କ ପରି । କାରାଗାରରୁ ବାହାରିଲା ବେଳକୁ ଯୌବନର ଲେଉମାପୁ ବରପାତ୍ର ଓ ତ୍ରୁଣସ୍ବୀ ଉମାକାନ୍ତ, ହସ୍ତାର ଏକ ଦୃଶ୍ୟ ଭିକ୍ଷୁକ ମାତ୍ର । ଦେହରେ ଛିଣ୍ଡା ଲୁଗା ଓ ଜାମା, ମୁହଁରେ ବର୍ଷକର ଦାଢ଼ି, ପୁଣି କପର୍ଦ୍ଦକଶୂନ । କେଉଁ ମୁହଁରେ ବାପା-ବୋଉଙ୍କ ପାଖକୁ ଯିବେ ? ପୂର୍ବ ପରିଚିତ ସମାଜରେ ମୁହଁ ବା ଦେଖାଇବେ କପରି ? ସେ 'ଉଦ୍‌ଭ୍ରାନ୍ତ' ହୋଇ କଟକ ଷ୍ଟେସନରେ କୁଲିଗିରି କରି କିଛି ପଇସା ଅର୍ଜି, ସେହି ପଇସାରେ କଲିକତା ପଳାଇଲେ ।

ସତେଇଶ—ଅଳକାକୁ ଜାଣିବା କାଳ ଭିତରେ, ଥରେ ଉମାକାନ୍ତ ପୁରୀ ବି. ଏନ୍. ଆର୍ ହୋଟେଲରେ ଆରତିକୁ ବିବାହ କରିଥିବା ଧନୀ ଯୁବକ ଅସିତ୍‌କୁ ଭେଟିଥିଲେ ଏବଂ ସେ ଆରତିକୁ ସାଥିରେ ନ ଆଣି, ଭୁଲିଥିଲେ ସୁନ୍ଦରୀ ବେକା ବାନାର୍ଜି ଏକ ଉଚ୍ଚ ଶିକ୍ଷିତା ବଙ୍ଗମହିଳାକୁ ନେଇ । ଇତି ମଧ୍ୟରେ ମଦ୍ୟପାୟୀ ଅସିତ୍ ହାର୍ଟ୍‌ଫେଲ୍ କରି ମରିଯାଇଛନ୍ତି ଏବଂ ପୂର୍ବବନ୍ଧୁ ସୁରେଶ ଓ ଅସିତ୍‌-ପତ୍ନୀ ଆରତି ମଧ୍ୟ କାହିଁ ପଳାଇଛନ୍ତି ବୋଲି ଖବରକାଗଜରୁ ଉମାକାନ୍ତ ଜାଣି ପାରିଥିଲେ । ସମଗ୍ର ଜେଲ୍ ଜୀବନ ଭିତରେ, ଉମାକାନ୍ତ ନିଜକୁ ଧିକ୍‌କାର କରୁଥିଲେ ଏଥିପାଇଁ ଯେ, ତାଙ୍କ ଯୋଗୁଁ କପରି ନିଷ୍ପାପ ନିରୀହା ବାଳିକା ଦୁର୍ଦ୍ଦଶାଗ୍ରସ୍ତ ହେଲେ ଏବଂ ତାଙ୍କର ସେହି ଅନାବୃତ୍ତ ପାପ ପାଇଁ ଜେଲ୍ ନୁହେଁ ବରଂ ଫାଶିର ଦଉଡ଼ି ସେ ଖୋଜୁଥିଲେ । ଜେଲ୍‌ରୁ ବାହାରି ମଧ୍ୟ ସେ ମନେ ମନେ ଖୋଜୁଥିଲେ ଆରତିକୁ ।

କୁଆଡ଼େ ଯିବେ କିଛି ଠିକ୍ କରି ନ ପାରି ସମାଜ ତଳକୁ ପଳାୟମାନ, ଭିକ୍ଷୁକବେଶୀ ଉମାକାନ୍ତ ହାବଡ଼ା ଷ୍ଟେସନରେ ଗୋଟିଏ ବେଞ୍ଚ ଉପରେ ବସି ଭାବି ହେଉଥିଲେ । ଏହି ସମୟରେ ହଠାତ୍ ଅନ୍ୟ କାମରେ ଆସିଥିବା ଆରତି-ସ୍ୱାମୀ-ବାନ୍ଧବୀ ବେକାବାନାର୍ଜି ହଠାତ୍ ତାଙ୍କୁ ଦେଖିପାରି ଓ ଚିହ୍ନିପାରି, ତାଙ୍କୁ ନିଜ ଘରକୁ ନେଇଗଲେ ।

ଦେବଳାର ହର ବର୍ମାଙ୍କୁ ଜୁଲି ଗ୍ରହଣ କରନ୍ତି । ଓଡ଼ିଆ ଜୁଲି ତାଙ୍କର ବନ୍ଧୁତା । ସେହି ଭାବରେ ଓଡ଼ିଆ ସଙ୍ଗୀତ ସେମାନଙ୍କର ସମ୍ପର୍କ । ଦେବଳାର ଘରେ ଉମାକାନ୍ତ ଦତ୍ତର ଆତିଥ୍ୟ ପାଇଲେ ଏବଂ ନିବିଡ଼ ସଖ୍ୟ ପାଇଲେ ଦେବଳାର । କିନ୍ତୁ ସେଠି ମଧ୍ୟ ଉମାକାନ୍ତ ବନ୍ଧୁତ୍ୱଠାରୁ ଅଧିକ ଦୂର ଯିବାକୁ ନିଜକୁ ନ ଦେଇ, ଦେବଳା ଘରୁ ଲୁଚି କରି ବର୍ମା ଚାଲିଗଲେ । ରେଙ୍ଗୁନ୍‌ରେ ଜଣେ ସାରଖେପୁ କ୍ଲବ ଏକଜଣର ଓଡ଼ିଆଣୀ ରକ୍ଷିତାଠାରୁ ଉମାକାନ୍ତ ପୂର୍ବର ଚନ୍ଦ୍ରକାଶ ବନ୍ଧୁ ସୁରେଶର ସନ୍ଧାନ ପାଇଲେ । ସେ ଜାଣିପାରିଲେ ଯେ ଅସିତର ମୃତ୍ୟୁ ପରେ, ସୁରେଶ ଅସହାୟ ଆରତିକୁ ଭୁଲାଇ ବର୍ମା ନେଇ ଚଳାଇ ଆସିଛି । ଆରତିର ପ୍ରାଣରେ ଧ୍ରୁବ-ତାରା ସଦୃଶ ଉମାକାନ୍ତ । କିନ୍ତୁ ତାର ପ୍ରଚେଷ୍ଟା ଭିତରେ ବ୍ୟର୍ଥ ହୋଇ ସୁରେଶ ତାକୁ ବାରଙ୍ଗନାର ସହକାରିଣୀ ରୂପେ ବିକି ଦେବା ପାଇଁ ବସିଥିଲା ବେଳେ, ଉମାକାନ୍ତ ଦିନେ ରାତିରେ ତା' ବସାକୁ ଯାଇ ତାକୁ ହତ୍ୟା କରେ ଓ ମୂର୍ଚ୍ଛାପ୍ରାପ୍ତା ଆରତିକୁ କାନ୍ଧରେ ନେଇ ସେହି ରାତିରେ ଅଜ୍ଞାତ ସ୍ଥାନକୁ ପଳାୟନ କରେ ।

ଏଇ ହେଲା ଉଦ୍‌ଭ୍ରାନ୍ତର ଗଳ୍ପ-ବସ୍ତୁ । କିନ୍ତୁ ଦୀର୍ଘ, ବୁଦ୍ଧିଦୀପ୍ତ କଥୋପକଥନ, ଦୀର୍ଘ ମାନସିକ ବିଶ୍ଳେଷଣ ଏବଂ ପ୍ରେମ, ଜାତିପ୍ରୀତି, ବନ୍ଧୁତା, ସାହିତ୍ୟ କବିତା ପ୍ରଭୃତି ଭାବ-କଳ୍ପର ଦୀର୍ଘ ଆଲୋଚନା ହେତୁ ଏହା ପ୍ରାୟ ପାଞ୍ଚଶ ପୃଷ୍ଠାର ଏକ ବିରାଟ ଉପନ୍ୟାସ ହୋଇ ପଡ଼ିଛି । ଅଧିକାଂଶ ଓଡ଼ିଆ ଉପନ୍ୟାସମାନଙ୍କ ଭିତରେ ନାୟକଙ୍କ ଉପନ୍ୟାସର ବୈଶିଷ୍ଟ୍ୟ ହେବ ବୋଧହୁଏ ବୁଦ୍ଧିଦୀପ୍ତ ବିଦଗ୍ଧ କଥୋପକଥନ । ଯେହେତୁ ଉପନ୍ୟାସର ପ୍ରଧାନ ନାୟକ ନାୟିକା ଉଚ୍ଚ ଶିକ୍ଷିତ, ତେଣୁ କଥୋପ-କଥନ ସ୍ୱାଭାବିକ ଭାବରେ ଉଠିଛି, ସମସାମୟିକ ଓଡ଼ିଶାର ନାନା ସମସ୍ୟା ନେଇ ।

ସମଗ୍ର ଉପନ୍ୟାସଟି ସୁଗଠିତ । କିନ୍ତୁ ଶେଷାଂଶରେ ମେଲୋଡ୍ରାମା ନ ଥିଲେ ପୁସ୍ତକଟି ଅଧିକ ମର୍ଯ୍ୟାଦାବନ୍ତ ହୋଇଥାନ୍ତା । ବର୍ଣ୍ଣନା ଓ କଥୋପକଥନ ଅଉ କିଛି ମାର୍ଜିତ ଓ ସଙ୍ଗତ ହୋଇଥିଲେ, ସେଗୁଡ଼ିକର

ମାନ୍ଧାତାଙ୍କ ମୂଲ୍ୟ ଯଥେଷ୍ଟ ବଢ଼ିଥାନ୍ତା । କଥୋପକଥନ ସବୁଠି ସମସ୍ତଙ୍କ ମୁଖରେ ଏକ ପ୍ରକାର ଗଠିତ ବୁଦ୍ଧିଯୁକ୍ତ ହେବା ଫଳରେ, ଏପରିକି ବେଶ୍ୟା ମୁଖରେ ମଧ୍ୟ ସ୍ୱାଭାବିକତା ହରାଇଛି । କିନ୍ତୁ ମୋଟ ଉପରେ ଉଦ୍‌ଭ୍ରାନ୍ତ ଯେ ଆଧୁନିକ ଓଡ଼ିଆ ଉପନ୍ୟାସମାନଙ୍କ ଭିତରେ ଏକ ଯୁଗଧର୍ମୀ, ଜୀବନଧର୍ମୀ ଓ ଯଥାର୍ଥ ଭାବରେ ସମାଜଧର୍ମୀ ପୁସ୍ତକ, ଏଥିରେ ସନ୍ଦେହ ନାହିଁ । ଲେଖକ ନାସ୍ତୁକ କିନ୍ତୁ ଏ କୃତିତ୍ୱ ପାଇଁ ଏଯାବତ୍ ଏ ଦେଶରେ ସାମାନ୍ୟତମ ସମ୍ବର୍ଦ୍ଧନା ପାଇଛନ୍ତି ବୋଲି ସ୍ମରଣ ହେଉ ନାହିଁ । ତାହା ମଧ୍ୟ ଏ ଦେଶରେ ସ୍ୱାଭାବିକ । କାରଣ ସେ ନିଜ ବହିର ସମାଲୋଚନା ନିଜେ ଲେଖି ଦୈନିକ ପତ୍ରିକାମାନଙ୍କର, ଅଥବା ସେସବୁ ସମ୍ପାଦକମାନଙ୍କର ହାତ ଧରି ଜାଣି ନାହାନ୍ତି ।

# ହା'ରେ ଦୁର୍ଭାଗା ଦେଶ : ଏକ ଅଧ୍ୟୟନ

ଅଧ୍ୟାପିକା ସୁଲୋଚନା ଦାସ 

"ସାରା ଜୀବନରେ ମୁଁ ଆଜି ପର୍ଯ୍ୟନ୍ତରେ, ଓଡ଼ିଶାରେ ଲେଖି ପଇସା ରୋଜଗାର କରିବା କଥା ଭାବିବା ପୂର୍ବରୁ ସେ ଭାବିଛନ୍ତି କି ସେ ଓଡ଼ିଆରେ ଲେଖୁଛନ୍ତି କାହିଁକି ? କାହାପାଇଁ ଲେଖୁଛନ୍ତି ? ତାଙ୍କ ଲେଖାକୁ ପଢ଼ୁଛି କିଏ ? ମୁଁ ଜାଣେ, ଏହାର ଉତ୍ତର ଦେବାକୁ ତାଙ୍କର କିଛି ନାହିଁ । ଯାହା କିଛି ଦେବେ—ତା ନିରର୍ଥକ । କେବଳ ତର୍କ ଆଉ ଯୁକ୍ତି । ଯୁ' ସାହିତ୍ୟିକର ଦେଶବାସୀଙ୍କ ଜୀବନଗଠନ ପ୍ରତି କର୍ତ୍ତବ୍ୟ ନାହିଁ, ସେ ଦେଶର ସାହିତ୍ୟିକ-ଜୀବନ-ମରଣ ସମସ୍ୟା ପ୍ରତି ଜନସାଧାରଣର ଦାୟିତ୍ୱ ରହି ନପାରେ । ମାନସିକ ତାଡ଼ନାରେ ଦିଖଣ୍ଡ କବିତା, ଦିଟା ପ୍ରବନ୍ଧ, କିଛି—ଉପନ୍ୟାସ ଲେଖି ପ୍ରକାଶ କରିଦେଲେ ସାହିତ୍ୟିକର ଦାୟିତ୍ୱ ଶେଷ ହୁଏ ନାହିଁ । ବର୍ତ୍ତମାନ ସାହିତ୍ୟ ସେବା ନାମରେ ଦେଶର କେତେଜଣ ସ୍ୱେଚ୍ଛାଚାରୀ ସାହିତ୍ୟିକ ଯେଉଁ ଯଥେଚ୍ଛାଚାରର ଆରମ୍ଭ କରିଛନ୍ତି ଅନୁଷ୍ଠାନ ଗଢ଼ି—ସଭାପତି, ସମ୍ପାଦକ, କୋଷାଧ୍ୟକ୍ଷ ହେବା ପାଇଁ ଦଳ, ଶ୍ରେଣୀ ଆଉ ବିଭାଗ ସୃଷ୍ଟି କରି ଯେଉଁ ବିଭେଦ ସୃଷ୍ଟି କରୁଛନ୍ତି—ସାହିତ୍ୟିକ ହୋଇ ଅନ୍ୟ ଲେଖକ ବିରୁଦ୍ଧରେ କଟୂକ୍ତି, ଅନ୍ୟର ଲେଖାକୁ ବିଦ୍ରୂପ, ଅନ୍ୟ କବିର ପ୍ରତିଭାକୁ ଈର୍ଷା କରି, ନିନ୍ଦା ରଚନା କରି ସଙ୍କୀର୍ଣ୍ଣ ମନୋବୃତ୍ତିର ପରିଚୟ ଦେଉଛନ୍ତି—ସେଥିରେ ମନେହୁଏ, ଏ ଦେଶର ଅର୍ଦ୍ଧଲୁପ୍ତ ସାହିତ୍ୟ ଖୁବ୍ ଶୀଘ୍ର ବିଲୁପ୍ତ ହେବ । ଦେଶର ଚାରିଆଡ଼େ ସଙ୍କୀର୍ଣ୍ଣ ଜାତିଗତ ବିଦ୍ୱେଷ, ବର୍ଣ୍ଣଗତ ବିବାଦ, ଦଳଗତ ପାର୍ଥକ୍ୟ !

ଏସବୁ ଚତୁର୍ଦ୍ଦରେ ଜଣେ ସାହିତ୍ୟିକ ପ୍ରତିବାଦ କରନ୍ତା କିଏ, ଜନତାକୁ ବୁଝାନ୍ତା କିଏ, ସର୍ବସାଧାରଣଙ୍କୁ ଗଣନ୍ତା କିଏ, ଓଲଟି ନିଜ ନିଜ ଭିତରେ ସେଇ ଘଣ୍ଟାଘଣ୍ଟି, ଦଳାଦଳି, ସଙ୍କୀର୍ଣ୍ଣ ମନୋଭାବକୁ ଆଣି ପୂରାଉଛନ୍ତି—ଆଜି ନିଜେ ମଧ୍ୟ ସୁଅ ମୁହଁରେ କୁଟା ଖଣ୍ଡ ପରି ଭାସି ଚାଲିଛନ୍ତି ।”

—(ହାଟର ଦୁର୍ଘଟା ଦେଶ-ପୃ ୧୬୦)

ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କର ଏ ଉକ୍ତି ନାୟକ ଉପେନ ମୁଖରେ ପ୍ରକାଶ ପାଇଛି—ସାହିତ୍ୟିକର ଆଦର୍ଶ, ବିଶେଷତ୍ୱ, ସ୍ୱାତନ୍ତ୍ର୍ୟ ଓ ଦେଶ ପ୍ରତି ତାର କର୍ତ୍ତବ୍ୟ ବୋଧ ସମ୍ପର୍କରେ । ଏ କ୍ଷୋଭ ଅନ୍ତର ବିପଥ-ଗାମୀ ସମାଜର ଅଧୋଗତିକୁ ଲକ୍ଷ୍ୟ କରି । ମନେହୁଏ ସମାଜର ବିପର୍ଯ୍ୟସ୍ତ ଅବସ୍ଥା ଯେପରି ଲେଖକଙ୍କ ପ୍ରାଣରେ ଗଭୀର ଆଘାତ ସୃଷ୍ଟି କରିଛି । ବାଟ ଚାଲିଲେ, ସଂବାଦପତ୍ରର ପୃଷ୍ଠା ଉନ୍ମୋଚନ କଲେ ସମାଜର ଦୟନୀୟ, ବିକଳାଙ୍ଗ ନଗ୍ନରୂପ ଆଖିରେ ପଡ଼େ । ପ୍ରତ୍ୟେକ କ୍ଷେତ୍ରରେ ମୂଲ୍ୟବୋଧର ହ୍ରାସ ଆଜି ଚିନ୍ତାନାୟକ ମାନଙ୍କର ବିଶେଷ ଚିନ୍ତାର କାରଣ ହୋଇଛି । ଆଜି ମୂଲ୍ୟ ଓ ମୂଲ୍ୟବୋଧ ମଧ୍ୟରେ ସଂଘର୍ଷ । ଏ ସଂଘର୍ଷରେ ଭୁଶୁଡ଼ି ଯାଉଛି ଆମର ପ୍ରାଚୀନ ଗୌରବମୟ ପରମ୍ପରା, ଐତିହ୍ୟ, ବୁନି-ଆଦର ଐଶ୍ୱର୍ଯ୍ୟଶାଳୀ ଭଣ୍ଡାର । ଜର୍ଜର ହୋଇଯାଉଛି ପ୍ରାଣର ପ୍ରାଣ ପ୍ରାଚୁର୍ଯ୍ୟ । ବିପର୍ଯ୍ୟସ୍ତ ସମାଜର ପ୍ରତ୍ୟେକଟି ସ୍ତରରେ ଆଜି ଯେଉଁ ଅସଙ୍ଗତି, ଅବ୍ୟବସ୍ଥାମାନ ସ୍ୱାଭାବିକ ଗତିରେ ଆଜି ଦେଖାଦେଇଛି, ତାହା ମଣିଷର ଅନ୍ତରାତ୍ମାରେ ଯେଉଁ ହତାଶାର ବହ୍ନି ପ୍ରଜ୍ୱଳିତ କରିଛି, ତାହାକୁ ନିର୍ବାପିତ କରିବାର ଏକ ଅଦମ୍ୟ ମାନସିକ ପ୍ରବୃତ୍ତି ଏହି ଉପନ୍ୟାସଟିରେ ପ୍ରକାଶ ପାଇଛି । ଖଣ୍ଡ ଖଣ୍ଡ ଭୁଶୁଡ଼ି ଯାଉଥିବା ପରମ୍ପରା, ବିଶ୍ୱାସର ଟୁକୁରା ଟୁକୁରା ଖଣ୍ଡକୁ ଯୋଡ଼ି ଏକ ସ୍ୱତନ୍ତ୍ର ନୂତନ ବସ୍ତୁର ପରିକଳ୍ପନା କରିପାରେ କେବଳ ସାହିତ୍ୟିକ ।

କିନ୍ତୁ ଆଜିର ସାହିତ୍ୟିକ ସେଇ ପ୍ରଜ୍ଞାଦ୍ରଷ୍ଟା, ଚେତନ ସତ୍ତାର ଅଧିକାରୀ ନୁହେଁ; ସିଏ ମଣିଷ ସଭ୍ୟତାକୁ ତାର ଏଇ ସଙ୍କଟମୟ ଅବସ୍ଥାରୁ, ଧ୍ୱଂସ ମୁଖରୁ ଟାଣିଆଣି ନୂତନ ଆଶା, ଆଲୋକର ସନ୍ଧାନ

ଦେବ । ଅଲେକର ବର୍ତ୍ତିକା ଧରି ବିପଥଗାମୀ ମଣିଷ ଓ ସମାଜ ପାଇଁ ଅନେକାଂଶରେ ଦାୟୀ ହୋଇରହିବ, ଅପକ୍ଷ ସମ୍ଭାବନାର ଆଗାମୀ ପ୍ରଭାତକୁ ସ୍ୱାଗତ ସମ୍ଭାଷଣ ଜଣାଇବାର ପାଇଁ ପ୍ରସ୍ତୁତ ନୁହଁ । ସମୟର ଗତି ପ୍ରବହମାନତା ମଧ୍ୟରେ ମଣିଷର ସ୍ଥିତି ଓ ସ୍ଥାୟିତ୍ୱକୁ ବଜାୟ ରଖିବାର ସଙ୍କଳ୍ପର ମହାମନ୍ତ୍ରକୁ ଉଚ୍ଚାରଣ କରି ସେ ହେବ ଯାଜ୍ଞିକ । ଆଜି ଆଉ ସାହିତ୍ୟିକ, ସମାଜର ଶିକ୍ଷାଗୁରୁ ନୁହେଁ । ସମାଜର ଅଧୋଗତିର ଗତି ପ୍ରବାହର ଧାରକୁ ରୋକି ପାରିବାର ସାମର୍ଥ୍ୟ ଆଜି ସେ ହରାଇ ବସିଛି । ଲେଖକ ମୁକ୍ତକଣ୍ଠରେ ଏହା ସ୍ୱୀକାର କରିଛନ୍ତି ଉପେନ ଜୁଣ୍ଡରେ । ସ୍ୱ ହସ୍ତ୍ୟା ପଥ ଜୀବନକୁ ସୁନ୍ଦର, ମାର୍ଜିତ, ଉନ୍ନତକରି ଗଢ଼ି ତୋଳିବାରେ ବ୍ୟର୍ଥ ମାନସ ହୁଏ; ସାହିତ୍ୟିକ ପଥ ନିଜେ ବିପଥଗାମୀ ହୁଏ ତେବେ ଦେଶ, ଜାତି, ସମାଜକୁ ନିର୍ଦ୍ଦିଷ୍ଟ ପଥପ୍ରଦର୍ଶନ ଦେବ କିଏ ? ଏ ପ୍ରଶ୍ନ ଅଜସ୍ର ସ୍ୱରରେ ଲେଖକଙ୍କ ଜୁଣ୍ଡରୁ ଝରିଆସିଛି ତାଙ୍କର ଅଧିକାଂଶ କଳା ସୃଷ୍ଟି ମଧ୍ୟରେ । ସାହିତ୍ୟିକ ପଥ ତାର ପ୍ରାଣର ବାର୍ତ୍ତାକୁ ଦେଶବାସୀଙ୍କ ହୃଦୟ-ତନ୍ତ୍ରୀରେ ଝଙ୍କାର ତୋଳି ମୂର୍ଚ୍ଛନା ସୃଷ୍ଟି ନ କରିପାରିଛି, ତେବେ ସେ ସୃଷ୍ଟିର ସାର୍ଥକତା କେଉଁଠି ?

ଜୀବନବାଦୀ ଔପନ୍ୟାସିକ ଲକ୍ଷ୍ମୀଧର ନାୟକ ଜୀବନର ବ୍ୟାଖ୍ୟାକାର ହୋଇ କେବଳ ନୀରବ ରହିନାହାନ୍ତି । ଜୀବନର ପରମ ସତ୍ୟକୁ ଉଦ୍‌ଘାଟନ କରିବାରେ ସେ ଯେତିକି ଆଗ୍ରହୀ ହୋଇଛନ୍ତି ଅପର-ପକ୍ଷରେ ମଣିଷ ପ୍ରାଣରେ ପ୍ରେମ ଓ ମମତାର ଅମୃତ ସ୍ପର୍ଶ ଦେବାକୁ ସେତିକି ସମର୍ଥ ହୋଇଛନ୍ତି । ମଣିଷ ପ୍ରାଣର, ତାର ସମସ୍ୟାର, ତାର ବ୍ୟଥା ବେଦନାର, ତାର ପ୍ରତ୍ୟେ ଅନ୍ତରର କାହାଣୀ ଏବେ ମଧ୍ୟ ଶେଷ ହୋଇନି । ଶେଷ ହୋଇପାରେନା । କାରଣ ମଣିଷର ପ୍ରାଣସତ୍ତା ସର୍ବ-ବ୍ୟାପୀ, ଅନନ୍ତ ଓ ତାର ବ୍ୟାପ୍ତି ବିସ୍ତୃତ । ସେଇ ଜୀବନଧାରା ବହୁ ଘାଟରେ, ବହୁ ରଙ୍ଗରେ, ବହୁ ଦୀପ୍ତିରେ ସ୍ଫୁରିତ ହୁଏ । ସାହିତ୍ୟିକ ନୀରବ ସାଧକ । ଏଇ ବଞ୍ଚିତ ପ୍ରାଣ ପ୍ରବାହର ରତ୍ନରାଜିକୁ ସେ ଆହରଣ କରିନିଏ । ସଜେଇ ଗୁନ୍ଥେଇ ତାକୁ ମାଳା ରଚନା କରେ । ସହୃଦୟ ପାଠକ କଣ୍ଠରେ ଗଳେଇଦିଏ । ପ୍ରାଣ ମହକ ଉଠେ । ହୃଦୟରୁ ଆବର୍ଜନା

ଅପସାରିତ ହୋଇଥାଏ । କିନ୍ତୁ ଯେତେବେଳେ ଲେଖକ ଏଇ ମାଳାଟିକୁ ନିଜ କଣ୍ଠରେ ଟେକେଇ ନିଜକୁ ଗୌରବାନ୍ୱିତ ମନେ କରେ ସେତେବେଳେ ନିଜର ସୃଷ୍ଟି ଆବେଶରେ ସେ ମୂର୍ଚ୍ଛିତ ହୋଇଥାଏ । ବାହାର ଜଗତ ସହିତ ସେ ସମ୍ପୂର୍ଣ୍ଣ ଅପରିଚିତ ହୋଇ ରହିଯାଏ । ସାହିତ୍ୟିକର ସୃଷ୍ଟି ସେ କ୍ଷେତ୍ରରେ ଅସାର, ମୂଲ୍ୟହୀନ । ଲେଖକ ସାମ୍ପ୍ରତିକ ସଙ୍କଟକୁ ଲକ୍ଷ୍ୟକରି ଆକ୍ଷେପ କରିଛନ୍ତି ।

ବାଲ୍ମୀକି, ବ୍ୟାସଦେବ, ପରମହଂସ, ବିବେକାନନ୍ଦ ଏମାନେ ଏ ଦେଶ ଜାତିର ଶିକ୍ଷାଗୁରୁ । ଦେଶ ଜାତିକୁ ଏକ ନିର୍ଦ୍ଦିଷ୍ଟ ଆଲୋକମୟ ପଥରେ ଅଣେଇ ନେବା ପାଇଁ ସେମାନଙ୍କର ରଚନା ଉଦ୍ଦିଷ୍ଟ । ରାମାୟଣର ପ୍ରତ୍ୟେକଟି ଚରିତ୍ର ସମାଜକୁ ସ୍ୱତନ୍ତ୍ର ଦିଗ୍‌ଦର୍ଶନ ଦେବାରେ ସମର୍ଥ । ଯେଉଁ ସ୍ରଷ୍ଟା ରାବଣ ପରି ମହାନ ହୃଦୟର ଅଧିକାରୀ ଶତ୍ରୁ ସୃଷ୍ଟି କରିପାରେ, ଭରତ ପରି ଭାଇ, ଉର୍ମିଳା ପରି ସ୍ତ୍ରୀ, ହନୁମାନ ପରି ଦାସ, ସୁଗ୍ରୀବ ପରି ମିତ୍ର, କୈକେୟୀ ପରି ବିମାତା ପ୍ରଭୃତି ସୃଷ୍ଟି କରିପାରେ, ସେ ସ୍ରଷ୍ଟା, ସେ ସାହିତ୍ୟିକ ଯେ ଚିରକାଳ ଦେଶ ଜାତିର ଶିକ୍ଷାଗୁରୁ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସମ୍ପ୍ରତି ସମାଜର ସର୍ବୋଚ୍ଚ-ତମ ସଚେତନ ପ୍ରାଜ୍ଞ ସାହିତ୍ୟିକ ଯଥାର୍ଥରେ ପ୍ରକୃତ ଜ୍ଞାନର ଅଧିକାରୀ ହୋଇପାରୁନାହିଁ କିମ୍ବା ସମାଜକୁ ସେ ତାର ଲେଖା ମାଧ୍ୟମରେ ଯେଉଁ ବାର୍ତ୍ତା ଦେଉଛି ତାହା ମଧ୍ୟ ସମାଜ, ଜାତି, ଦେଶର କଲ୍ୟାଣ ସାଧନ କରୁ-ନାହିଁ । ଏଥିପାଇଁ ଶ୍ରୀଯୁକ୍ତ ନାୟକ ସାହିତ୍ୟିକକୁ ଦୋଷାରୋପ କରିଛନ୍ତି । ଜାତିର କର୍ଣ୍ଣଧାର ହୋଇ ଯଦି ଜାତିର ନେତୃତ୍ୱର ଭାର କେହି ନେଇ ନ ପାରେ ତେବେ ସେ ପ୍ରକୃତ ନେତା ନୁହେଁ । ବାଲ୍ମୀକିଙ୍କ ପରି-କଳ୍ପନା ହେଉଛନ୍ତି ସୁପୁରୁଷ, ପୁରୁଷୋତ୍ତମ ରାମଚନ୍ଦ୍ର । ରାମଚରିତ୍ରର ପରିକଳ୍ପନା ବାଲ୍ମୀକି ପରି ପ୍ରାଜ୍ଞ ବ୍ୟକ୍ତିଙ୍କ ଉନ୍ନତ ଚିନ୍ତା ଶକ୍ତିର ପରିଚୟ । ରାମଚନ୍ଦ୍ର ଜନତାର ପ୍ରଭୁ, ପ୍ରଜାମାନଙ୍କର ଆରାଧ୍ୟ । କିନ୍ତୁ ରାଜା ରାମଚନ୍ଦ୍ରଙ୍କର ପ୍ରଭୁ ହେଉଛନ୍ତି ମହର୍ଷି ବାଲ୍ମୀକି । ତେଣୁ ଉପଯୁକ୍ତ ବାଲ୍ମୀକିର ଅଭାବରେ ବୋଧହୁଏ ରାମଚନ୍ଦ୍ର ପରି ମହାନ ପୁରୁଷର ପରିକଳ୍ପନା ସମ୍ଭବ ହୋଇ ପାରୁନଥିବ । ଆଜି ଦେଶରେ ଯେତେ

ଦୁର୍ଗତି ଦେଖା ଦେଇଛି, ଅନ୍ତରାଳରେ ନେତୃବର୍ଗଙ୍କୁ ଦୋଷାରୋପ କରା-ଯାଉଛି । ମାତ୍ର ଏଥିପାଇଁ ଅଧିକ ଦାୟୀ ହେଉଛନ୍ତି ସାହିତ୍ୟିକ ଗୋଷ୍ଠୀ । କାରଣ ନେତାଙ୍କୁ ନିର୍ଦ୍ଦିଷ୍ଟ ପଥପ୍ରଦର୍ଶନ ଦେବାରେ ସେମାନେ ଆଜି ବିଫଳ । ଲେଖକ ଶ୍ରୀଯୁକ୍ତ ନାୟକ ଏହି ଉପନ୍ୟାସଟିର ପ୍ରତିଟି ଛତ୍ରରେ ସାହିତ୍ୟ-ଜର ଦୋଷତ୍ରୁଟିକୁ ଲୋକଲୋଚନକୁ ଆଣିବାକୁ କୁଣ୍ଠିତ ହୋଇନାହାନ୍ତି । ବରଂ ସ୍ରଷ୍ଟା, ସାହିତ୍ୟିକମାନଙ୍କୁ ସେ ଆହ୍ୱାନ କରିଛନ୍ତି ଏକ ନିର୍ମଳ, ସୁନ୍ଦର ସମାଜ ଗଠନ ପାଇଁ ସଂକଳ୍ପବଦ୍ଧ ହେବାକୁ ।

ଅନେକ କ୍ଷେତ୍ରରେ ଔପନ୍ୟାସିକମାନେ ସସ୍ତା ପ୍ରଣୟର ଚିତ୍ରଦେଇ ପାଠକକୁ ସମ୍ମୋହିତ କରିବାର ପ୍ରୟାସ ପୋଷଣ କରିଥାନ୍ତି । କିନ୍ତୁ ପ୍ରଣୟର ଚିତ୍ର ପ୍ରଦାନ କରିବାରେ ଲେଖକଙ୍କ ସଂଯମ ଓ ମାର୍ଜିତ ରୁଚିକୁ ପ୍ରଶଂସା ନ କରି ରହି ହୁଏ ନାହିଁ । ନାୟକ ଉପେନର ମାଧବୀପ୍ରତି ଥିବା ଗଭୀର ଭଲପାଇବାର ଜ୍ୟୋତିରେ ଉପନ୍ୟାସ ଶ୍ରୀମଣ୍ଡିତ ହୋଇଛି । ଅତିର ପତ୍ରରେ ବିନତାର ପ୍ରେମର ମହିମାରେ ସେ ମହିମାମୟୀ ହୋଇ ଉଠିଛି । ପ୍ରଣୟ ଏକ ଆଲୋକ । ଜ୍ଞାନାଲୋକ ପରି ପ୍ରେମର ଆଲୋକରେ ମଣିଷ ଆତ୍ମା ଆଲୋକିତ ହୁଏ । କିନ୍ତୁ ଜ୍ଞାନାଲୋକରେ ବ୍ୟକ୍ତି ନିଜେ ଆଲୋକିତ ହୁଏ କିନ୍ତୁ ପ୍ରେମର ଆଲୋକରେ ବିଶ୍ୱ ଆଲୋକମୟ ହୋଇ ଉଠେ । ଏହି ପ୍ରେମ ଜ୍ଞାନର ମହିମାରେ ମହିମାନ୍ୱିତ ହୋଇଥାଏ । ପ୍ରେମର ସ୍ୱୀକୃତି କେବଳ ପ୍ରାପ୍ତିରେ ପର୍ଯ୍ୟବସିତ ନୁହେଁ । ବୈଫଲ୍ୟ ମଧ୍ୟ ପ୍ରେମକୁ ଗୌରବ ଆଣିଦିଏ । ଏହିପରି ଏକ ମହାନ ପ୍ରେମର ଅବତାରଣା କରିଛନ୍ତି ଲେଖକ । ସମୟର ପ୍ରବାହରେ ମାଧବୀ ଅନ୍ୟତ୍ର ବିବାହ କରେ । ଉପନ୍ୟାସର ଆରମ୍ଭରେ ମାଧବୀକୁ ପାଠକ ଯେଉଁ ରୂପରେ ଦେଖିଥାଏ, ଉପନ୍ୟାସର ପରିଣତିରେ ତାକୁ ଭିନ୍ନ ଏକ ରୂପରେ ଦେଖେ । ବଂଶ ମର୍ଯ୍ୟାଦାର ଅହଂକାର ଏଠି ପ୍ରେମର ପ୍ରଣୟରେ ଭାଙ୍ଗି ଯାଇଛି । ସୁଶିକ୍ଷିତ ତରୁଣ ଉପେନ ପ୍ରାଣରେ ମାଧବୀ ପ୍ରେମର ମହକ ତାର ସମଗ୍ର ଦେହମନକୁ ବଶୀଭୂତ କରି ରଖିଛି । ମାଧବୀକୁ ନିଜ ହୃଦୟର ସିଂହାସନରେ ଅଭିଷେକ କରିବାକୁ ପଣ କରିଛି ଉପେନ । ହୃଦୟର ରକ୍ତ କମଳରେ ତାର ଅର୍ଚ୍ଚନା କରିବ ; ବାସନା ଧୂପରେ

ଚନ୍ଦ୍ର ମନ୍ଦିର କରି ତୋଳିବ ତା ମାନସ-ମନ୍ଦିର । ହେଲେ ବାଧାର ବନ୍ତମୂଳନା ହଟେନ୍ । ବଂଶ, କୁଳଆଭିଜାତ୍ୟ, ଶିକ୍ଷାର ଅଭିମାନରେ ଅଭିମାନୀ ବାପାଙ୍କୁ ଉପେକ୍ଷି କରି କନ୍ଦୁ କହିବାର ମତ୍ ସାହସ ସଂଗ୍ରହ କରିପାରିନ ଜ୍ୟୋତେନ । ମାଧବୀ—ତା କଳ୍ପନାର ମାଧବୀ, ତା'ଜୀବନର ଚିର ବାଞ୍ଛିତା ମାଧବୀ, ଏ ପର୍ଯ୍ୟନ୍ତ ବି ତା ମନରେ, ତା ଧ୍ୟାନରେ ଆଉ ସ୍ୱପ୍ନରେ ସେଇପରି ଚିର ଜାଗ୍ରତ ହୋଇ ରହିଛି । କେତେ ଚେଷ୍ଟା କଲାଣି ସେ ତାକୁ ଭୁଲି ଯିବାକୁ । କିନ୍ତୁ କାହିଁ? କେଉଁଠି ଭୁଲି ପାରୁଛି ତାକୁ ? ଟିକିଏ ଆଖିବୁଜି ଭାବିଲେ ଯ୍ଳାପିତ ନୟନରେ ଭାସିଆସେ ସେଇ ଅଶୋକା ମାଧବୀ । ଆସି ଛିଡ଼ା ହୁଏ—ଦୃଷ୍ଟି ପଥରେ ହେମନ୍ତ ଗୋଧୂଳିର ରକ୍ତାଭ ବର୍ଣ୍ଣଛଟା ନେଇ ମଳିନ ସନ୍ଧ୍ୟାପରି । ଟିକିଏ ଚାହାଁକଲେ ଏବେ ବି ଦିଶି ଯାଏ, ଛ'ମାସ ତଳର ସ୍ମୃତି-ଜଡ଼ିତ ବନଗୁଳ୍ମକର ଅଭୁଲା ଦୃଶ୍ୟ ।"

ପଢ଼ିଲି ପ୍ରତ୍ୟେକର ଅଭୁଲା ସ୍ପର୍ଶ । ସମଗ୍ର ଉପନ୍ୟାସଟିରେ ପ୍ରେମର ଏକ ସ୍ନିଗ୍ଧ, କଂପିତ ସ୍ପର୍ଶ ପାଠକ ପ୍ରାଣକୁ ଗଭୀର ଭାବରେ ଆଲୋଡ଼ିତ କରେ । ଉପନ୍ୟାସର ଶେଷ ପରିଚ୍ଛେଦରେ ବନଜା ସହିତ ଜ୍ୟୋତେନର ମିଳାମିଶା ଯେତେ ସ୍ୱାଭାବିକ ଓ ସହଜ ହେଲେ ମଧ୍ୟ ପାଠକ ମନରେ ସନ୍ଦେହର ସୂତ୍ରପାତ ହୁଏ । ଘନଶ୍ୟାମ ପରିବାରର ଝିଅ ମାଧବୀ, ଅବସ୍ଥା ଚକ୍ରରେ ଯିଏ ଅଧ୍ୟାପକଙ୍କର ପାହାଡ଼ ପରେ ପାହାଡ଼ ହୋଇ ଉଭାଇ ଯାଇଛନ୍ତି ରଘୁନାଥଙ୍କୁ । ତାକୁ ଏକ ନୂତନ ଆଲୋକର ସନ୍ଧାନ ଦେବା ପାଇଁ ଜ୍ୟୋତେନ ଆଗ୍ରହୀ ହୋଇଛନ୍ତି । ଉପନ୍ୟାସର ପରିଶେଷରେ ଜ୍ୟୋତେନ ମନରେ ଦେଖା ଦେଇଥିବା ବାଞ୍ଛିତା, ହତାଶାରେ ତାର ବନ୍ଧୁ ପୌରୁଷରେ ଅହଂକାର କେତେକାଂଶରେ ଆହତ ହୋଇଛନ୍ତି । ବନଜାର ଶିକ୍ଷା, ଦୀକ୍ଷା, ପରିବେଶ, ସ୍ୱାଭିମାନିନୀ ସହିତ ମାଧବୀର ସାମାଜିକ ସ୍ଥିତିକୁ ତୁଳନା କରିହେବ ନାହିଁ । କିନ୍ତୁ ଏକ ପକ୍ଷରେ ମାଧବୀ ଓ ଅନ୍ୟ ପକ୍ଷରେ ବନଜା । ଉଭୟର ଦୁର୍ବାର ଆକର୍ଷଣ । ଜଣକ ପାଇଁ କର୍ତ୍ତବ୍ୟର ତାଡ଼ନା, ଅନ୍ୟ ଜଣକ ପାଇଁ ଦୁର୍ବାର ମୋହ । କାହାକୁ ଏଡ଼େଇବାର ଶକ୍ତି ନାହିଁ ଜ୍ୟୋତେନ ପାଖରେ । କିନ୍ତୁ ଏହି ବନ୍ଧୁ ଚରିତ୍ରଟି କର୍ତ୍ତବ୍ୟବୋଧ ନିକଟରେ ତାର ପ୍ରାଣର ପୌରୁଷମାର୍ଯ୍ୟକୁ ଜଳାଞ୍ଜଳି ଦେଇଛି । ମାଧବୀକୁ ଭୁଲି

ଚାଇବାରେ ଦୈହିକ ସ୍ୱାର୍ଥର ସ୍ଥାନ ପ୍ରବୃତ୍ତିନାହିଁ ଉପେନର । ହୃଦୟ ତାର ଅଶକ୍ତିବନ୍ଧନ । ମନ ତାର ନିଷ୍କଳଙ୍କ । ତାର ଏହି ପବିତ୍ର ପ୍ରେମରେ କନ୍ଦର୍ପର କାଳିମା ନାହିଁ । ତାର ପ୍ରେମ ପ୍ରକୃତି ପରି ଚିର ସବୁଜ ଓ ସତେଜ । ଅନ୍ୟ କ୍ଷେତ୍ରରେ ବନଜା ପ୍ରତି ତାର ଆକର୍ଷଣ ମଧ୍ୟ ପୌରୁଷୋଚିତ । କେଉଁଠାରେ ହେଲେ ସେ ନିଜର ମନର ଦୁର୍ବଳତାକୁ ପ୍ରକାଶ କରିନାହିଁ । ମାତ୍ର ବନଜା ପ୍ରାଣର ପ୍ରତିଟି ତନ୍ତ୍ରୀ ସତେ ଯେପରି ଉପେନ ପ୍ରେମର ଝଙ୍କାରରେ ଝଙ୍କୃତ ହୋଇ ଉଠିଛି । ହୃଦୟରେ ସୃଷ୍ଟି ହୋଇଛି ମେଘ-ମହ୍ଲାର ରାଗିଣୀ । ଆକାଶରେ କଳା ବାଦଲ ଦେଖି ମନର ମୟୂରୀ ତାର ପୁଚ୍ଛ ଟେକି ଆନନ୍ଦରେ ଆତ୍ମହରା ହୋଇ ନୃତ୍ୟ କରିଛି । ବିଗତପ୍ରସାରୀ ଅନ୍ଧକାର ଭିତରେ ଲକ୍ଷ ଲକ୍ଷ ନକ୍ଷତ୍ର କଥା କହି ଉଠିଛି । ହିଲ୍ଲୋଳିତ ବାୟୁ ତରଙ୍ଗ ଭିତରେ ନିର୍ଜ୍ଜନତାର ବଂଶୀ ବାଜି- ଉଠିଛି । ଅସୀମ ଆଜି ସସୀମ । ପୃଥିବୀ ଆଜି ଅଭିସାରିକା ! ଫେନାୟିତ ସମୁଦ୍ର କଲ୍ଲୋଳରେ ଉଚ୍ଛୁସି ଉଠୁଛି ଅଦୃଶ୍ୟର ଚେତନା-ଐଶ୍ୱର୍ଯ୍ୟ ! ! ଦେଖି ପାରୁନ ? ଆଗାମୀ ଭବିଷ୍ୟତର ସାନନ୍ଦ ଆର୍ତ୍ତନାଦ ନେଇ ଏ ବନି କାତର ଗହ୍ୱର ପ୍ରାଣରସରେ ପ୍ଲାବିତ ! ସ୍ୱପ୍ନ ଦେଖୁଛି ବିଗତମ୍ଳାନ ଅସୀମତା ଭିତରେ ଅଙ୍କୁରସ୍ୱମାନ ରଶ୍ମିପୂର୍ଣ୍ଣତାର ! କିନ୍ତୁ ମନରେ ପ୍ରଶ୍ନ ଉଠେ ସତେ କଣ ଉପେନ ଏହି ଅନ୍ଧକାରର ପ୍ଲାବନ ଭିତରେ ନିଜକୁ ଭସାଇ ଦେବାକୁ ଚାହିଁ ନାହିଁ ? ନାରୀ, ପୂର୍ଣ୍ଣ ବନଜା ପରି ସୁନ୍ଦରୀ ତରୁଣୀର ପ୍ରେମକୁ କଣ ସେ ପ୍ରତ୍ୟାଖ୍ୟାନ କରିପାରିଛି ? ପ୍ରତ୍ୟାଖ୍ୟାନ କରିବା କଣ ସମ୍ଭବ ? ନା, କବିତା ଆଜି କଳ୍ପନା ପରି, ଭାବ ଅନୁଭବ ଭାଷା ପରି, ଧ୍ୱନି ଆଜି ଛନ୍ଦ ପରି ନିବିଡ଼ ସାନିଧ୍ୟରେ, ବିହ୍ୱଳ ଅନୁ- ଭୂତିରେ ବନଜାର ହୃଦୟ ଭିତରେ ନିବିଡ଼ ଭାବରେ ନିଜକୁ ହଜାଇ ଦେବାକୁ ଚାହିଁଛି ଉପେନ ?

ନାରୀ ପ୍ରକୃତିର ସମ୍ପର୍କ ବିଚିତ୍ର । ଯେଉଁଠାରେ ନାରୀ ନିଜକୁ ସମ୍ପୂର୍ଣ୍ଣ ଭାବରେ ଉତ୍ସର୍ଗ କରିଦେବାକୁ ଚାହେଁ, ନିଜେ ଦ୍ରବ୍ୟ ହୋଇ ପ୍ରେମର ଅଖଣ୍ଡ ଜ୍ୟୋତିକୁ ଜ୍ୟୋତିଷ୍ମାନ କରି ରଖିବାକୁ ଚାହେଁ, ସେଠାରେ ସେ ଧନ୍ୟା ହୁଏ । ନାରୀ

ସୁନ୍ଦରର ସ୍ୱପ୍ନ ମନ୍ଦ ଗୋଟିଏ ସୀମିତ ବୃତ୍ତରେ ସମ୍ପୂର୍ଣ୍ଣତା ଲାଭ କରିବାର ଚିନ୍ତା ଏକ ସାଧାରଣ ପାରମ୍ପରିକ ଚିନ୍ତା । କିନ୍ତୁ ପ୍ରେମ ଯେଉଁଠାରେ ଅକ୍ଷୟ, ଅମର, ସେଠାରେ ଖଣ୍ଡ ଖଣ୍ଡ ହୋଇ ତରଳିଯାଏ ଅହଂକାର, ଦର୍ପ, ସାଧନାର ଗର୍ବ, ସମ୍ମାନ ସ୍ପୃହା, ଦେହ ମନର ଆକର୍ଷଣ—ସବୁ ତରଳି ଯାଇ ମହାନ ପରି ଏହି ପ୍ରେମର ଶିଖାକୁ ଅଖଣ୍ଡ ଜ୍ୟୋତିରେ ପରିଣତ କରେ । ଏହି ଅନିର୍ବଚନୀୟ ଅବସ୍ଥା ହିଁ ପ୍ରକୃତ ପ୍ରେମର ସ୍ୱାକ୍ଷର ବହନ କରିଥାଏ । କେବଳ ସେତିକି ନୁହେଁ, ଏହି ଅବି-ନାଶୀ ପ୍ରେମ ଭୟ ବିଧ୍ୱଂସୀ, ମନରୁ ଭୟ ଅନ୍ତର୍ହିତ ହୋଇଯାଏ । ସେହି ଜ୍ୟୋତିର୍ମୟ ଶିଖାର ଆଲୋକରେ ହୃଦୟ ଆଲୋକିତ ହୁଏ । ସେହି ଅବିନାଶୀ ପ୍ରେମର ଅଧିକାରିଣୀ ହୋଇଛନ୍ତି ବନଲତା । ଉପେନର ଦେହ, ମନ କିଛି ତାର କାମ୍ୟ ନୁହେଁ; ସେ କେବଳ ତାର ଆତ୍ମାକୁ ଭଲ ପାଇ ବସିଛି । ତାର ପ୍ରେମ ସତେ ସତେ ବି ଅକ୍ଷୟ, ଅବିନାଶୀ । ସଂସାରର ଅନ୍ଧକାର, ଅଳୀକ ପ୍ରବଞ୍ଚନା କେବେ ତାକୁ ସ୍ପର୍ଶ କରିନପାରେ । ଉପନ୍ୟାସର ପରିଣତିରେ ବନଲତାର ପ୍ରେମର ଆଲୋକରେ ଉପେନର ଅନ୍ଧକାରମୟ ପଥ ଆଲୋକିତ ହୋଇଛି ।

"ନୂତନ ପ୍ରଭାତର ଉଦୟ ଲଗ୍ନରେ ଆଗାମୀ ଯୁଗର ସାମ୍ୟ-ମୈତ୍ରୀ ସିଂହାସନ ଉପରେ ମହାମାନବର ଅଭିଷେକ ହେବା ପର୍ଯ୍ୟନ୍ତ.........॥"

ସମ୍ପ୍ରତି ପ୍ରତ୍ୟେକ ସ୍ତରରେ ମଣିଷ ପଶୁଆର ବ୍ୟବସାୟ କରୁଛି । ମାନବିକତାର କଣ୍ଠମାଳରେ ଭୂଷିତ ହୋଇ ବିଂଶ ଶତାବ୍ଦୀର ମଣିଷ ଦେବତ୍ୱର ଅଧିକାରୀ ହେବା ପାଇଁ ପ୍ରୟାସ ପୋଷଣ କରୁନାହିଁ । ଅର୍ଥ-ଗୃଧ୍ନୁ ସାଜି ଦୁନିଆର ପ୍ରାଣପ୍ରାଚୁର୍ଯ୍ୟକୁ ଅପହରଣ କରିନେବାକୁ ଦ୍ୱିଧା ପ୍ରକାଶ କରୁନାହିଁ । ଲେଖକ ଶ୍ରୀଯୁକ୍ତ ନାୟକ ଏହି ଉପନ୍ୟାସର ପ୍ରଧାନ ନାୟକ ଓ ନାୟିକା ବନଲତାକୁ ସମ୍ପୃକ୍ତ ଯୁଗର ପ୍ରତିଭୂ ନ କରି ସେହି ଦୁହିଁଙ୍କ ତୁଣ୍ଡରେ ଏହି ଅବସ୍ଥା ବିଶେଷର କରୁଣ ମାର୍ମିକ ଚିତ୍ର ପ୍ରଦାନ କରିଛନ୍ତି । ଯୁଗ-ଯନ୍ତ୍ରଣାରେ ଜର୍ଜରିତ ବିଂଶ ଶତାବ୍ଦୀର ମଣିଷ କାଳର ଜଡ଼ବାଦୀ, ବସ୍ତୁବାଦୀ ସଭ୍ୟତା ପାଖରେ ହାର ମାନିଛି, ତାହା

ଆବେଦନ ପୂର୍ଣ୍ଣ ଭଙ୍ଗୀରେ ଯେ ବର୍ଣ୍ଣନା କରିଛନ୍ତି । ମଣିଷ ସଭ୍ୟତାର ବିକାଶ ଘଟିଛି । ଯୁଗ ଯୁଗର ପରିବର୍ତ୍ତନ ଘଟିଛି । ମାତ୍ର ମଣିଷ ପ୍ରାଣର ମାଧୁର୍ଯ୍ୟ ଟିକକ ଆଜି ବିନଷ୍ଟ ହୋଇଛି । ଉପେନ କହୁଛି—'ଭଦ୍ର ପରିବାରରେ ଏ କି ନଗ୍ନ ଶଠତା ! ମ୍ଳାନ ଅମ୍ଳାନ, ପାପ ଅପାପ କିଛିର ବାଛ ବିଚାର ନାହିଁ । ଉପେନ୍ଦ୍ର ନିର୍ବୋଧ ଲୋକ ମନେ ମନେ ଭାବିଲା ! ପରମ୍ପରାଗତ ବଂଶର ମର୍ଯ୍ୟାଦା, ଆଉ ବାହାରର ଆଡ଼ମ୍ବର ବଜାୟ ରଖିବା ପାଇଁ ଅଭାବଗ୍ରସ୍ତ ମଧ୍ୟବିତ୍ତ ପରିବାରର ଆଜି କି ନୈତିକ ଅଧଃପତନ । ହଠାତ୍ ଉପେନ୍ଦ୍ରର ମନ ଚାଲି ଉଠିଲା । ସେ ସବୁକିଛିକୁ କ୍ଷମା କରିପାରେ । କିନ୍ତୁ ସାଧାରଣ ଲୋକାଗୃହରେ ଏ କଦର୍ଯ୍ୟ ବେହିଆମିକୁ ନୁହେଁ ।' ଏ କଥା କେବଳ ଉପେନ୍ଦ୍ରର ଭାଷା ନୁହେଁ, ଏହା ଲେଖକଙ୍କ ପ୍ରାଣର ଅଭିବ୍ୟକ୍ତି । ଆଧୁନିକ ସଭ୍ୟତାର ପ୍ରଭାବରେ କ୍ଷତବିକ୍ଷତ ହୋଇଥିବା ନୈତିକ ସଚେତନତା, ପାରମ୍ପରିକ ନ୍ୟାୟ ଅନ୍ୟାୟର ବିଶ୍ୱାସବୋଧର ସ୍ୱରୂପ ଯେ ଆଗାମୀ ବଂଶଧର ପାଇଁ କଣ ହେବ ତାହା ଲେଖକଙ୍କୁ ବ୍ୟଥିତ କରିଛି ।

ଶିଳ୍ପ ସଭ୍ୟତାର ନଗ୍ନ ଓ ଭୟଙ୍କର ରୂପ ଏହି ଉପନ୍ୟାସରେ ଜୀବନ୍ତ ଭାବରେ ପରିବେଷିତ ହୋଇଛି । ସ୍ନେହ, ପ୍ରେମର ପ୍ରତିଦାନରେ ପୁଞ୍ଜି ପତିଙ୍କର ଦୁରନ୍ତ ଲାଳସା ମଣିଷକୁ ପାଗଳ କରିଛି । କେବଳ ସହରୀ ଜୀବନରେ ଶିଳ୍ପ ସଭ୍ୟତାର ପ୍ରଭାବ ଯେ ଲକ୍ଷ୍ୟ କରାଯାଏ ତା ନୁହେଁ; ଗ୍ରାମ୍ୟ ଜୀବନର ସ୍ନେହ, ସେ ସରଳତା, ସେ ମାଧୁର୍ଯ୍ୟ ଆଉ ଉପଲବ୍ଧ ହୁଏ ନାହିଁ । ଏହି ସଭ୍ୟତାର ଯାନ୍ତ୍ରିକତାରେ ପ୍ରଲୁବ୍ଧ ସହରୀ ମଣିଷ ଗ୍ରାମାଞ୍ଚଳର ସମାଜର ମଣିଷକୁ ଯେ କଳୁଷିତ କରୁଛି ଏଥିରେ ସନ୍ଦେହ ନାହିଁ । ଏହା ସହରରୁ ଗ୍ରାମକୁ ପରିବ୍ୟାପ୍ତ ହୋଇଛି, ଉପେନ୍ଦ୍ରର ମାନସିକ ପ୍ରତିକ୍ରିୟା, ଗ୍ରାମ୍ୟ ଜୀବନର ନଷ୍ଟ ହେଉଥିବା ଯାଉଥିବା, ଉଜୁଡ଼ି ଯାଉଥିବା ଗୌରବବୋଧକୁ ନେଇ । ମନେହୁଏ ଲେଖକ ସ୍ୱୟଂ ନାୟକ ଏହି ଉପେନ ଚରିତ୍ର ମାଧ୍ୟମରେ ନିଜକୁ ଅଭିବ୍ୟକ୍ତ କରିଛନ୍ତି । ଲେଖକଙ୍କ ମହାନ ଆଦର୍ଶର ବିଜୟ ବୈଜୟନ୍ତୀ ଉଡାଇଛି ଉପେନ । ଗୋଟିଏ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ଉପନ୍ୟାସଟି

ରଚିତ । ତାହା ହେଉଛି ଦ୍ୱନ୍ଦ୍ୱ, କଳଙ୍କିତ ସମାଜର ସଂସ୍କାର ପ୍ରୟାସ । ତେଣୁ ଲେଖକ ପରିବେଶ ବର୍ଣ୍ଣନାରେ ଅପୂର୍ବ ଭାରସାମ୍ୟ ରକ୍ଷା କରି ଉପନ୍ୟାସଟିକୁ ରସୋତ୍ତୀର୍ଣ୍ଣ କରାଇଛନ୍ତି । ଏହି ଉପନ୍ୟାସଟିରେ ନୈରାଶ୍ୟ, ସଂଘର୍ଷ ଓ ପାରିବାରିକ ଷଡ଼ଯନ୍ତ୍ର ଯେତେ ଉତ୍କଟ ହେଲେ ମଧ୍ୟ ଲେଖକ ସମଗ୍ର ଉପନ୍ୟାସଟିରେ ଏକ ସୁସ୍ଥ, ବଳିଷ୍ଠ ସମାଜ ଗଠନ କରିବାର ପ୍ରୟାସ ଘୋଷଣା କରିଛନ୍ତି । ଜୀବନର ସମସ୍ତ ସହଜ, ସ୍ୱାଭାବିକ ଆନନ୍ଦ ଉଲ୍ଲାସକୁ ଲୁଣ୍ଠନ କରୁଥିବା ଆଧୁନିକ ଶିଳ୍ପସଭ୍ୟତା ଲେଖକଙ୍କ ଅଜସ୍ର ବାକ୍ୟବାଣରେ ଜର୍ଜରିତ ହୋଇଛି । ମୁଖ୍ୟତଃ ଉପନ୍ୟାସଟିରେ ବସ୍ତୁତ-ଗତ ସଂଘର୍ଷର ଚିତ୍ର ପ୍ରଦତ୍ତ ହୋଇଛି ।

ଆଦର୍ଶବାଦୀ ଉପେନ ଜୀବନରେ ବହୁ ଉତ୍ଥାନ ପତନ ଆସିଛି । ମାତ୍ର କେଉଁଠାରେ ହେଲେ ସେ ନିଜ ହୀନତା ନିକଟରେ ମୁଣ୍ଡ ନୁଆଁଇନାହିଁ । ଉପେନ ଚେଟ୍ଟି ନିକଟରେ ମୁଣ୍ଡ ନୁଆଁଇବାର ଆଶଙ୍କାରେ ପାଠକ ଆତଙ୍କିତ ହୋଇଉଠୁଥିବା ବେଳେ ଲେଖକ ଅତି ଚତୁରତାର ସହିତ ଉପେନ ଚରିତ୍ରର ପ୍ରତିଷ୍ଠା କରେଇଛନ୍ତି । ଉପନ୍ୟାସର ଆରମ୍ଭରୁ ଉପେନକୁ ଏକ ମର୍ଯ୍ୟାଦାସମ୍ପନ୍ନ, ସମ୍ଭ୍ରାନ୍ତ ଘରର ଦାୟାଦ ରୂପେ ପାଠକ ଆବିଷ୍କାର କରେ । ମାତ୍ର ଉପନ୍ୟାସର ପରିଶେଷରେ ଉପେନ ସାମ୍ୟବାଦୀ ଚେତନାରେ ଉଦବୁଦ୍ଧ ଏକ ପ୍ରଗତିଶୀଳ ଆଭିମୁଖ୍ୟର ପ୍ରତିନିଧିରୂପେ ପାଠକର ଆଶା ଭରସାର କେନ୍ଦ୍ର ହୋଇଉଠିଛି । ଲେଖକ ସମାଜବାଦରେ ଘୋର ବିଶ୍ୱାସୀ ହୋଇଉଠିଛନ୍ତି । କେବଳ ଉପେନ ନୁହେଁ, ଜନତା, ବନ୍ଧୁ ଦଳ ସୁଶିକ୍ଷିତ, ସଭ୍ୟ, କ୍ଷମତାଧର୍ମାନ୍ଧ ଯୁବଗୋଷ୍ଠୀ ପ୍ରାଣରେ ନବ ଉନ୍ମାଦନାର ଉଚ୍ଛ୍ୱଳ ତରଙ୍ଗ ସୃଷ୍ଟି ହୋଇଛି । ଆଗାମୀ ପ୍ରଭାତର ସୁନେଲି କିରଣରେ ସାମ୍ୟମୈତ୍ରୀର ତେଜସ୍ୱୀ ସୂର୍ଯ୍ୟର ପ୍ରତିଷ୍ଠା ଓ ଆବାହନ ପାଇଁ ଯୁବଗୋଷ୍ଠୀ ଅପେକ୍ଷମାଣ ହୋଇ ରହିଛନ୍ତି ଉପନ୍ୟାସର ଅନ୍ତିମ ଭାଗରେ । ବିଦ୍ରୋହୀ ଯୁବକ ମାନଙ୍କ ତୁଣ୍ଡରେ ବିପ୍ଳବର ମର୍ମସ୍ପର୍ଶୀ ବାଣୀ ତୋଳିଛନ୍ତି ଲେଖକ । ସମାଜର ନାନାବିଧ ଅଧୋଗତିକୁ ଲକ୍ଷ କରି ଉପେନ ପ୍ରାଣ ବ୍ୟଥିତ ହୋଇଉଠିଛି । ଏଠାରେ ପାଠକ ଅନୁଭବ କରେ ଯେ ଉପେନ ନୁହେଁ, ଲେଖକ ନିଜେ ଉପେନ

ଚରିତ୍ର ମାଧ୍ୟମରେ ଆତ୍ମପ୍ରକାଶ କରିଛନ୍ତି । ସମସ୍ତ ସଚେତନ ଲେଖକ ସମସ୍ତର ସହଜ ସିଦ୍ଧ ଚେତନାପ୍ରବାହକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସବୁ ଦୁଃଖ, ଯନ୍ତ୍ରଣା, କ୍ଳାନ୍ତି, ହତାଶା ମଧ୍ୟରେ ଜୀବନର ନୀରବ ମୂର୍ଚ୍ଛନାକୁ କାନପାତି ଶୁଣିଛନ୍ତି । ପରମ ବିଶ୍ୱାସର ଅଗ୍ନିରେ ସେ ତାଙ୍କର ମହତ-ଚେଣିଆକୁ ପ୍ରତିଷ୍ଠା କରେଇଛନ୍ତି ।—"ହୁଇସିଲ ବାଜି ଉଠିଲା । ବୋଧେ ସିଗ୍‌ନାଲ୍ ହେଲା । ଏକସ୍‌ପ୍ରେସର ବେଗ ଧୀରେ ଧୀରେ ବଢ଼ି ଚାଲିଲା । ପୁଣି ସେଇ ଝମ ଝମ ଆୱାଜ । ଏହି ଟ୍ରେନ୍ ଆଜି ସେଇ ଫିଲ୍‌ଟରର ଗତିଶୀଳତା ଭିତରେ ସମସ୍ତର ନିସ୍ତବ୍ଧ ପଦକ୍ଷେପ । ସମସ୍ତ ଏଠି କଥା କହୁଛି । ବେଶ୍ ସ୍ପଷ୍ଟ ତାର କଥା । ଶୁଣିବାର ଉଦ୍ଦୀପନା ଥିଲେ ବେଶ୍ ଶୁଣିହେବ । କିଏ କହେ ସମସ୍ତର ପ୍ରାଣ ନାହିଁ ! ସମସ୍ତ ମୂକ ! ଭୁଲ୍ । ସମସ୍ତଠୁ ବଳି ଆଶ୍ଚର୍ଯ୍ୟ ଅଛି କଣ ? ତାର ଉଦ୍‌ବେଳିତ ତରଙ୍ଗ, ତା ତରଙ୍ଗର ଫେନିଳ ଚୂଡ଼ା, ସେଇ ଚୂଡ଼ା ଶୀର୍ଷରେ ଆବେଦନ କରି କେହି କେବେ ଚାହିଁ ଦେଖିଛି ଶୂନ୍ୟାକାଶକୁ ? କଳ୍ପନାର ଆକାଶ ସେଠୁ କେତେ ପାଖରେ ' ସେମିତି ହାତ ବଢ଼େଇଲେ ତ ଶୂନ୍ୟର ନୀଳିମାକୁ ଛୁଇଁ ହେବ । ନୀଳିମାର ପ୍ରସାରିତ ବହୁଳତା । ତାରି ଭିତରେ ହଜି ଯାଇହେବ । ମେଘଲୋକରେ ମିଶି ବିରାଟ ସେ ଆକାଶରୁ ବିଶାଳ ଏ ପୃଥିବୀକୁ ପର୍ଯ୍ୟବେକ୍ଷଣ କରିହେବ । ଘାତ-ପ୍ରତିଘାତ ଭିତରେ ବି ମନର ଦ୍ୱନ୍ଦ୍ୱ, ପାଏ ଅଭିବ୍ୟକ୍ତି । ନିଜକୁ ବ୍ୟକ୍ତ କରି ବଡ଼ ହୁଏ । ଉପେନ ଭାବିଲା ସେ ବି ବଡ଼ ହୋଇ ଉଠିବ । ଅଶ୍ଚର୍ଯ୍ୟ ଭାବରେ ବଡ଼ ହୋଇ ଉଠିବ ।"—ଲେଖକଙ୍କ ଅନୁଭୂତିବହୁଳ ଜୀବନର ମନୋଜ୍ଞ ବୌଦ୍ଧିକ ପରିପ୍ରକାଶ ।

ସାଧାରଣ ଦୃଷ୍ଟିରେ ମଣିଷ ଯାହା ଦେଖିପାରେନାହିଁ, ଲେଖକର ଅନ୍ତର୍ଦୃଷ୍ଟିରେ ସେହି ସାଧାରଣ ବ୍ୟାପାର ଅସାଧାରଣ ହୋଇ ଉଠେ । ଲେଖକର ଏହି ଦିବ୍ୟଦୃଷ୍ଟି ହିଁ ଜୀବନର ପରମ ସତ୍ୟ ଉଦ୍-ଘାଟନରେ ତାଙ୍କୁ ସାହାଯ୍ୟ କରେ । ଲେଖକ ଘର୍ମ କର୍ମ-ବହୁଳ ଜୀବନରେ ଶ୍ରମିକ, ମଜୁରିଆ, ସାଧାରଣ ଚାକିରିଆ ମାନଙ୍କ ଜୀବନ

ସନ୍ନିତ ଅତି ଅନ୍ତରଙ୍ଗ ଭାବରେ ଚିତ୍ରିତ ହୋଇଛନ୍ତି । ସମ୍ବେଦନଶୀଳ ମନୋଭାବ ନେଇ ସେମାନଙ୍କ ଦୁଃଖ, ଦୈନ୍ୟ ସହିତ ନିଜକୁ ସାମିଲ କରି ଦେଇଛନ୍ତି । ଏମାନଙ୍କର ଦୁଃଖକୁ ଉପଶମ କରିବା ପାଇଁ ସେ ସାଧନାର ପଥ ବାଛି ନେଇଛନ୍ତି । ଲେଖକଙ୍କର ଅବରୁଦ୍ଧ ପ୍ରାଣ ବେଦନା ବିକ୍ଷୁବ୍ଧ ହୋଇଉଠିଛି । ସାମ୍ୟବାଦର ମହାମନ୍ତ୍ରରେ ସେ ଦୀକ୍ଷିତ ହୋଇଛନ୍ତି । ହତାଶ, ନିର୍ଯ୍ୟାତିତ, ଲାଞ୍ଛିତ ମଣିଷପ୍ରାଣରେ ଆଶା ଆଶ୍ୱାସନାର ମଧୁବାଣୀ ବର୍ଷଣ କରିଛନ୍ତି । ଦରିଦ୍ର ହୃଦୟରେ ବିପ୍ଳବର ସଙ୍କେତ ସେ ଦେଇଛନ୍ତି । ନିଜକୁ ପ୍ରକାଶ କରିବା ପାଇଁ ଉପେନର ଯେଉଁ ସାଧନା, ସେ ସାଧନା ଉପେନର ନୁହେଁ, ଲେଖକଙ୍କର । ତା'ପାଇଁ କର୍ମ ହିଁ ନିର୍ବାଣ । ସାଧନାର ବନ୍ଧୁର ପଥରେ ସତ୍ୟର ଚିରନ୍ତନ ପରିପ୍ରକାଶକୁ ସେ ଅସ୍ୱୀକାର କରିନାହାନ୍ତି । ବରଂ କର୍ତ୍ତବ୍ୟବୋଧ, ନିଷ୍ଠା, ସାଧନା ଦ୍ୱାରା ଏକ ସତ୍ୟର ପ୍ରତିଷ୍ଠା ପାଇଁ ସେ ବଦ୍ଧପରିକର ହୋଇଛନ୍ତି । କେବଳ ଆଦର୍ଶ ହିଁ ଜୀବନର ବଡ଼କଥା ନୁହେଁ । ଜୀବନର ସ୍ୱାଭାବିକ ଗତି ମଧ୍ୟଦେଇ ଆଦର୍ଶକୁ ପ୍ରତିଷ୍ଠା କରିବା ହିଁ ବଡ଼ କଥା, ଯାହା ଉପେନ ଜୀବନରେ ଘଟିଛି । ଏଥିପାଇଁ ତାକୁ କମ୍ ତ୍ୟାଗ ବରଣ କରିବାକୁ ପଡ଼ିନାହିଁ ! ପରିବାରର ସମସ୍ତ ଶୁଭକାମନା, ଶ୍ରଦ୍ଧା ତା ପାଇଁ ମହାର୍ଘ ହୋଇଉଠିଛି । ସତ୍ୟ, ଉଚ୍ଚଶିକ୍ଷିତ ଯୁବକ ପାଇଁ ବଞ୍ଚିବାର ଦାନା ଗଣ୍ଡାକ ମଧ୍ୟ ଯୋଗାଡ଼ କରିବା କଷ୍ଟସାଧ୍ୟ ହୋଇ ଉଠିଛି । ସମାଜରେ ଚରିତ୍ରହୀନ ଭାବରେ ସେ ଲାଞ୍ଛିତ ହୋଇଛି । ଅନ୍ୟମାନଙ୍କର ଘୃଣା, କ୍ରୂର ଚକ୍ରାନ୍ତର ଶରବ୍ୟ ହୋଇଛି । ଏତେ ସବୁ ପ୍ରତିକୂଳ ପରିବେଶ ମଧ୍ୟରେ ତାର ସାଧନାର ଜୟଯାତ୍ରା ବ୍ୟାହତ ହୋଇନାହିଁ ! ସେ ଆଗେଇ ଯାଇଛି ଜଣେ ନିର୍ଭୀକ ସୈନିକ ପରି । ପଛରେ ସମସ୍ତ ଆବର୍ଜନା ପଡ଼ିରହିଛି । "ଉପେନ କହୁଥିଲା ବେଳେ ଘର ଭିତରେ ଓ ବାହାରେ ଯେପରି ଗୋଟିଏ ଐନ୍ଦ୍ରଜାଳିକ ପ୍ରଭାବର ଅଦ୍ଭୁତ ଶକ୍ତି ପ୍ରାଣବନ୍ତ ହୋଇ କଥା କହୁଥିଲା, ଛୁଇଁଥିଲା ସମସ୍ତଙ୍କୁ ପ୍ରତ୍ୟକ୍ଷ ଭାବରେ, ଆଉ ସମସ୍ତଙ୍କୁ ଅଭିଭୂତ କରି ଦେଉଥିଲା ଏକ ମାନବିକ ସମ୍ଭ୍ରମତାର ଉଦାର ଅନୁପ୍ରେରଣାରେ । ସେ ଅନୁପ୍ରେରଣାର ଉଚ୍ଛ୍ୱାସ ସବୁଠୁ ବେଶି

ଉଠିଥିଲା ଅଭଦ୍ରୋଚିତ ରମଣୀବାବୁଙ୍କ ମନରେ । ଉପେନ୍ଦ୍ରର କଥା ଶୁଣୁ ଶୁଣୁ ସେ ଭାବୁଥିଲେ ଏ ଯୁବକ କିଏ ଚରିତ୍ରହୀନ ?" ଉପେନ ଚରିତ୍ରର ଏକ ଆଲୋକମୟ ଦିଗନ୍ତ ଅବସ୍ଥିତ ହୋଇଛି ଏଇ କେଇପଦ ଭିତରେ ।

ସାମ୍ପ୍ରତିକ ସମାଜର ଏକ ସମ୍ପୂର୍ଣ୍ଣ ଚିତ୍ର ପ୍ରଦାନ କରିଛନ୍ତି ଲେଖକ । କଣାର୍କରେ, ଚନ୍ଦ୍ରର ବର୍ଣ୍ଣର ସୂକ୍ଷ୍ମ ମଧ୍ୟରେ ଯେପରି ପଥରର ପ୍ରକୃତ ପରିଚୟ ମିଳିଥାଏ, ସେହିପରି ବିଭିନ୍ନ ଘଟଣା ଓ ଅବକାଶରେ ଲେଖକ ସମାଜର ନଗ୍ନ ଚିତ୍ର ପ୍ରଦାନ କରିଛନ୍ତି । ଉପନ୍ୟାସ ଆରମ୍ଭରୁ ଗ୍ରାମ୍ୟଜୀବନର କରୁଣ ହୃଦୟସ୍ପର୍ଶୀ ଦୈନ୍ୟ ପାଠକକୁ ଅଭିଭୂତ କରିଥାଏ । ସମୟ ପରିଣତି ସମୟରେ ଲେଖକ ଗ୍ରାମ୍ୟ ଜୀବନ ଉପରେ ସଭ୍ୟତାର ଛାପ ଦେଖାଇ ସହରୀ ସଭ୍ୟତାର ଅବିକଳ ରୂପ ପ୍ରଦାନ କରିବାରେ ପ୍ରୟାସୀ ହୋଇଛନ୍ତି । ମାଧବୀ, ମଧୁ ପଧାନ, ପୋଷ୍ଟପିଅନ, କୃଷ୍ଣ ଜେନା, ପରମାନନ୍ଦ, ଅଧିକାରୀ, ବୁଢ଼ୀମା, ନେଡ଼ ଷଣ୍ଢୀ, ବ୍ରଜ, ବନଚା, ରମଣୀ ବାବୁ, ନନ୍ଦକିଶୋର ବାବୁ, ମିଷ୍ଟର ମହାନ୍ତି, ମି. ବଟ୍ଟାଲ, ନିଶାକର ବାବୁ, ମିସେସ୍ ଦେବ, ବିଶୁବାବୁ, ଶମ୍ଭୁନାଥ, ଜଗତ, ବଲ୍ଲୁଦାସ, ରାମପ୍ରସାଦବାବୁ, ନିରଞ୍ଜନ, ପ୍ରତିମା, ସୁଧାକର ବାବୁ, ହାଡ଼ି-ବନ୍ଧୁ, କାଶୀନାଥ, ହରି, ରଙ୍କନାଥ ବାବୁ ପ୍ରଭୃତି ଅନେକ ଚରିତ୍ର ସୃଷ୍ଟି କରି ଜୀବନର ବୈଚିତ୍ର୍ୟ ପ୍ରତିପାଦନ କରିଛନ୍ତି । ଉପନ୍ୟାସର ମୁଖ୍ୟଚରିତ୍ର ଉପେନ । ବନଚା, ମାଧବୀ, ବ୍ରଜ ଏହି ତିନୋଟି ଚରିତ୍ର ସହଯୋଗୀ ଚରିତ୍ର ଭାବରେ ଉପେନ ଚରିତ୍ରର ବୈଶିଷ୍ଟ୍ୟ ପ୍ରଦର୍ଶନରେ ସହାୟକ ହୋଇଛନ୍ତି । ମାଧବୀକୁ ଲେଖକ ଆଦର୍ଶର ପ୍ରତିନିଧି ଭାବରେ ଚିତ୍ରଣ କରିବା ସ୍ଥଳେ ବନଚାକୁ ଏକ ଅତ୍ୟାଧୁନିକା, ପ୍ରତିଭାମୟୀ, ତେଜ-ସ୍ୱିନୀ ନାରୀ ଭୂମିକାରେ ଅବତୀର୍ଣ୍ଣ କରାଇଛନ୍ତି । ବନଚା ସାଧାରଣ ନାରୀଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ । ସମାଜ, ରାଜନୀତି, ଅର୍ଥନୀତି, ନୀତି ଆଦର୍ଶ ପ୍ରଭୃତି ବିଭିନ୍ନ ଚିନ୍ତାଧାରା ଉପରେ ତାର ସୁନିର୍ଦ୍ଦିଷ୍ଟ ଧାରଣା । ସେ ସ୍ୱାଧୀନ ଭାବରେ ନିଜର ମତ ବ୍ୟକ୍ତ କରିପାରେ । ବ୍ୟକ୍ତିର ବଳିଷ୍ଠତା, ସିଦ୍ଧାନ୍ତ ଗ୍ରହଣରେ ଯଥେଷ୍ଟ ବିଚାର ବୁଦ୍ଧିର ପ୍ରୟୋଗ ଦ୍ୱାରା

ସେ ନିଜକୁ ଜଣେ ପ୍ରଗତିଶୀଳା ମହିଳା ରୂପେ ପ୍ରତିପାଦନ କରିପାରିଛି । ଜୀବନ, ପ୍ରେମ, ତ୍ୟାଗ ପ୍ରଭୃତି ସମ୍ପର୍କରେ ତାର ସ୍ୱତନ୍ତ୍ର ଧାରଣା । କାହାଦ୍ୱାରା ପ୍ରଭାବିତ ହେବାଭଳି ବା ପରିବେଶ, ପରିସ୍ଥିତି ପ୍ରଭାବରେ ହାରମାନି ଯିବା ଭଳି ବ୍ୟକ୍ତିତ୍ୱ ତାର ନୁହେଁ । ନାରୀତ୍ୱର ଏକ ପ୍ରତିଭା-ଦୀପ୍ତ, ମହିମାମୟୀ ପରିପ୍ରକାଶ ହେଉଛି ବନିତା । ମାଧବୀ ଚରିତ୍ରର ଚିତ୍ରଣ ଦ୍ୱାରା ଲେଖକ ମାଧବୀ ଭଳି ଅସଂଖ୍ୟ ଅସହାୟା, ଅଶିକ୍ଷିତା ନାରୀମାନଙ୍କ ଜୀବନରେ ଘୋଟି ଆସୁଥିବା ଦୁର୍ଯୋଗ ସମ୍ପର୍କରେ ସୂଚନା ଦେଇଛନ୍ତି । ଏହି ଅସଂଖ୍ୟ ନାରୀ, ସମାଜ ଦ୍ୱାରା ପ୍ରତାରିତ ହୋଇଥାନ୍ତି । ପରିବେଶ ଓ ପରିସ୍ଥିତି ପାଖରେ ମୁଣ୍ଡ ନୁଆଁଇ ନିଜକୁ ତିଳ ତିଳ କରି ବଳି ଦେଇ-ଥାନ୍ତି । ସେମାନଙ୍କ ଜୀବନର କରୁଣ ପରିଣତିକୁ ଇତିହାସ ଲିପିବଦ୍ଧ କରି ରଖେ ନାହିଁ । ଦେଶ ଜାତି ଏମାନଙ୍କୁ ଗୌରବର ଟୀକା ପିନ୍ଧାଇ ଦିଅନ୍ତି ନାହିଁ । ଜୀବିତ ଅବସ୍ଥାରେ ଘୃଣା, ବିତୃଷ୍ଣା, ଅନାଦର ଓ ମୃତ୍ୟୁ ପରେ ନିନ୍ଦା ଅପବାଦକୁ ପାଥେୟ କରି ନୀରବରେ ଏହି ସଂସାରରୁ ଅପସରି ଯାଆନ୍ତି ଏମାନେ । ଯେଉଁମାନେ ଏହି ଅସହାୟା ସରଳା ନାରୀମାନଙ୍କୁ ପ୍ରତାରଣାରେ ବଶୀଭୂତ କରି ସେମାନଙ୍କର ସର୍ବନାଶ କରିଥାନ୍ତି ସେମାନଙ୍କୁ ସମାଜ ହସି ହସି କ୍ଷମାଦିଏ ।

କିନ୍ତୁ ଲେଖକ ଏଠାରେ କ୍ଷମା ଦେଇପାରି ନାହାନ୍ତି ସେହି ଭ୍ରଷ୍ଟାଚାରୀମାନଙ୍କୁ । ଏହି ଚାପାଲୁସି ମାନଙ୍କର ସ୍ୱରୂପକୁ ଆବିଷ୍କାର କରି ଲୋକଲୋଚନକୁ ଆଣିବାକୁ ସେ ସଚେଷ୍ଟ ହୋଇଛନ୍ତି । ଏହି ଉପନ୍ୟାସର ପ୍ରତ୍ୟେକଟି ଗୌଣ ଚରିତ୍ର ମଧ୍ୟ ଲେଖକଙ୍କର ନିର୍ଦ୍ଦିଷ୍ଟ ଆଦର୍ଶକୁ ପ୍ରକାଶ କରିବାରେ ସହାୟକ ହୋଇଛନ୍ତି । ସମାଜର ପ୍ରତ୍ୟେକ କ୍ଷେତ୍ରରେ ଦେଖାଦେଇଥିବା ଅଧୋଗତିକୁ ସେ ବିଭିନ୍ନ ଚରିତ୍ରମାନଙ୍କ ମାଧ୍ୟମରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ମୂଳ କଥାବସ୍ତୁ ସହିତ ପ୍ରତ୍ୟେକଟି ଉପକଥାକୁ କୌଶଳପୂର୍ଣ୍ଣ ଭାବରେ ସାମଞ୍ଜସ୍ୟ ରକ୍ଷାକରି ଆଗେଇ ନେଇଛନ୍ତି । କେଉଁଠାରେ ହେଲେ ଏମାନେ କଥାବସ୍ତୁର ଗତି ପ୍ରବାହ-ମାନତାରେ ବାଧା ସୃଷ୍ଟି କରିନାହାନ୍ତି ।

ଉପନ୍ୟାସଟିର ଭାଷା କେତେକ ସମୟରେ ଅତି ସାଧାରଣ ଭାଷା ଠାରୁ ବୈଶିଷ୍ଟ୍ୟହୀନ ମନେ ହୋଇଥାଏ । ମାତ୍ର ଆଜ୍ କେଉଁଠାରେ, କେଉଁଠାରେ ଲେଖକଙ୍କ ଭାଷା ବେଶ୍ ବାଙ୍ମୟ ହୋଇଉଠିଛି । ଭାଷା ଭାବ ପ୍ରକାଶରେ ପ୍ରତିବନ୍ଧକ ହୋଇନାହିଁ । ସ୍ଥଳ ବିଶେଷରେ ସେ ଲୌକିକ ଭାଷାର ପ୍ରୟୋଗ କରିଛନ୍ତି କେବଳ ସାହିତ୍ୟୋପଯୋଗୀ କରିବା ପାଇଁ । ଏପରି କ୍ଷେତ୍ରରେ ଉପନ୍ୟାସର କଥାବସ୍ତୁର ଅଗ୍ରଗତି ସ୍ୱାଭାବିକ ହୋଇଉଠିଛି । ଲୌକିକ ଭାଷା ପ୍ରୟୋଗ ଦ୍ୱାରା ପାଠକ ନିକଟରେ ଲେଖକ ନିଜକୁ ଅକପଟ ଭାବରେ ପ୍ରକାଶ କରିପାରିଛନ୍ତି । ଉପନ୍ୟାସର ଚମତ୍କପ୍ରଦ ଅଧ୍ୟାୟମାନଙ୍କରେ ଲେଖକ ଉଚ୍ଚକୋଟୀର ଭାଷା ବିନ୍ୟାସ ରୀତିକୁ ଅବଲମ୍ବନ କରିଛନ୍ତି—"ସୁଖ ପାଇବାଟାକୁ ମୁହଁ ଖୋଲି ବିଜ୍ଞାପିତ କରିବାକୁ ପଡ଼ ନାହିଁ କାହାକୁ କାହା ପାଖରେ । ରାତି ପରରେ ଉଚ୍ଛ୍ୱସିତ ପ୍ରଣୟ ନିବେଦନର ହାସ୍ୟକର ଦୁରବସ୍ଥା ଘଟିଛି ସେମାନଙ୍କ ଜୀବନରେ । କହିବନି କେହି କାହାକୁ, କିପରି ଏକାନ୍ତ ଭାବେ ଚିନ୍ତା କରି ସୁଖ ପାଏ, ସୁଖ ସ୍ୱପ୍ନ ଦେଖେ ରାତିର ନିଃସୁପ୍ତିରେ । କହିବା କି ଦରକାର ? ଯେତେବେଳେ ଘରଆଗ୍ରେ ବଣର ଆଲୁଅ ଝଲସି ଉଠିଛି, ସେତେବେଳେ ବାହାରକୁ ଯାଇ ଆକାଶରେ ସୂର୍ଯ୍ୟ ଉଠିଛି କି ନାହିଁ, ଦେଖି କି ଲଭ ? ଫଗୁଣ ଯେତେବେଳେ ଆସିଛି, ଦକ୍ଷିଣରୁ ବହିଛି ବସନ୍ତର ସୁଗନ୍ଧି ମଳୟ, ଯେତେବେଳେ ବନ ପ୍ରାନ୍ତର ଶ୍ୟାମଳତ ହୋଇଉଠିଛି, ସବୁଜାସ୍ନିତ ଟେନ୍ଥ ପଲ୍ଲବରେ ଜାଗିଛି ଶିହରଣ, ଶାଖା ପ୍ରଶାଖାରେ କୁସୁମିତ ହୋଇଉଠିଛି ଫୁଲର ସ୍ତବକ । କିଏ ଭଲା ସୃଷ୍ଟିର ଏଇ ବିକାଶ ଧର୍ମ କଥା ନ ଜାଣେ ? ତରଳ, ଛଳ ଛଳ ରୁପେଲି ଜ୍ୟୋତ୍ସ୍ନାରାତିରେ, ଆକାଶରେ ଚନ୍ଦ୍ରୋଦୟର ନିର୍ମଳ ସୁଚିତ୍ରସିଦ୍ଧ ପରି ସେମାନଙ୍କ ଭିତରେ ପ୍ରେମର ଅଭ୍ୟୁଦୟ ଅବଶ୍ୟମ୍ଭାବୀ । କଣ ହେବ କଥା କହି ? କଣ ହବ କଥାରେ କଥାରେ ପରୀକ୍ଷାକରି ? ସମସ୍ତ ଆକାଶ ବିତ୍ରାସ ଯାହା କହୁଛି ତାକୁ ଆଉରି ବ୍ୟାପକ ଭାଷାରେ ବ୍ୟକ୍ତ କରିବାରେ କି ପ୍ରୟୋଜନ ! !"

ସାମ୍ପ୍ରତିକ ଉପନ୍ୟାସରେ ଦେଖା ଦେଇଥିବା ନୂତନ ଚିନ୍ତା ଓ ଚେତନାର ପରୀକ୍ଷା ନିରୀକ୍ଷା ଏଥିରେ ହୋଇନାହିଁ କହିଲେ ଚଳେ; କିନ୍ତୁ

ଯବବନ୍ଧା ଉପନ୍ୟାସର ଏହା ବ୍ୟତିକ୍ରମ ଏଥିରେ ସନ୍ଦେହ ନାହିଁ । ଏହି ଉପନ୍ୟାସର ପ୍ରେମ ମୁଖ୍ୟତଃ ଦେହଜ ନୁହେଁ, ଦେହାତୀତ । ପ୍ଲିଟୋନିକ୍ ଦର୍ଶନର ପ୍ରଭାବ ଏଥିରେ ସ୍ପଷ୍ଟ ଭାବରେ ଅନୁଭୂତ ହୋଇଥାଏ । ବଞ୍ଚିବା ପାଇଁ ମଣିଷର ସଂଗ୍ରାମ ଯୁଗ ଯୁଗର । ମାତ୍ର ଭିନ୍ନ ଭିନ୍ନ ସମୟରେ ଏହାର ସ୍ୱରୂପ ପରିବର୍ତ୍ତିତ ହୋଇଛି । କିନ୍ତୁ ମଣିଷର ମୌଳିକ ଆବଶ୍ୟକତାକୁ ଏଡ଼େଇଯିବା ସହଜ କଥା ନୁହେଁ । ମଣିଷର ମୌଳିକ ଦାବୀକୁ ସାବ୍ୟସ୍ତ କରିବା ପାଇଁ ଅନେକ କ୍ଷେତ୍ରରେ ନୈତିକତାକୁ ହତ୍ୟା କରିବାକୁ ପଡ଼ିଥାଏ । ମାତ୍ର ଏହି ଉପନ୍ୟାସରେ ଲେଖକ ଏକ ନୈତିକ ପରିବେଶ ସୃଷ୍ଟି କରି ଏହି ଦାବୀକୁ ଆଦର୍ଶ ଭିତ୍ତିକ କରି ଗଢ଼ି ତୋଳିଛନ୍ତି ।

'ହା'ରେ ଦୁର୍ଭାଗା ଦେଶ' ନାମକରଣରୁ ହିଁ ଲେଖକଙ୍କର ସ୍ୱଦେଶ ପ୍ରୀତିର ପରିଚୟ ମିଳିଥାଏ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଲେଖକ ଓଡ଼ିଆ ଜାତି ଓ ଓଡ଼ିଶାକୁ ଭିତ୍ତି ରୂପେ ଗ୍ରହଣ କରିଛନ୍ତି । ଓଡ଼ିଆ ଜାତିର ଅଧୋଗତିକୁ ଲକ୍ଷ୍ୟକରି, ଓଡ଼ିଶାର ଦୁର୍ଦ୍ଦଶାକୁ ନିଜ ହୃଦୟରେ ହୃଦୟଙ୍ଗମ କରି ସେ ବ୍ୟଥିତ ହୋଇ ପଡ଼ିଛନ୍ତି । ଯେଉଁ ଓଡ଼ିଆ ସମଗ୍ର ଭାରତୀୟମାନଙ୍କ ମଧ୍ୟରେ ସ୍ୱାଧୀନଚେତା ଯୋଦ୍ଧା, ଆଦର୍ଶ ବୀରରୂପେ ସମ୍ମାନିତ ହେଉଥିଲା, ସେ ଜାତି ଆଜି ନିଷ୍ପ୍ରାଣ, ଜଡ଼ ତୁଲ୍ୟ । ପ୍ରାଚୀନ ଗୌରବ ଗାଥାକୁ ନାନା ଆଳରେ ସ୍ମରଣ କରିଛନ୍ତି ଓ ବ୍ୟାକୁଳ ଭାବରେ ଓଡ଼ିଆ ଜାତିର ମାନ ମର୍ଯ୍ୟାଦାର ସୁରକ୍ଷା ପାଇଁ ସେ ପାଠକ ମାନଙ୍କ ନିକଟରେ ଆତ୍ମପ୍ରକାଶ କରି ଅନୁରୋଧ କରିଛନ୍ତି । କେତେକ ସ୍ଥଳରେ ଓଡ଼ିଶାର ଦୁର୍ଗତିକୁ ଲକ୍ଷ୍ୟକରି ସେ ବ୍ୟଙ୍ଗ କରିଛନ୍ତି । "ହୋ ହୋ କରି ହସିଉଠିଲା ଉପେନ—କହିଲା—ତା ହେଲେ ଏ ନରକ ଓଡ଼ିଆ ଜାତିକୁ ଚଣ୍ଡାଳ ପରିବର୍ତ୍ତରେ ଅନ୍ତତଃ ଚାମ୍ଭାର ଯୋଗାଇ ବଞ୍ଚାଇବା ପାଇଁ ଦେଶର ବଡ଼ ବଡ଼ଆଙ୍କ ଉଦ୍ଦେଶ୍ୟରେ ଦୈନିକ କାଗଜରେ ଗୋଟାଏ ବିବୃତି ଦିଏ ମୁଁ !" ଶ୍ରୀ ଜଗନ୍ନାଥ ସଂସ୍କୃତିର ମହାନ ପରମ୍ପରା ଓଡ଼ିଆ ଜାତିର ବୈଭବ । ତାର ତାତ୍ପର୍ଯ୍ୟର ପରିଚୟ । ସ୍ନେହ, ମୈତ୍ରୀ, କରୁଣାର ସ୍ୱାକ୍ଷର । କିନ୍ତୁ ଏତେବଡ଼ ପରମ୍ପରାର ଅଧିକାରୀ ହୋଇମଧ୍ୟ ଆଜି ଓଡ଼ିଆ ନରକ, ବୁଭୁକ୍ଷୁ ସାଜିଛି । ଓଡ଼ିଆ ଜାତିର ଦୁର୍ଦ୍ଦଶା ଦେଖି ଲେଖକଙ୍କ ପ୍ରାଣରେ ଗଭୀର ବ୍ୟଥା ସୃଷ୍ଟି ହୋଇଛି । "ଅନ୍ତ୍ୟଜ ଦୃଷ୍ଟିରେ

କହୁଛନ୍ତି ସେମାନଙ୍କୁ ଅନେଇ ରହି ଉପେନ ଧୀରେ ଧୀରେ ଚାଲିଲା ମନ୍ଦିର ଅଡ଼େ । ଗରୁଡ଼ ସ୍ତମ୍ଭ ପାଖରେ ଛିଡ଼ା ହୋଇ ଅନେଇଲା.......... ବିରାଟ ମନ୍ଦିର ଠିଆ ହୋଇଛି ଊର୍ଦ୍ଧ୍ୱ ଆକାଶକୁ ମଥା ଟେକି । ନୀଳଚକ୍ର ଉପରେ ଉଡ଼ୁଛି ପତିତପାବନ ବାନା ଫର ଫର ହୋଇ । ମନ୍ଦିର ଭିତରେ ବଡ଼ ଠାକୁର । ଚାଲିଛନ୍ତି ଅସୁମାରି ଲୋକ ଠାକୁରଙ୍କ ଦର୍ଶନ ପାଇଁ । ଉପେନ ବି ଠିକ୍ କରି ଆସିଥିଲା ଚକାଡ଼ୋଳାଙ୍କ ଚରଣରେ ମୁଣ୍ଡିଆଟିଏ ମାରିବ । କିନ୍ତୁ କାହିଁକି କେଜାଣି ଗରୁଡ଼ ସ୍ତମ୍ଭ ଡେଇଁ ଭିତରକୁ ଯିବା ପାଇଁ ତା ମନ ହେଲା ନାହିଁ । ବଡ଼ ଦାଣ୍ଡ ଉପରେ ଛିଡ଼ା ହୋଇ ସେ ଭାବିଚାଲିଲା—ମନ୍ଦିର ବାହାରେ କାଙ୍ଗାଳମାନଙ୍କ ଆର୍ତ୍ତନାଦ—ଭିତରେ ଆର୍ତ୍ତତ୍ରାଣଙ୍କର ଆରାଧନା ! ବାହାରେ କଙ୍କାଳ-ସାର ଦୀନଦୁଃଖୀଙ୍କର ଚେଜଗିଆ—ଭିତରେ ଦୀନବନ୍ଧୁଙ୍କ ପାଦତଳେ ଧର୍ମ-ବାଦଶାଙ୍କର ପୂଜାର ଖୀରି ଝେଟୁଡ଼ ସ୍ରୋତ । ବାହାରେ ହଜାର ହଜାର ନିରନ୍ନ ମୁମୂର୍ଷୁଙ୍କର ମୃତ୍ୟୁମୁଖୀ ଦୀର୍ଘଶ୍ୱାସ, ଭିତରେ ନିରଞ୍ଜନ ମହାପ୍ରଭୁଙ୍କର ଧୂପ-ଦୀପ-ଆରତି-ଅର୍ଚ୍ଚନା !' ପ୍ରଭୁଙ୍କର କି ଅପାର ମହିମା ! କି ଅଦ୍ଭୁତ ଲୀଳା !”

ଗ୍ରନ୍ଥଟିର ନାମ କରଣରୁ ଉପନ୍ୟାସଟିର ବିଶେଷତ୍ୱ ଜଣାପଡ଼େ ନାହିଁ । ସମଗ୍ର ଦେଶର ଜଟିଳ ସମସ୍ୟାକୁ ନେଇ ଉପନ୍ୟାସଟି ଯେ ରଚିତ ହୋଇଛି ତାହା କେବଳ ନାମକରଣରୁ ସ୍ପଷ୍ଟ ପ୍ରତିପାଦିତ ହୋଇଥାଏ ।

ଅଭାବ, ଅନଟନ, ଦୁଃଖ, ଶୋକ, କ୍ଲିଷ୍ଟ ମର୍ତ୍ତ୍ୟର ଅଶ୍ରୁଳ ଜୀବନ ଚିତ୍ର ଦେବାରେ ହିଁ ଲକ୍ଷ୍ମୀଧର ନାୟକଙ୍କ ଗୌରବ ନିହିତ । କଳା ସୃଷ୍ଟିର ଦୁଇଟି ପ୍ରଧାନ ଲକ୍ଷ୍ୟ ମଧ୍ୟରୁ ମାନବ ଜାତିର କଲ୍ୟାଣ ପାଇଁ କଳା ସୃଷ୍ଟିକୁ ସେ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ସାମ୍ୟ—ମୈତ୍ରୀ ଓ ପ୍ରୀତିର ଭିତ୍ତିରେ ପ୍ରତିଷ୍ଠିତ ଏକ ସୁସ୍ଥ ସମାଜର ସ୍ୱପ୍ନ ସେ ଦେଖି-ଛନ୍ତି । ତାଙ୍କ କଳା ସୃଷ୍ଟିର ଚରମ ଲକ୍ଷ୍ୟ ହେଉଛି ମର୍ତ୍ତ୍ୟ ପାଇଁ ଯାହା ଶୁଭଙ୍କର, କଲ୍ୟାଣକର, ଯାହା ସତ୍ୟ, ସୁନ୍ଦର, ତାର ରୂପାୟନ

କରିବା । ସତ୍ୟ-ଶିବ-ସୁନ୍ଦରର ଉପାସକ ଲକ୍ଷ୍ମୀଧର ମଣିଷ ଜାତିର କଲ୍ୟାଣ ପାଇଁ, ସତ୍ୟର ପ୍ରତିଷ୍ଠା ପାଇଁ ତାଙ୍କ ଲେଖନୀକୁ ସଚଳ କରି ରଖିଛନ୍ତି । ମାନବ ଜାତିର ଶ୍ରୀ ସମୃଦ୍ଧି ପାଇଁ ତାଙ୍କର ଅଭୀପ୍ସା ତାଙ୍କ ସାହିତ୍ୟର ସର୍ବଶ୍ରେଷ୍ଠ ପରିଚୟ । ଲେଖକଙ୍କ ପ୍ରାଣ ସ୍ପନ୍ଦନରେ ସ୍ପନ୍ଦିତ ହୋଇ ଉଠିଛି 'ଦ୍ୱାରେ ଦୁର୍ଗା ଦେଶ' ।



ଅଧ୍ୟାପିକା,
ଶୈଳବାଳା ମହିଳା ମହାବିଦ୍ୟାଳୟ
କଟକ ।

## "ଖୋଲା ଝରକାରୁ ଜୀବନ ମନ୍ଦିର : କିଛି ଦୃଶ୍ୟ କିଛି ଶ୍ରୁତ ।"



ପ୍ରକାଶ କୁମାର ପରିଡ଼ା

### ସିଂହଦ୍ୱାର : ସୂଚନା

ଖୋଲା ଝରକାରୁ ଦୃଶ୍ୟମାନ ଜୀବନ ମନ୍ଦିରକୁ ଆମେ ପର୍ଯ୍ୟାୟକ୍ରମେ ଦେଖିବା । ସେସବୁ ତେଣୁ ଗୋଟିଏ ମନ୍ଦିରକୁ ଦେଖିବା ଭଳି ହେବ ଯଥାକ୍ରମିକ ଓ ଆନ୍ତରିକ । କ୍ରମ ଗୁଡ଼ିକ ହେଲା ଶୁଭସ୍ତମ୍ଭ ଓରଫ୍ ପ୍ରଚ୍ଛଦ, ନାନ୍ଦୀମୁଖ ଓରଫ ଅଗ୍ର କାବ୍ୟ ଓରଫ୍ ନାମକରଣ, ବାଇଶି ପାହାଚ ଓରଫ ସୂଚୀପତ୍ର, ନାଟ୍ୟମଣ୍ଡପ ଓରଫ୍ ଉତ୍ସର୍ଗ, ବଗିଚା ଓରଫ୍ କବିତାବଳୀ, ନୈବେଦ୍ୟ ଓରଫ୍ ଆଲୋଚକ ଦୃଷ୍ଟି ଓ ଦକ୍ଷିଣା ଓରଫ୍ ଉପସଂହାର ।

ଆମେ ଅଦୌ କବି ଶ୍ରୀ ନାୟକଙ୍କୁ ଭେଟିବା ନାହିଁ, ମାତ୍ର ବେଳେ ବେଳେ ଶ୍ରୀ ନାୟକ କବିମାନସକୁ ଅବଶ୍ୟ ଭେଟିପିବା ।

ବର୍ତ୍ତମାନ ମନ୍ଦିର ପରିକ୍ରମାରେ ବହିର୍ଗତ ହେବା ।

### ଶୁଭସ୍ତମ୍ଭ : ପ୍ରଚ୍ଛଦ

'ଖୋଲା ଝରକା' କବିତା ସଂକଳନର ପ୍ରଚ୍ଛଦପଟ୍ଟ ସୂଚନା-ଧର୍ମୀ । ଏହା ହିଁ ଏହାର ବୈଶିଷ୍ଟ୍ୟ । ଏହାର ରଙ୍ଗବିନ୍ୟାସ ନିରାଡ଼ମ୍ବର, ମାତ୍ର

ସଟଅସ୍ତ୍ର ଘଟବାଦୀଟକ । ଇନ୍ଦ୍ରର କୃଷ୍ଣ, ଇଷତ୍ ସବୁଜ ରଙ୍ଗର ମିଶ୍ରଣ ଅନ୍ଧକାର ପ୍ରତୀକ । ସେହି ଅନ୍ଧକାର ମଧ୍ୟରୁ ଏକ ଅସ୍ପଷ୍ଟ ମୂର୍ତ୍ତି ପ୍ରତିଭାତ । ଗୋଟିଏ ଉନ୍ମୁକ୍ତ ବାତାୟନର ରେଖାଙ୍କନ, ସେ ମୂର୍ତ୍ତିର ସାମନାରେ । ବସ୍ତୁତଃ ଖୋଲା ଝରକାଟିଏ ଦେଇ ଅନ୍ଧକାର ଭିତରୁ ଆଲୋକକୁ ଚାହିଁଥିବା ମୂର୍ତ୍ତିର ଛବିଟିଏ ପ୍ରଚ୍ଛଦରେ ଅଙ୍କିତ । ଛବିର ଆଖି ଦୁଇଟି ଅଧିକ ସୂଚନାଧର୍ମୀ । ଗୋଟିଏ ଆଖିରେ ପ୍ରେମ ଓ ମୃଦୁଭାବକତାର ପ୍ରଶାନ୍ତି, ଅନ୍ୟ ଆଖିଟିରେ ବିପ୍ଳବର ଶିଖା । ଏଥିରୁ କବିମାନସର ପ୍ରେମ ଓ ବିପ୍ଳବର ଚିନ୍ତାଧାରା ପ୍ରକଟିତ । ବିପ୍ଳବର ହେଲେ ବି ତାହା ଯେ ଏକ ଶାନ୍ତି, ସୌହାର୍ଦ୍ଦ୍ୟ ଓ ସମୃଦ୍ଧିର ଆଶା ସୂଚକ, ତାହାର ପ୍ରତିନିଧିତ୍ୱ କରେ, ଝରକା ବାହାରେ ଉଡ୍ଡୀନ ଧବଳ ପାରାବତର ଚିତ୍ର ।

ବସ୍ତୁତଃ 'ଖୋଲାଝରକା'ର ପ୍ରଚ୍ଛଦ ତାଙ୍କର ଅନ୍ତଃସ୍ଥ ଚେତନାକୁ ଠିକ୍ ରୂପାୟିତ କରିପାରିଛି ।

## ନାନ୍ଦୀମୁଖ : ଅଶ୍ରୁକାବ୍ୟ : ନାମକରଣ

ନାନ୍ଦୀମୁଖରେ ଗ୍ରନ୍ଥର ଚେତନା ଏବଂ ନାମକରଣ ସ୍ପଷ୍ଟତର ହୋଇଅଛି । ସାଧାରଣତଃ ଝରକା ପବନ ଯାତାୟାତ କରିବା ପାଇଁ ଉଦ୍ଦିଷ୍ଟ ହୋଇଥାଏ । ଏଣୁ ତାହାର ନାମ ହୋଇଥାଏ ବାତାୟନ । କେବଳ ବାତ ଆୟନରେ ନୁହେଁ, ଝରକାର ବହିଃଦୃଶ୍ୟ ପ୍ରଦର୍ଶନର କ୍ଷମତା ମଧ୍ୟ ଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ଫ୍ରେମ ଭିତରୁ ନିର୍ଦ୍ଦିଷ୍ଟ ଅବସ୍ଥାନ ଦୃଶ୍ୟମାନ ହୋଇଥାଏ, ଝରକା ଦ୍ୱାରା । ଫଳରେ ଦୃଷ୍ଟି କେନ୍ଦ୍ରୀଭୂତ ହୁଏ ଓ ପ୍ରତ୍ୟେକଟି ଦୃଶ୍ୟମାନ ରଙ୍ଗ, ରୂପ, ବସ୍ତୁ, କ୍ରିୟା ଓ ପ୍ରତିକ୍ରିୟାକୁ ଅନ୍ତରଙ୍ଗ ଭାବେ ପ୍ରତ୍ୟକ୍ଷ କରିହୁଏ ।

ଏତଦ୍‌ଭିନ୍ନ 'ଖୋଲା ଝରକା'ରେ ଆଉ ଏକ ଅଦୃଶ୍ୟ ଦୃଶ୍ୟ, ଦୃଶ୍ୟ ହୁଏ । ତାହା ହେଲା ମାନସିକତାର ଦୃଶ୍ୟ । ଝରକା ଦେଇ ଲମ୍ବିତ ଦୃଷ୍ଟି ପ୍ରକୃତତଃ ଫେରି ଆସିଥାଏ ଅତୀତର ବହୁ ଘଟଣା, ଦୁର୍ଘଟଣା ଓ ସ୍ମୃତିକୁ ସଞ୍ଜୀବିତ କରି ।

ବସ୍ତୁତଃ ଖୋଲା ଝରକାରେ ଥାଏ ନବଚେତନା (ବାତ + ଆୟନ), ନିର୍ଦ୍ଦିଷ୍ଟ ଦୃଶ୍ୟମାନତା ଓ ସ୍ମୃତି ମେଦୁରତା ।

'ଏ ନାଁ କାହିଁକି'ରେ କବି ଲେଖିଚନ୍ତି—"ବସି ରହିବାର କିଛି ସମୟ ପରେ ମୁଁ ଯେତେବେଳେ ଅସ୍ୱସ୍ତିରେ ଛଟପଟ ହୁଏ, ସେତେ-ବେଳେ ମୋ ଧାମନାରେ ଗୋଟିଏ ଖୋଲା ଝର୍କା ଦେଖାଯାଏ । ମୁଁ ଯେପରି ବହୁବର୍ଷର ଅନ୍ଧକାର ଭିତରୁ ଆଲୋକକୁ ଯାଉଚି ସେଇପରି ଅନୁଭବ କରେ । ଏକ ତୀବ୍ର ଉତ୍ତେଜନାରେ ମୋର ସମସ୍ତ ଦେହ, ମନ, ପ୍ରାଣ ଚଞ୍ଚଳ ହୋଇଉଠେ ।

× × ×

ସେ ଯାହା ହେଉ ସେଇ କୋଡ଼ିଏ ଦିନଧରି ମୋ ଜୀବନର ଗୁଡିଏ ନିର୍ଜନ ପ୍ରହରକୁ ଯିଏ ଶବ୍ଦମୟ, ଧ୍ୱନିମୟ ଆଉ ସ୍ପର୍ଶମୟ କରି ତୋଳିଥିଲା…ସେ ଗୋଟିଏ ଝର୍କା…ଗୋଟିଏ ଖୋଲା ଝର୍କା ।"

ଏଇ ପରିପ୍ରେକ୍ଷୀରେ ବିଚାର କଲେ 'ଖୋଲା ଝର୍କା' କବିମାନସର ବିପୁଳ ଅଭିଜ୍ଞତା-ଅନୁଭୂତିର ବ୍ୟାପକ କ୍ଷେତ୍ରଟିଏ ଅଥଚ ଏକ ନିର୍ଦ୍ଦିଷ୍ଟ ଫ୍ରେମ୍ ଭିତରୁ ଦୃଶ୍ୟମାନ । ଏହା କବି ଦୃଷ୍ଟିକୁ ପ୍ରସାରିତ ଓ ବ୍ୟାପ୍ତ କରିରଖିଛି; ଗଭୀର ଓ ଉଦାତ୍ତ ବି ।

## ବାଇଶି ପାହାଚ : ସୂଚୀପତ୍ର

୪୨ଟି (ବୟାଳିଶିଟି) କବିତାରେ ୯୭ ପୃଷ୍ଠାର କବିତା ଗ୍ରନ୍ଥକୁ (କେବଳ କବିତାଂଶ) ସୂଚିତ କରାଯାଇଛି ।

ପ୍ରଥମ କବିତାଟି ଶୀର୍ଷକ କବିତା, "ଖୋଲା ଝର୍କା" । ଅବଶିଷ୍ଟ କବିତା ଗୁଡିକର ନାମରୁ କେତେକ ବିପ୍ଳବ କବିତା ବୋଲି ଜଣା ପଡ଼ିଯାଇଥାଏ, ଯଥା 'ଉଜ୍ଜ୍ୱଳ ପତାକା', 'ଭାଙ୍ଗି ଆସ ବ୍ରହ୍ମାଣ୍ଡ', 'ସୂର୍ଯ୍ୟୋଦୟ', 'ଧୈର୍ଯ୍ୟଧରି', 'ନୂତନ ବିଦ୍ୟୁତ', 'ବିପ୍ଳବ ମରିନାଇଁ', 'ବିପ୍ଳବୀ ପ୍ରାଣ', 'ନବ ଦୃଷ୍ଟି', 'ଅଗ୍ରୁତ ଶପଥ', 'ଅଗ୍ନି ଯୁଗ' ଇତ୍ୟାଦି । ଅନ୍ୟ କେତେକ କବିତାର ନାମରୁ ସେହିପରି ପ୍ରେମର ସୂଚନା ମଧ୍ୟ ମିଳିଥାଏ । ଯଥା— 'ସ୍ମୃତିର ସୁରଭି', 'ପେଟର ଫାଲଗୁନ', 'ବିରହିଣୀ', 'ପ୍ରେମ', 'ଶିଖା' ଇତ୍ୟାଦି ।

ନେତେବ ନାମକରଣ ସତ୍ତ୍ୱ ଓ ଡାକ୍ତରେଇବ୍ । କ୍ୱଚିତ ନାମକରଣ ସୂଚନାଧର୍ମୀ । କବିତାର ଭାବଧାରାକୁ ତାର ନାମକରଣରୁ ସିଧାସଳଖ ଧରିହୁଏ ।

## ନାଟ୍ୟମଣ୍ଡପ; ଉତ୍ସର୍ଗ

ଅତି ଅବିସମ୍ବାଦିତ ଭାବେ ଏଣିତ କବିତା ଗୁଚ୍ଛର ରଚନା କାଳକୁ ସ୍ୱର୍ଣ୍ଣ କାଳର ବୋଲି କୁହାଯାଇପାରେ । ୧୯୭୯ ମସିହାରେ ଏହା ମୁଦ୍ରିତ ଓ ପୁସ୍ତକାକାରରେ ପ୍ରକାଶିତ ।

୧୫ ଅଗଷ୍ଟ ୧୯୭୯ରେ ପୁସ୍ତକ ପ୍ରକାଶ କାଳରେ କବି ଜଣେ ଯୋଗଜନ୍ମା ବିପ୍ଳବୀଙ୍କର ଏକଦା ଦିବ୍ୟସ୍ପର୍ଶ, ଏକଦା ଓଜସ୍ୱିନୀ ଭାଷଣ ଶ୍ରବଣକୁ ସ୍ମରଣ କରିଛନ୍ତି । ତାଙ୍କ ମତରେ ସେ ବିପ୍ଳବର ନୂତନ ଦର୍‌ବଳପୁରେ ପୁନଃ ପ୍ରତିଷ୍ଠିତ ହେବେ, ଦେଶର ଅର୍ଦ୍ଧଭୁକ୍ତ ଜନତାର ଆର୍ଥିକ ସ୍ୱଚ୍ଛଳତାର ସ୍ୱର୍ଣ୍ଣଯୁଗ ଆଣିବା ପାଇଁ ।

ସେହି ମହାପୁରୁଷଙ୍କ ଉଦ୍ଦେଶ୍ୟରେ ବିପ୍ଳବସିକ୍ତ ଉକ୍ତ କବିତା ଗ୍ରନ୍ଥଟିକୁ ସଶ୍ରଦ୍ଧ ନିବେଦନ କରାଯାଇଛି ।

ପ୍ରତିଟି ବିପ୍ଳବୀପ୍ରାଣର ସେ ପ୍ରାତଃସ୍ମରଣୀୟ —ସୁଭାଷଚନ୍ଦ୍ର ବୋଷ

ଉତ୍ସର୍ଗ ପତ୍ରର ଭାଷା ଓ ଭଙ୍ଗୀରେ ଆନ୍ତରିକତା ପ୍ରଚୁର । ସେଥିରୁ ମଧ୍ୟ ଯଥେଷ୍ଟ ବୈପ୍ଳବିକ ଚେତନାର ଆଭାସ ମିଳେ ।

## ବିଗ୍ରହ: କବିତାବଳୀ

ନାଟ୍ୟ ମଣ୍ଡପ ଉତ୍ସରୁ ପର୍ଯ୍ୟଟକ ଦୃଷ୍ଟି ସୃଷ୍ଟି ମଧ୍ୟରେ ବିଗ୍ରହ-ରେ କେନ୍ଦ୍ରୀଭୂତ ହୁଏ ପ୍ରଚଣ୍ଡ ଆଗ୍ରହାତିଶଯ୍ୟରେ । ସେଠି କବିତା ବିଗ୍ରହ ୪୨ଟି ଭିନ୍ନ ପ୍ରତିମାରେ ପ୍ରତିଷ୍ଠିତ ହୁଅନ୍ତି । ପ୍ରତ୍ୟେକଟି କବିତା/ପ୍ରତିମା ଭିନ୍ନ ଭିନ୍ନ ବିଶିଷ୍ଟ ଅଥଚ ଏକ ଅଭିନ୍ନ ଚେତନାରେ ଗ୍ରଥିତ ହୋଇଥାନ୍ତି। ହେଇ ଅଭିନ୍ନ ଚେତନାଟି କବିଙ୍କର ପ୍ରତିଭାର ଅନୁସାର । ଅନୁରାଗ ପ୍ରେମ-

ପ୍ରଶସ୍ତି-ବିରୋଧ-ପ୍ରଶଂସା ମୂଳି ବିପ୍ଳବ । କବିଙ୍କ ଗଦ୍ୟର ଅନୁଭବରେ ଏ ସବୁ ଚିତ୍ର, କଥ୍ୟ ଚ, ସୁଷ୍ଠୁ ଓ ପରିମୃତ ।

କବିତା ମାନଙ୍କର ମୁଖ୍ୟ ସ୍ୱର ହେଲା ମଣିଷକୁ ଭଲପାଇବା । ତାହା ଦୁଇଟି ମାର୍ଗରେ ପ୍ରକାଶିତ । ୧-ଭଲ ପାଇବାକୁ ଭଲ ପାଇବା । (ଯୁକ୍ତ+ଯୁକ୍ତ=ଯୁକ୍ତ) ୨-ଭଲ ନ ପାଇବାକୁ ଭଲ ନପାଇବା । (ବିଯୁକ୍ତ+ବିଯୁକ୍ତ=ଯୁକ୍ତ) ପ୍ରଥମ ପର୍ଯ୍ୟାୟରେ ପ୍ରେମ, ବିପ୍ଳବ, ସହାନୁଭୂତିବୋଧ ଓ ଦ୍ୱିତୀୟ ପର୍ଯ୍ୟାୟରେ ଶୋଷଣ, ଲୁଣ୍ଠନ, ଅତ୍ୟାଚାର ଓ ଅବିଚାର । କବି ପ୍ରିୟାକୁ, ପ୍ରୀତିମୟ ପରିବେଶକୁ, ପ୍ରୀତି ସିକ୍ତ ଧୋଇ ବ୍ୟକ୍ତି-ବସ୍ତୁ-ଘଟଣାକୁ ଏବଂ ଶ୍ରମିକ, ସର୍ବହରା ସଂଗ୍ରାମୀ, ଏ ସମସ୍ତଙ୍କୁ ଭଲ ପାଇଛନ୍ତି । ପୁଣି ଅବିଚାର ଦମନଲୀଳାକୁ ପ୍ରତିବାଦ କରିବା ଭଙ୍ଗିରେ ଅତ୍ୟାଚାରୀ ମାନଙ୍କୁ ଆଉରି ବେଶି ଭଲ ପାଇବାର ନିଦର୍ଶନ ଦେଖାଇଛନ୍ତି ।

ଏଇ ଦୃଷ୍ଟିରୁ ଦେଖିଲେ ଖୋଲା ଝରକା କବିତା ସଙ୍କଳନଟି ପ୍ରେମ ଓ ବିପ୍ଳବ ଏଇ ଦ୍ୱିବିଧ ଧାରାକୁ ଅଙ୍ଗୀଭୂତ କରିଛି ଓ ତା'ର ପ୍ରତିନିଧିତ୍ୱ କରୁଛି । ପୁନଶ୍ଚ ଏଥି ପ୍ରତ୍ୟେକଟି ବିପ୍ଳବାତ୍ମକ କବିତା ଏକ ଅପୂର୍ବ ପ୍ରେମ-ଝଙ୍କାରରେ ଝଙ୍କୃତ ହୋଇ ପାଠକକୁ ବିମୋହିତ କରି ରଖେ ।

କବିତାଗୁଡ଼ିକରେ ପୃଥିବୀର ରୂପରେଖ ବଦଳିଛି ତା'ର ପ୍ରାଣସ୍ପର୍ଶୀ ଓ ସମ୍ଭାବନାମୁକ୍ତ । ବର୍ତ୍ତମାନର ପୃଥିବୀକୁ ରୁକ୍ଷ, ଦୁର୍ଦ୍ଦଶାଗ୍ରସ୍ତ, ଦରମଲା, ପ୍ରାଣହୀନ ନିର୍ଜନ ବୋଲି କହୁଥିବା ଓ ଲେଖା ମାଧ୍ୟମରେ ସାବ୍ୟସ୍ତ କରୁଥିବା ଦ୍ରଷ୍ଟାକୁ କବି ଜୀବନବୋଧର ଅସଲ ଦୃଷ୍ଟିଭଙ୍ଗୀରୁ ବର୍ଜ୍ଜିତ ବୋଲି ମନେକରନ୍ତି । ସେ ଦେଖନ୍ତି ପ୍ରତିଟି ସ୍ତୁପ ସୌଧ, ମନ୍ଦିର, ପାର୍କ, ପୋଲ ପ୍ରଭୃତିରେ ଶ୍ରମିକ/ଶିଳ୍ପୀ ହୃଦୟର କଳାତ୍ମକ ନିର୍ଯ୍ୟାସଟି ଗୁମ୍ଫିତ ହୋଇଛି । ପ୍ରତ୍ୟେକଟି ହା-ହୁତାଶ ପଛରେ ଜୀବନ ପ୍ରତି/ଅଗୀତ ପ୍ରତି କରୁଣ ମୋହାଚ୍ଛନ୍ନ ଆବେଗ ଅଛି । ମଣିଷର ବଞ୍ଚିବା ପାଇଁ କେବଳ ଦୁଇଟି ମୁଠା ଜହ୍ନର ବ ଦରକାର ଅଛି ।

କବିଙ୍କ କବିତାରେ ଅତି ଚମତ୍କାର ଭାବାବେଗରେ କେତୋଟି ପଂକ୍ତି ଏଇକଥା କହୁଛନ୍ତି—"କଳ୍ପନାର କୋଣାରକ ତୋଳା/ହେଇନ କେବଳ ଚୂନ ସିମେଣ୍ଟ ପ୍ରସ୍ତରରେ/ହାତୁଡ଼ି ଗୁଳନା ତଳେ/ମେହେନତ ମନ୍ଦିରର ମନ/ସେଠି ବି ଖୋଜଇ କିଛୁ ପ୍ରେମ ଆଉ ନୂପୁର କଙ୍କଣ ।" ମନ୍ଦିରର ଚେତନାରେ ଶ୍ରମ ପାଖରେ ପ୍ରେମର ଦ୍ୱୈତାବସ୍ଥାନ ଦେଖା ଥାଏ । ତାହା ଆନନ୍ଦ ଉଲ୍ଲାସର ଧ୍ୱନିରେ, ପାଖ ଶ୍ରମିକର ପୁଙ୍ଗୁଳା ଗୁନ୍ତି ପ୍ରତି ନଜରରେ, ବଂଶୀର କରୁଣ ମୂର୍ଚ୍ଛନାରେ ପ୍ରକାଶିତ ହୁଏ । ତାହା ପୁଣି ଟିକଏ ବାହାବା, ଟିକଏ ପ୍ରଶଂସା ଓ ସମର୍ଥନରେ ନରୁବା ଦର-ଦଭରା ସ୍ନିଗ୍ଧତାଯୁକ୍ତ ବାଣୀରେ ସ୍ୱୀକୃତ ହୁଏ । କବିଙ୍କ କବିତାର ଅନ୍ୟତମ ପଂକ୍ତିରେ—"ମନ୍ଦିରର ପଥ୍ୟ ଆଉ ପଥ୍ୟତାର ଆଦିମ ପ୍ରକୃତି/ସୃଷ୍ଟିଶୀଳ ପ୍ରାଣ ଖୋଜେ କିଛୁ ପ୍ରୀତି, ପ୍ରେରଣା ସ୍ୱୀକୃତି ।"

(ପଲ୍ଲଶର ଶିଖା)

'ସ୍ମୃତିର ସୁରଭି', 'ଫେବର ଫାଲ୍‌ଗୁନ', 'ପ୍ରେମ' ଓ 'ବରବର୍ଣ୍ଣୀ' ଭଳି କବିତା ଗୁଡ଼ିକରେ ପ୍ରେମର ଉଚ୍ଚକିତ ମୃଦୁଗୁଞ୍ଜନ ଶୁଣାଯାଏ । ସେଥିରେ ପ୍ରେମର ପ୍ରମତ୍ତତା, ଆକୁଳତା, ଉନ୍ମାଦେଚ୍ଛାର ପ୍ରକାଶ ନାହିଁ, ପରନ୍ତୁ ସ୍ନିଗ୍ଧ ଓ ଚନ୍ଦନର ମଧୁର ଚନ୍ଦ୍ରିକାର ପରିପ୍ରକାଶ ହୋଇଛି । କବି ପ୍ରେମକୁ ପରୀ ସୁନ୍ଦର ରୂପେ ଦେଖିଛନ୍ତି ଓ ପ୍ରେମିକାକୁ ଦେବୀଟିଏ ରୂପେ । ତା'ର କରୁଣ-ନରମ ସ୍ପର୍ଶକୁ କବି ସ୍ମୃତି କୋଷରେ ସାଇତିଛନ୍ତି ଅନୁପମ ଛବିଟିଏ କରି । 'ଆଉ ଜଣେ' କବିତାରେ କବି ଲେଖିଛନ୍ତି—"ଚମତ୍କାର ଜ୍ୟୋତ୍ସ୍ନା ରାତି/ଏଥର ଜାଗ୍ରତ ହେଇ ଚପଳ ଅଭ୍ୟାସ/ଆଉ ଜଣକର କଥା ଭାବି ତନ୍ମୟ ହେବାକୁ/ଦେବୀ ରୂପ ଦେଖିବାକୁ ମୋତେ ଥାଉ ଅଭିଳାଷ ।" (ଆଉ ଜଣେ)

ତଥାପି କବିଦୃଷ୍ଟି ପ୍ରେମକୁ କେବଳ ରୋମାଣ୍ଟିକ ଆବେଗରେ ହୃଦୟସ୍ପୃଷ୍ଟ କରିନାହିଁ···ପରନ୍ତୁ ତାହାକୁ ବସ୍ତୁବାଦୀ ଦୃଷ୍ଟିକୋଣରୁ ମଧ୍ୟ ପ୍ରତ୍ୟକ୍ଷ କରିଛି । ସେଠି ପ୍ରେମ ହୋଇଛି ଶୂନ୍ୟତା ଓ ରିକ୍ତତା···ମୂଲ୍ୟ ପ୍ରତିଶ୍ରୁତିହୀନ ଛଳନା ରୂପେ ।

"ପ୍ରେମ ଏକ ଭଙ୍ଗା ଡେଉ ପ୍ରାଣ ସମୁଦ୍ରର/ପ୍ରେମ ଏକ ଦଗ୍ଧ ଶିଖା ବରଫ ଜ୍ୱାଳାର/ପ୍ରେମ ଶବ୍ଦ ଓ ନନ୍ଦର ଏକ ଅଜସ୍ର ଧ୍ୱନ/ପାହାଡ଼ର ନକ୍ଷତ୍ରକା ଅନ୍ଧାରର ଆର୍ତ୍ତନାଦ/ତା ପାଖରୁ ପ୍ରତିଶ୍ରୁତି ଖୋଜା ସେ ଏକ ନର୍ଜଳ ମୌସୁମୀ ।"

(ପ୍ରେମର ହାଓ୍ୱାରେ)

କବିଙ୍କର ବିପ୍ଳବାତ୍ମକ କବିତାଗୁଡ଼ିକ ଅଧିକ ସଫଳ ଓ ଅନୁ-ଚ୍ଛେଦୁକ୍ତ ହୋଇ ପ୍ରକାଶିତ । ଶୀର୍ଷକ କବିତାରୁ ସେହି ସ୍ୱରର ତୀବ୍ର ନିନାଦ ଶ୍ରୁତ ହେଉଅଛି । ମୁକ୍ତ ମଣିଷ-ସମାଜ ନିର୍ମାଣ ପାଇଁ କବିଙ୍କ ଆଶା ପ୍ରଚୁର ଓ ଅହ୍ୱାନ ଉଦାତ୍ତ ।

"ଜାଣିଛି ମୁଁ ମେଘମନ୍ଦ୍ରେ ଝଡ଼ର ବିଦ୍ୟୁତରେ ଆସିବଇ ଉକା/
ତେଣୁ କହିଛି ଅପେକ୍ଷା ଆଖି ଅପରେ ଯେଉଁ ଖୋଲା ଝରକା ।"

(ଖୋଲା ଝରକା)

ଏଇ ଖୋଲା ଝରକାରେ ଦୃଶ୍ୟମାନ ପୃଥିବୀର ନାରକୀୟ ଦୁଃସ୍ଥ-ଅବସ୍ଥାକୁ ପରିବର୍ତ୍ତିତ କରିବାକୁ କବି ବିପ୍ଳବକୁ ଧୈର୍ଯ୍ୟ ଓ ଶ୍ରେଯ ମଣି-ଛନ୍ତି । ମିଥ୍ୟାଗ୍ରହ, ଜାଲିଆତି, ଠକାମି, ଶୋଷଣ ଇତ୍ୟାଦି ବିରୁଦ୍ଧରେ ସେ ବିପ୍ଳବକୁ ଅହ୍ୱାନ କରିଛନ୍ତି । ଗୋଟାଏ ଧ୍ୱଂସର କବର ଉପରେ ନୂତନ ସୃଷ୍ଟିର ଅଙ୍କୁରଣ ଘଟିବ ବୋଲି ସେ ବିଶ୍ୱାସ କରନ୍ତି ।

କବି ବିପ୍ଳବୀ କିନ୍ତୁ ସେଥିପାଇଁ ସେ ବିପ୍ଳବ ବା ବିଦ୍ରୋହକୁ ଉତ୍ତମ ବୋଲି ଅଭିହୀ କହିନାହାନ୍ତି । ସେ ସ୍ୱୀକାର କରିନନ୍ତି ଯେ ବିପ୍ଳବ କ୍ଷତ ଆଉ ଶୋଣିତ-ସର୍ବସ୍ୱ ଏବଂ ତାହା ସମାଜ ଓ ସୃଷ୍ଟିକୁ ଧ୍ୱଂସ କରେ । ପରନ୍ତୁ ସେ ଏକ ସ୍ଥିର, ଶାନ୍ତ, ନିରୁଦ୍‌ବିଗ୍ନ ଜୀବନ ଚାହାନ୍ତି ଯାହା ହୋଇଥିବ—

"ଲକ୍ଷ୍ୟମୋର ଅରଣ୍ୟ ନିଭୃତ ପ୍ରାନ୍ତ
ଅସିବାକୁ ପର୍ଦ୍ଦି ଖୋଲା ଆକାଶ ସମାନ
ଧଳାମେଘ ମୁକ୍ତ ହାଓ୍ୱା ସ୍ୱଚ୍ଛ ବନ ମଧୁର ସହିତ

ଉତ୍ତର ପବନ ଯହିଁ ଗତି ଖୋଜେ ଦକ୍ଷିଣା ମଳୟେ
କପୋତ ଓଡ଼ଣୀରୁ ଯହିଁ ଝରପଡ଼େ ଶାନ୍ତିର ଶରତ ।"

ବସ୍ତୁ ବନ୍ଧନ ପରିବେଶ ଓ ପରିମିତ ଭିତ୍ତିରେ କବିଙ୍କର ବ୍ୟକ୍ତିଗତ ଆବେଗ ମୁକ୍ତଭାବେ ପ୍ରକାଶିତ ହୋଇପାରିଛି ଯହିଁରୁ କବିଙ୍କ ନିଜ ଦୃଷ୍ଟି ପ୍ରକଟିତ ହୋଇ ଯାଉଛି । ଫଳରେ କବିଙ୍କ ମନ ଓ ମନନ ପାଠକପାଇଁ ସ୍ପଷ୍ଟ ହୋଇପାରୁଛି । ଏଇ ଆବେଗ ପ୍ରତିଶ୍ରୁତ ସ୍ପନ୍ଦନ ଓ ପ୍ରଚୁର ଆଶାବାଦଯୁକ୍ତ । "ଏ ସମସ୍ତ ବଦଳିବ ଜାଣିଛି ମୁଁ / ହାଡ଼ଭଙ୍ଗା ଶୀତର ଏ ମାଘ ରହିବନି ସବୁଦିନ ପାଇଁ/ମଣିରେ ରକ୍ତଖିଆ ବାଘ ସେ ବି ଦିନେ ମରିବଇ ମୋ'ର ଲାଠି ମାଡ଼େ ।" (ଉଜ୍ଜ୍ୱଳ ପତାକା)

ଉପରୋକ୍ତ ଉକ୍ତିରେ ପ୍ରଗାଢ଼ ଆତ୍ମବିଶ୍ୱାସ ଓ ଏକ ସୁନ୍ଦର ଜୀବନ ପାଇଁ ପ୍ରଚୁର ଆଶାର ସ୍ୱର ଗୁମ୍ଫିତ । 'ସୂର୍ଯ୍ୟୋଦୟ' କବିତାରେ କବି ଆପଣାକୁ ସୂର୍ଯ୍ୟସମ ତେଜସ୍ୱୀରୂପେ ଓ 'ନିଶ୍ଚିତ ତାରିଖ' କବିତାରେ ଦୁର୍ଗସମ ଦୃଢ଼, ଅଭେଦ୍ୟ, ଅଜେୟ ମଣିଛନ୍ତି । ଶ୍ରମିକର ଅକ୍ଳାନ୍ତ ଶ୍ରମରେ ଯେ ଦେଶର ଉନ୍ନତି ଓ ପରିବର୍ତ୍ତନ ହେବ ଏକଥା କବି ଦୃଢ଼ଭାବେ ବିଶ୍ୱାସ କରନ୍ତି । ତେଣୁ ସେ କହନ୍ତି—"ପ୍ରତ୍ୟୁଷ ଉଦାର ଆଉ ଆକାଶ ପ୍ରସନ୍ନ/ମୋ ହାତ ମୁଠାରେ ଏଇ କାରଖାନାର ଉତ୍ପାଦନ/ସମୃଦ୍ଧିର ଲୁହକାଠି/ମୁଁ ହେଇ ବାରବାଟୀ ଶକ୍ତିର ପ୍ରସ୍ତୁତ ।

କବି ପୁଣି ସୂର୍ଯ୍ୟମନ୍ତ୍ର ଦରି କବିଟିଏ ହେବେ । ସ୍ୱାଧୀନ ମନର କଥା କହିବେ ଓ ସକଳ ବୁକୁର ବ୍ୟଥା ବୁଝିବେ । ଯଦି ତାଙ୍କୁ ଏଥିପାଇଁ କବିର ସ୍ୱୀକୃତି ନ ମିଳେ ତେବେ ସେ ହତୋତ୍ସାହ ହେବେନାହିଁ । ପରନ୍ତୁ କର୍ମ ଆଉ ହୃଦୟର ସମନ୍ୱୟରେ ସେ ଏକ ନୂତନ ତୋରଣ ହେବେ । ଏ ଯାବତ ଅସ୍ପୃଷ୍ଟ ଥିବା ଆତ୍ମାର ସଙ୍କେତ ଦେବାକୁ ସେ ନୂଆ ଧରଣରେ ଲେଖିବେ । କବିଙ୍କର ଉକ୍ତ ଆବେଗ ଅଭିନନ୍ଦନୀୟ ଓ ଗଭୀର ବିଶ୍ଳେଷଣର ଅପେକ୍ଷାର୍ଥୀ ।

ବ୍ୟକ୍ତିସତ୍ତା ପ୍ରତି କବିଙ୍କର ଭରସା ଯଥେଷ୍ଟ । ମାଟିର କଠୋର ଜିଜ୍ଞାସା ପାଖରେ ଜୀବନର ଦୁର୍ବୋଧତା ନାହିଁ, ଇଚ୍ଛାଶକ୍ତି ପାଖରେ

କୌଣସି ଅହର ପ୍ରତିରୋଧ କ୍ଷମତା ନାହିଁ । ମଣିଷ ନିଜ ଶକ୍ତି ବିଷୟରେ ସଚେତନ ହୋଇଗଲେ କୌଣସି ପ୍ରତିବନ୍ଧକ ତାର ପଥରୋଧ କରିପାରିବ ନାହିଁ । 'ମୁଁ ଜଣେ ମେହେନ୍ତର' ଓ 'ଉଜ୍ଜ୍ୱଳ ପତାକା' ଉଭୟ କବିତାରେ ଅନ୍ତ୍ରାନର ଅଗ୍ନିସ୍ଫୁଲିଙ୍ଗ ରହିଛି, ଯାହା ପାଠକ ପ୍ରାଣକୁ ମଧ୍ୟ ଆବିଷ୍ଟ କରିଦିଏ ।

"କାରଣ ତା ମୁଷ୍ଟିବଦ୍ଧ ହାତରେ ବଜ୍ରର ଶପଥ ଥରେ/କାରଣ ତା ଶାଣିତ ଦୃଷ୍ଟିରେ ଝଡ଼ର ବିଦ୍ୟୁତ ଜଳେ ।" ବା

"ମୁଁ ଜାଣେ ମୋର ବିପୁଳ ଶକ୍ତି ସବୁକିଛି ମଡ଼ାଇଦେଇ/ଏଇ ସୃଜନର ଭିତ୍ତି ଭୂମିରେ ଛିଡ଼ା ରହିବ ଚିର ଉନ୍ନତ ଶିରେ/ନିପୀଡ଼ିତ ମୁଁ କରିବ ଆଜ ପ୍ରଗତିର ଝଡ଼ଟେ/ମୁଁ ଜଣେ ମେହେନତ ।"

'ଆଶ୍ଚର୍ଯ୍ୟ ଆକାଶ' ଓ 'ଶିଖା' କବିତା ଦୁଇଟିରେ କବି ବ୍ୟକ୍ତି-ପୂଜା କରିଛନ୍ତି । ବ୍ୟକ୍ତିର ପ୍ରତିଭା ପ୍ରତି ପୂଜା ନୈବେଦ୍ୟ ଅର୍ପଣ କରି-ବାରେ କବିଙ୍କର ଅକୁଣ୍ଠ ମନୋଭାବ ଯଥେଷ୍ଟ ଶ୍ଳାଘାର ବିଷୟ । ପ୍ରଥମ କବିତାର ପ୍ରତିଭାଦୀପ୍ତ ପୂଜ୍ୟ ଜଣେକ ହେଉଛନ୍ତି କବି ଓ ସମାଲୋଚକ ଗୋଦାବରୀଶ ମହାପାତ୍ର, ଯାହାଙ୍କର ପ୍ର ସମାଲୋଚନା ନୂତନ ଯୁଗ ଚେତନା ସୃଷ୍ଟିକ୍ଷମ । ଦ୍ୱିତୀୟ କବିତାର ଉପଜୀବ୍ୟ ହେଉଛନ୍ତି ଜଣେ ବନ୍ଦୀଦେହୀ ଯାହାଙ୍କର ଦେଶର ପ୍ରେମବୋଧ କବିଙ୍କୁ ପ୍ରଭାବିତ କରିଛି । ଉଭୟ କବିତାର ଅକପଟ ପ୍ରକାଶ କବିଙ୍କ ଅନୁରାଗୀ ହୃଦୟର ପରିଚୟ ଦିଏ ।

## ନୈବେଦ୍ୟ : ଆଲୋଚକ ଦୃଷ୍ଟି

ସାମଗ୍ରିକ ଦୃଷ୍ଟିକୋଣରୁ ବିଚାର କଲେ ଖୋଲା ଝରକା କବିତା ସଂଗ୍ରହର କେତେକ ମୌଳିକତା ଓ ତ୍ରୁଟି ମଧ୍ୟ ପରିଲକ୍ଷିତ ହୁଏ ।

ଉକ୍ତ ସଙ୍କଳନରେ କବିଙ୍କ ଆବେଗର ଉତ୍ସ ସାଧାରଣ କବି-ଜନୋଚିତ ଆଖିଦେଖା ବ୍ୟକ୍ତିଗତ ଅନୁଭବର ସଙ୍କୁଚିତ ପରିପ୍ରକାଶ

ନୁହେଁ । ଏହା ଏକ ବସ୍ତୁବ୍ୟାପୀ ଅଂବଶ୍ୟଂକତାର ମନ୍ତ୍ରସ୍ଫୁ ପ୍ରକାଶ । ଏହାର ଭୂମି ହୁଏତ ଓଡ଼ିଶା ବା ବିହାର ହୋଇପାରେ ମାତ୍ର ଏହାର ବ୍ୟାପ୍ତି ବସ୍ତୁବ୍ୟାପୀ ଓ ଚେତନା ସମଗ୍ର ମଣିଷ ଜାତିର । ମଣିଷର ନ୍ୟାଯ୍ୟ ହାସଲ ପାଇଁ କବିତା ଗୁଡ଼ିକର ସଳାପ ଗୋଟିଏ ଗୋଟିଏ ଅଭିମନ୍ତ୍ରିତ ଅସ୍ତ୍ର । ସେଇଥିପାଇଁ ମଣିଷକୁ, ମଣିଷ ଶକ୍ତିକୁ କବି ଗୌରବ ଦେବା ସଙ୍ଗେ ସଙ୍ଗେ ସାଧନାକୁ ଦେଇଛନ୍ତି ଉପଯୁକ୍ତ ସମ୍ମାନ । ସମଗ୍ର ମଣିଷ ଜାତିକୁ ଗୋଟିଏ ସୁନ୍ଦର ସକାଳ ଓ ଶାନ୍ତିର ଜୀବନ ପାଇଁ କବି ଦେଇ-ଛନ୍ତି ଏକ ନିଭିଁର ପ୍ରତିଶ୍ରୁତି ।

ପ୍ରେମ ଓ ବିପ୍ଳବ ଭିତରେ କବି ନବ ଚେତନାର ପଥ ପ୍ରଦର୍ଶକ ହୋଇଛନ୍ତି । କେବଳ ରୋମାଣ୍ଟିକ ସୌନ୍ଦର୍ଯ୍ୟ ଚେତନା ନୁହଁ, ବସ୍ତୁବାଦ ଜୀବନ ଜିଜ୍ଞାସାରେ ତାଙ୍କର ପ୍ରେମ ଯେମିତି ଉଜ୍ଜ୍ୱଳତା—ଧ୍ୱଂସ, କ୍ଷୟ କମ୍ପା ଉଚ୍ଛେଦରେ ନୁହଁ, ନୂତନ ସୃଷ୍ଟି କାମନାରେ ତାଙ୍କ ବିପ୍ଳବର ଅଭିମୁଖ୍ୟ ସେମିତି ସ୍ପଷ୍ଟ ।

କବିଙ୍କର କାବ୍ୟଭଙ୍ଗୀ ଅସ୍ପଷ୍ଟତାରେ ଆଚ୍ଛନ୍ନ ନୁହେଁ । ଏହା ସ୍ୱଚ୍ଛ ଓ ଏହାର ଉଚ୍ଚାରଣ ସମ୍ବେଦନଶୀଳ । ବ୍ୟବହୃତ ଉପମା ସହଜ-ବୋଧ ଓ ଆମ ଜୀବନ ପରିଧି ଅନ୍ତର୍ଗତ । ସ୍ଲୋଗାନର ଖର ସ୍ଫୁରଣରେ ନୁହଁ, ସମ୍ବେଦନ-ଧର୍ମୀ ଉଚ୍ଚାରଣର ମୃଦୁ ଝଲକରେ ସେ ସମସ୍ତଙ୍କୁ ଆଲୋକିତ କରିବାକୁ ଚେଷ୍ଟିତ ଓ ସେଥିରେ ସଫଳ ହୋଇଛନ୍ତି ।

ମାତ୍ର କବିତା ଗୁଡ଼ିକର ଶୈଳୀ ବେଶି ଗଦ୍ୟ-ପ୍ରବଣ । କବିତା-ଗୁଡ଼ିକୁ ମଜାଡ଼ି ଥୋଇଦେଲେ ତାହା ଟିପ ଭଳି ବେଶି ମନେହୁଏ । କେତେକ କବିତାରେ ଗୋଟିଏ କଥନକୁ କବିତା ଭାବେ ଲୁହାପାଇଛୁ ଯାହା । 'ସ୍ୱପ୍ନର ସୁରକ୍ଷା' 'ଝଡ଼', 'ସେଇ କେତେ ଜଣ', 'ଗାଁକୁ' 'ବେକାର' ଭଳି କବିତା ଗୁଡ଼ିକ ଏଇ ପର୍ଯ୍ୟାୟର । ଏଥିରେ ଗୋଟିଏ ଘଟଣାକୁ କାବ୍ୟରୂପ ଦିଆଯାଇଛି, ଯାହା ସଙ୍କଳନର କାବ୍ୟିକ ଭାବ ସ୍ପନ୍ଦନକୁ ବ୍ୟାହତ କରୁଛି ।

ଅପର ପକ୍ଷରେ ଅନ୍ୟାନ୍ୟ କବିତା ଗୁଡ଼ିକ ବଳିଷ୍ଠ ଶୈଳୀ ମଣ୍ଡିତ ହୋଇପାରିଛି । ସଂକ୍ଷିପ୍ତ ଶବ୍ଦକଳ୍ପ ଓ ରୂପକରେ ତାହାର ଭାବ ଅଧିକ ପ୍ରଦତ ହୋଇଛି । ତୀକ୍ଷ୍ଣ ଭାବଧାରାଯୁକ୍ତ ପଂକ୍ତି ଗୁଡ଼ିକ ଗ୍ରନ୍ଥର ଅନ୍ୟତମ ବୈଶିଷ୍ଟ୍ୟ । ସେଠି କବି ଟିଏ ଦାର୍ଶନିକ ପାଲଟି ଯାଇଛି । ବ୍ୟକ୍ତିସତ୍ତାରୁ ବିଚ୍ଛିନ୍ନ ହୋଇ ସେ ନୈର୍ବ୍ୟକ୍ତିକତା ସ୍ତରରେ ଆତଯାତ ହୋଇଛନ୍ତି ।

## ଦକ୍ଷିଣା : ଉପସଂହାର

ଉପସଂହାରରେ ଖୋଲା ଝର୍କା କବିତା ସଂଗ୍ରହ ସମ୍ପର୍କରେ କୁହା-ଯାଇପାରେ ଯେ, ଗ୍ରନ୍ଥଟି କବିଙ୍କ ସମନ୍ୱୟାତ୍ମିକ କାବ୍ୟଧାରାର ସଫଳ ପ୍ରତିଶ୍ରୁତି । ତତ୍କାଳୀନ ବହୁ କବିଙ୍କ ପରି 'ଖୋଲାଝର୍କା'ର କବି ମାନବିକତାର ତୀବ୍ର ଆହ୍ୱାନରେ ଆଲୋଡ଼ିତ । ତେଣୁ ତାଙ୍କ କବିତା ଗୁଡ଼ିକରେ ମଣିଷର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଆହ୍ୱାନ ଅଛି, ନବାଗନ୍ତୁକକୁ ଧୈର୍ଯ୍ୟଧର ଅପେକ୍ଷା କରିବାକୁ ସାନ୍ତ୍ୱନା ଅଛି । ମାନବାତ୍ମାର ଉପଯୁକ୍ତ ଆବଶ୍ୟକତା ପାଇଁ ନୂତନ ଦିଗ୍‌ଦର୍ଶନ ଅଛି । ସୌନ୍ଦର୍ଯ୍ୟ ପ୍ରତି ଅନୁରାଗ, ପୁଣି ଜଗତ ପ୍ରତି ବସ୍ତୁବାଦୀ ଦୃଷ୍ଟିକୋଣ ବି ରହିଛି ।



ସ୍ୱପ୍ନନୀଳ, କଟକ

# ସେଇ ଆଲୁଅ ପାଇଁ : ଏକ ଦୃଷ୍ଟିପାତ

ଅଧ୍ୟାପିକା ଜାନକୀ ଜେନା



ଏକ ନୂତନ ଆତ୍ମମୁଖୀ ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ଉପରେ ଆଧାରିତ ଉପନ୍ୟାସ "ସେଇ ଆଲୁଅ ପାଇଁ" ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କର ଏକ ସଫଳ କୃତି । ଉପନ୍ୟାସର ନାୟକ ତରୁଣ ଶୁଭେନ୍ଦୁ ବାବୁ ଓ ନାୟିକା ତରୁଣୀ ରେବତୀ । ମାତ୍ର ନାୟକ ନାୟିକାଙ୍କର ସ୍ୱାଭାବିକ ପ୍ରେମକାହାଣୀକୁ ନେଇ ଉପନ୍ୟାସଟି ଗତିଶୀଳ ନୁହେଁ । ନାୟିକା ରେବତୀ ଚରିତ୍ରରେ ପାରମ୍ପରିକତା ଅପେକ୍ଷା କିଛିଟା ନୂତନତ୍ୱ ହିଁ ପାଠକର ଦୃଷ୍ଟି ଆକର୍ଷଣ କରେ । ଲୌହନଗରୀ ଟାଟା କମ୍ପାନୀର କର୍ମଚାରୀ ଧନୀର ଦୁଲାଳ ଶୁଭେନ୍ଦୁ । ପୁଷ୍ପାଶ୍ରୀ ଫଗୁଆ ସହ ଅତିବାହିତ ଜୀବନ ତା'ର ବେଶ୍ ଚଢ଼ି ଗଢ଼ି ଚାଲିଲେ । ଏକ ବର୍ଷଣମୁଖର ରାତିରେ ଅକସ୍ମାତ ତା ବସାଘରେ ଆବିର୍ଭୂତା ହୁଏ ଅପରିଚିତା ରେବତୀ । ଟେଲିଗ୍ରାମ୍ ପ୍ରାପ୍ତ ହୋଇ ସିରିଅସ୍ ଆକ୍ସିଡେଣ୍ଟରେ ମୃତପ୍ରାୟ ପିତାକୁ ମେନ୍ ହସ୍ପିଟାଲରେ ଦେଖା କରିବାକୁ ଆସି ସେ ଦ୍ୱାରସ୍ଥ ହୁଏ ଶୁଭେନ୍ଦୁ ବାବୁଙ୍କର । ଆଉ ନିଜକୁ ପରିଚିତା କରାଏ ଶୁଭେନ୍ଦୁ ବାବୁଙ୍କ ଗାଁର ଝିଅ ରୂପେ । ସେହି ବର୍ଷଣ ମୁଖର ରାତିରେ ଶୁଭେନ୍ଦୁ ବାବୁ ତାକୁ ସବୁମତେ ସାହାଯ୍ୟ କରି ହସ୍ପିଟାଲରେ ପହଞ୍ଚାଇ ଦିଅନ୍ତି । ମାତ୍ର ପିତା ଓ ପୁତ୍ରୀର ସାକ୍ଷାତ ମାତ୍ରେ ହିଁ ପିତାର ଜୀବନଦୀପ ଲିଭିଯାଏ ।

ଉପନ୍ୟାସର ଆରମ୍ଭରେ ଏଭଳି ଏକ ଦୁଃଖାତ୍ମକ ପରିବେଶ ମଧ୍ୟରେ ନାୟିକା ରେବତୀର ବ୍ୟବହାର ପାଠକକୁ ଯଥେଷ୍ଟ ଆଶ୍ଚର୍ଯ୍ୟାନ୍ୱିତ କରେ । ଔପନ୍ୟାସିକ ରେବତୀ ଚରିତ୍ରରେ ନାରୀ ଚରିତ୍ରର ସହଜାତ ଦୁର୍ବଳତା ଭରି ନ ଦେଇ ସେଥିରେ ଏକ ବ୍ୟତିକ୍ରମ ସୃଷ୍ଟି କରିଛନ୍ତି । କେବଳ ନାରୀ ନୁହେଁ, ନାରୀ ଓ ପୁରୁଷର ଊର୍ଦ୍ଧ୍ୱରେ ଅବସ୍ଥିତ ମାନବିକ ପ୍ରବୃତ୍ତିଠାରୁ ଦୂରେଇ ନେଇ ଅସ୍ୱାଭାବିକତା ମଧ୍ୟରେ ତା ଚରିତ୍ରର ଏକ ନିର୍ଦ୍ଦିଷ୍ଟ ଦିଗ ପ୍ରତି ଆଲୋକ ପାତ କରିବାର ପ୍ରଚେଷ୍ଟା ହିଁ ଔପନ୍ୟାସିକଙ୍କର ଐକାନ୍ତିକ ଲକ୍ଷ୍ୟ ବୋଲି ମନେ ହୁଏ । ପିତାର ମୃତ୍ୟୁରେ ପୁତ୍ର, କନ୍ୟା ଦୁଃଖରେ ବିଚଳିତ ହେବା ସ୍ୱାଭାବିକ୍ । ଏହି ସ୍ୱାଭାବିକତା ପରିବର୍ତ୍ତେ ରେବତୀର ନିର୍ବିକାର ଭାବ ପାଠକକୁ ରେବତୀ ଚରିତ୍ର ବିଷୟରେ ଭାବିବାକୁ ଅନେକ ଖୋରାକ ଯୋଗାଇଦିଏ । ବାପା ମଲାପରେ ଶବ ପାଖରେ ଚେୟାର ଟାଣି କରି ବସି ଉତ୍କଳଇବା, ଶୁଭେନ୍ଦୁବାବୁଙ୍କ ସକଳ ସାହାଯ୍ୟ ଓ ସହାନୁଭୂତି ସତ୍ତ୍ୱେ ତାଙ୍କ ପ୍ରତି "କଣ ଆଉ ହୋଇଗଲା ? ଯାହା ହେବାର ଥିଲା ସେଇଆ ହେଲା । ତୁମେ ମୋ ସାଙ୍ଗେ ସାଙ୍ଗେ ଆସିଥିଲେ କଣ କରିଥାନ୍ତ । ବାପା ମରି ନ ଥାନ୍ତେ । ତାଙ୍କୁ ଅଟକେଇ ଦେଇଥାନ୍ତ ତୁମେ ?"—ରେବତୀର ଏ ପ୍ରକାର ଉକ୍ତି ବାସ୍ତବିକ୍ ଆଶ୍ଚର୍ଯ୍ୟଜନକ । ପୁଣି ପିତାର ଶବ ପାଖରେ ବସି କନ୍ୟାର ଚା' ପିଇବାର ଅଭିଳାଷ ପିତା ପୁତ୍ରୀର ସମ୍ପର୍କ ସମ୍ବନ୍ଧରେ ପାଠକ ମନରେ ପ୍ରଶ୍ନବାଚୀ ସୃଷ୍ଟି କରେ ଓ ରେବତୀ ଚରିତ୍ର ପ୍ରତି ପାଠକ ମନରେ କୌତୂହଳ ଜନ୍ମାଏ ।

କୈଶୋରରୁ ପିତୃସ୍ନେହ ଓ ସାକ୍ଷାତରୁ ବଞ୍ଚିତ ଶୁଭେନ୍ଦୁବାବୁ ଅନୁଭବ କରନ୍ତି ନିଜ ଜନନୀ ପ୍ରତି ଜନ୍ମଦାତାଙ୍କର ଅବହେଳା, ଆଉ ଶୁଣନ୍ତି ତାଙ୍କର ଚରିତ୍ରହୀନତାର କାହାଣୀ । ରେବତୀ ବାପାଙ୍କର ମୃତ୍ୟୁପରେ ଅପ୍ରତ୍ୟକ୍ଷ ଭାବେ ନିଜ ବସାରେ ପିତା ପୁତ୍ରଙ୍କର ସାକ୍ଷାତ ହୁଏ । ନିଜ ପିତାଙ୍କ ମୁହଁରୁ ସେ ଶୁଣନ୍ତି ପିତାଙ୍କର କଳଙ୍କିତ ଇତିହାସ । ଧନ ବଳରେ ରେବତୀର ବାପ ସାଧୁଆକୁ ନିଜ କର୍ମରେ ଲଗାଇ ଆସୁଥିଲୁ ଅର୍ଥବା, ଗ୍ରାମ୍ୟ ଲୋକଙ୍କର ମୋହ ଦେଖାଇ ରେବତୀର ମା'କୁ ପଥଭ୍ରଷ୍ଟା

କରି ନେଇ ନିଜର ରକ୍ଷିତା କରିବା, ପିତୃ ମାତୃ ସ୍ନେହରୁ ବଞ୍ଚିତା ହୋଇ ରେବତୀ ଅନାଥାଶ୍ରମରେ ପାଳିତହେବା, ଅନ୍ତ ଶେଷରେ ରେବତୀ ମା'ର ମୃତ୍ୟୁରେ ପିତାଙ୍କର ଅନୁଶୋଚନା ଓ ଅନୁତାପରେ ମର୍ମନ୍ତୁଦ କାହାଣୀ ରେବତୀର ନିର୍ବିକାର ଓ ନିଃସଙ୍ଗ ଭାବ ଆଉ ତା'ର ସମ୍ପୂର୍ଣ୍ଣ ଏଡ଼ିବାର ପ୍ରଚେଷ୍ଟା, ସବୁ ମିଶି ତାକୁ ବିଚଳିତ କରାଏ । ରେବତୀକୁ ମାଙ୍କରେ ଆଣି ତା ଯାତନାରେ ବାପାଙ୍କୁ ଶାସ୍ତି ଦେବାର ଅଭିଳାଷ ପୋଷଣ କରି ସେ ଶେଷ ବେଳରେ ଘରୁ ବାହାରିଯାଏ ବାପାଙ୍କର ସମସ୍ତ ଅନୁନୟ ସତ୍ତ୍ୱେ । ମାନ ଦୁଃଖର ନିଆଁରେ ଜଳି ଜଳି ନିଜକୁ ଲୁହା ପରି କଠିଣ ଆଉ ଉଗ୍ର କରିଥିବା ରେବତୀର ବାକ୍ୟବାଣ ତାକୁ ଅଧିକ କ୍ଷତାକ୍ତ କରେ ।

ଚରିତ୍ରହୀନ ପିତାର ପୁତ୍ର ହେଲେ ହେଁ ସୁରେନ୍ଦ୍ର ବାବୁଙ୍କର ଚାରିତ୍ରିକ ଦୁର୍ବଳତା ନ ଥିଲା । ରେବତୀର ଅସହାୟ ଅବସ୍ଥାରେ ସୁରେନ୍ଦ୍ର ବାବୁ ନିଜର ଉଦାର ଓ ଭଦ୍ର ବ୍ୟବହାରର ପରିଚୟ ଦେବାକୁ ଚାହୁଁବେଳେ ରେବତୀ ନାରୀ ହୋଇ ମଧ୍ୟ ସେଥିରେ କୃତଜ୍ଞ ନ ହୋଇ ବରଂ ସୁରେନ୍ଦ୍ରଙ୍କୁ ଅଧିକ ଯନ୍ତ୍ରଣାକ୍ତ କରି ତଥାକଥିତ ଧନିକ ଶ୍ରେଣୀର ପ୍ରକୃତ ସ୍ୱରୂପକୁ ଉନ୍ମୋଚନ କରିବାର ଚେଷ୍ଟା କରି କହିଛି—ସେ ଧନ ଅତି ମାତ୍ରାରେ ଭଦ୍ର ହୋଇ ମୋ ପ୍ରତି ଯେପରି ଉଦାର ବ୍ୟବହାର ଦେଖାଇଲେ, ସେଇଟା ଆପଣଙ୍କ ଶ୍ରେଣୀର ଲୋକମାନଙ୍କ ପକ୍ଷରେ ଗୋଟାଏ ପାଲିସ ଲଗା ଚାରିତ୍ରିକ ଲକ୍ଷଣ । ସେ ଲକ୍ଷଣ ଗୁଡ଼ାକ ସ୍ୱାର୍ଥ ଦୁରଭିସନ୍ଧି ମୂଳକ ।"

ନିଜ ପିତାମାତାଙ୍କୁ ହରାଇ, ଅନାଥାଶ୍ରମ ଜୀବନକୁ ପଛରେ ପକାଇ ରେବତୀ ନିଜ ଗୋଡ଼ରେ ଠିଆ ହୋଇଛି । ଟାଟା କମ୍ପାନୀର ଜଣେ କର୍ମକୁଶଳ ସ୍ୱଭାବରେ ସେ କାର୍ଯ୍ୟରେ ଯୋଗ ଦେଇଛି । ନିଜ ପିତାର କଳଙ୍କିତ କୃତକର୍ମ ଓ ସେହି କର୍ମର ଫଳ ଭୋଗୁଥିବା ରେବତୀର ଦୁରବସ୍ଥା ପାଇଁ ନିଜକୁ ଦାୟୀକରି ସୁରେନ୍ଦ୍ର ନିଜ କର୍ମଠାରେ ଆଗେଇଛି । ରେବତୀଠାରୁ ଲାଞ୍ଛିତ ହୋଇ ମଧ୍ୟ ସେ ତାହା ସହ ସମ୍ପର୍କ

ଛିନ୍ନ କରି ପାରନ୍ତି । ଆଉ ଅପର ପକ୍ଷରେ ରେବତୀ ସୁରେନ୍ଦ୍ରକୁ ଆଘାତ ପରେ ଆଘାତ ହାଣିବା ସତ୍ତ୍ୱେ ବି ତାର ଉପସ୍ଥିତି କାମନା କରୁଛି ।

ରେବତୀ ଶିକ୍ଷିତା ସୁନ୍ଦରୀ ଆଉ ବୁଦ୍ଧିମତୀ ମଧ୍ୟ । ମାତ୍ର ସହରୀ ଜୀବନର ଚକଚକ୍ୟରେ ମୋହିତ ନ ହୋଇ ସେ ସହରତଳି ବସ୍ତିରେ ଖଟିଖିଆ ଦିନ ମଜୁରିଆଙ୍କ ସହ ଘରବାନ୍ଧି ରହୁଛି । ସେହି ସର୍ବହରା ଶ୍ରେଣୀର ସମସ୍ୟାର ସମାଧାନ ପାଇଁ ସେ ପନ୍ଥା ଖୋଜୁଛି । ତାଙ୍କୁ ଅନ୍ଧାରରୁ ଆଲୋକକୁ ଆଣିବାକୁ ପ୍ରାଣାନ୍ତକ ଚେଷ୍ଟା କରୁଛି । ଏ ଦୃଷ୍ଟି-କୋଣରୁ ଏକ ନୂତନ ଧରଣର ସନ୍ଧାନ ନ ଦେଲେ ହେଁ ଜଣେ ନାରୀ ମୁହଁରେ ବିପ୍ଳବର ବାଣୀ ଫୁଟାଇ ତାକୁ ସାମ୍ୟବାଦ ଚିନ୍ତାଧାରାରେ ଅନୁପ୍ରାଣିତ କରାଇ, ସମସ୍ୟାର ସମାଧାନରେ ନିୟୋଜିତ କରାଇବା ଅଭିନବ ନିଶ୍ଚୟ ।

ବସ୍ତିର ଖଟିଖିଆଙ୍କ ଉନ୍ନତି ପାଇଁ କ୍ଲବ୍, ଲାଇବ୍ରେରୀ, ଦାତବ୍ୟ ଚିକିତ୍ସାଳୟ, ଶ୍ରମିକ ମଙ୍ଗଳ ସମିତି ଆଦିର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ସମସ୍ୟାର ସମାଧାନ ପାଇଁ ରେବତୀ ଏକା ଏକା ଆପ୍ରାଣ ଉଦ୍ୟମ କରୁଛି । ଏଥିପାଇଁ ସେ କାହାର ସାହାଯ୍ୟ ଲୋଡ଼ୁ ନାହିଁ । ରେବତୀର ରୂପରେ ପ୍ରଲୁବ୍ଧ ମିଷ୍ଟର ଶର୍ମା ଆଉ ସୁଧାଂଶୁ ଅଯାଚିତ ସାହାଯ୍ୟ ଦେବାକୁ ଆଗେଇ ଆସିଛନ୍ତି । ମାତ୍ର ରେବତୀ ତାଙ୍କୁ ଉପଯୁକ୍ତ ଜବାବ୍ ଦେଇ ଅପମାନିତ କରି ଫେରାଇ ଦେଇଛି । ରେବତୀର ଅଭୟ ଆଶ୍ରୟରେ ଥିବା ସୁନ୍ଦରୀ ରମଦୁଲଣୀ ଉପରେ ଲୁବ୍ଧ ଦୃଷ୍ଟି ପକାଇ ସୁଯୋଗର ଅପେକ୍ଷାରେ ସେମାନେ ଫେରି ଯାଇଛନ୍ତି ।

ରେବତୀ ସୁରେନ୍ଦ୍ରଙ୍କ ହୃଦୟରେ ଏକ ସୁଦୃଢ଼ ଆସନ ମାଡ଼ି ବସିଛି । ନିଜ ଅଜାଣତରେ ସେ ଆକୃଷ୍ଟ ହୋଇଛନ୍ତି ରେବତୀ ପ୍ରତି । ସମ୍ପର୍କ ସେମାନଙ୍କର ବିଚ୍ଛିନ୍ନ ହୋଇନାହିଁ । ମାତ୍ର ଚରିତ୍ରହୀନ ପିତାର ପୁତ୍ର ଆଖ୍ୟା ଦେଇ ରେବତୀ ବାରମ୍ବାର ସୁରେନ୍ଦ୍ରକୁ ଆଘାତ ପରେ ଆଘାତ ହାଣି ଚାଲିଛି । କୁକର୍ମ କରି ନଥିବା ଲୋକକୁ ମିଥ୍ୟା ବଦନାମ

ଦେଲେ ତାର ଆହତ ଆତ୍ମା ଅଭିମାନରେ ହିଁ କୁହମ୍ଭି କରିବସିଥ । ଶୁରେନ୍ଦ୍ର ଠିକ୍ ସେହି ଅଭିମାନରେ ନିଜ ଚରିତ୍ରହୀନତାର ପରୀକ୍ଷା ଚଳେଇବାକୁ ବସିଛି ରେବତୀ ଉପରେ । ସେଥିପାଇଁ ସେ ମଦ ପିଉଛି । ମାତ୍ର ରେବତୀ ଆଗରେ ତାର ପ୍ରକୃତ ସ୍ୱରୂପ ଧରା ପଡ଼ିଯାଇଛି । ସେହି ଘଟଣା ପରଠୁ ରେବତୀର ଶୁରେନ୍ଦ୍ର ପ୍ରତି ସଂଗୁପ୍ତ ଅନୁରାଗରେ ମାତ୍ରା ବୃଦ୍ଧି ପାଇଛି ବରଂ, କିନ୍ତୁ କମି ନାହିଁ ।

ନିଶାଗ୍ରସ୍ତ ଅବସ୍ଥାରେ ଶୁରେନ୍ଦ୍ରର ରେବତୀ ଘରେ ରାତିରେ ଆଶ୍ରୟ ନେଇଥିବାରୁ ବସ୍ତିର ଲୋକେ ତାକୁ କଳଙ୍କିନୀ ଆଖ୍ୟାଦେଇ ବାହାର କରିଦେଇ-ଛନ୍ତି । ଏ ଖବର ପାଇ ମର୍ମାହତ ଶୁରେନ୍ଦ୍ର ରେବତୀର ସନ୍ଧାନ ନେଇ ବାଲୁଚେଲି ବସ୍ତିରେ ନବଘନ ବାବୁଙ୍କ ଘରେ ପହଞ୍ଚିଛି । ନବଘନ ବାବୁ କାର୍ଯ୍ୟବଶତଃ ସେ ଦିନ ରାତିରେ କଲିକତା ଯିବାହେତୁ ସୁରେନ୍ଦ୍ର ବାବୁ ରେବତୀ ଓ ରାମଦୁଲାରୀର ସୁରକ୍ଷା ପାଇଁ ତାଙ୍କ ଘରେ ଅଟକି ଯାଇଛନ୍ତି ।

ସନ୍ଧ୍ୟା ସମୟରେ ଶୁରେନ୍ଦ୍ର ଓ ରେବତୀ ଦୁହେଁର ଅଲୋଚନା-ରତ ହୋଇ ଘରଠାରୁ କିଛି ଦୂରକୁ ବୁଲିଯାଆନ୍ତେ, ତାଙ୍କ ଅନୁପସ୍ଥିତିରେ ସୁଯୋଗ ନେଇ ନଷ୍ଟଚରିତ୍ର ମିଷ୍ଟର ଶର୍ମା ଓ ରୁସ୍ତାଜି ସେ ଘରେ ପହଞ୍ଚି-ଛନ୍ତି । ମିଷ୍ଟର ଶର୍ମା ରାମଦୁଲାରୀ ପ୍ରତି ପାଶବିକ ଅତ୍ୟାଚାର କରୁଥିବା ସମୟରେ ରେବତୀ ଫେରି ଆସିଛି । ଆଉ କୋପନମୁଖୀ ଶର୍ମାଙ୍କ ପଛରେ ଦଉଡ଼ ଦଉଡ଼ ଝୁଣ୍ଟି ପଡ଼ି ଶର୍ମା ପଡ଼ିଯିବା ଅବସ୍ଥାରେ ତାଙ୍କୁ କୁରାଢ଼ୀର ଆଘାତ ପରେ ଆଘାତ ଦେଇ ଖୁନ କରିଛି । କୋର୍ଟରେ ନିଜ ମୁହଁରେ ଶର୍ମାଙ୍କୁ ଖୁନ କରିବାର ସ୍ୱୀକାରୋକ୍ତି ଦେଇ ସେ ଜେଲ୍ ଯାଇଛି ।

ଉପନ୍ୟାସର ପ୍ରାରମ୍ଭରୁ ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ନଷ୍ଟ ଚରିତ୍ର ପିତାର ମୃତ୍ୟୁ ପ୍ରଭାବରେ ଶୁରେନ୍ଦ୍ରକୁ ଅପମାନିତ କରିଥିବା ଓ ପାଠକ ଚକ୍ଷୁରେ ଆପାତତଃ ଶୁରେନ୍ଦ୍ର ପ୍ରତି ଅନୁରାଗବର୍ଜ୍ଜିତା ନାରୀ ପରି ପ୍ରତୀୟ-ମାନ ହୋଇଥିବା ରେବତୀର ହୃଦୟାବେଗ ଉପନ୍ୟାସର ଅନ୍ତିମ ପର୍ଯ୍ୟାୟରେ ଜେଲ୍ ଭେନ୍‌କୁ ଅପେକ୍ଷା କରିଥିବା ମୁହୂର୍ତ୍ତରେ ହିଁ ଅନୁଭବ୍ୟ ।

ଶ୍ରେଣୀବନ୍ଧନ, ଶୋଷକବନ୍ଧନ, ସାମ୍ୟବାଦୀ ସମାଜର ସ୍ୱପ୍ନ ଦେଖୁଥିବା ଦେବଦତ୍ତ ନିଜ ସାମନାରେ ମୃତ୍ୟୁ ଦେଖୁଥିଲା ଆଶା ନ ଛାଡ଼ିଲେ ବି ସଂଗ୍ରାମ ଠାରୁ ବଞ୍ଚିତ ହେବାର ଆଶା ପୋଷଣ କରିନାହିଁ । ଅଧିକନ୍ତୁ କଏଦଖାନାର ଅନ୍ଧାର କୁଠରୀ ଭିତରେ ବିପ୍ଳବର ଦୀପ୍ତି ଖୋଜିବାର ଅନୁସନ୍ଧିତ୍ସା ନେଇ ଆଗାମୀ ଦିନର ନୂତନ ସୂର୍ଯ୍ୟୋଦୟ ପ୍ରତୀକ୍ଷାରେ ରହିଛନ୍ତି । "ହେଇ ଆଲୁଅ ପାଇଁ" ସର୍ବହରା ନେତା ଜନାର୍ଦ୍ଦନଙ୍କ ସଙ୍ଗଠିତ ଶକ୍ତି ଭିତରେ ଶ୍ରୁତିଭଙ୍କାର ବଜ୍ରବାଣୀ ସଞ୍ଚାଳିତ କରିବାକୁ ଶେଷ ମୁହୂର୍ତ୍ତରେ ଯେ ଶ୍ରୁତିଭଦ୍ରର ସାହଚର୍ଯ୍ୟ ଓ ସମ୍ମତି ଲୋଡ଼ି ତାର ପାଦଧୂଳି ନେଇ ଜେଲ୍‌ଭେନ୍‌ରେ ବସିଛି ।

ଉପନ୍ୟାସଟିରେ ଆଜିର ସଭ୍ୟ ସମାଜର ଏକ ନଗ୍ନ ପ୍ରତିଛବି ଅଙ୍କନ କରିବାରେ ଔପନ୍ୟାସିକଙ୍କର ସଫଳତା ବାସ୍ତବିକ ଲକ୍ଷ୍ୟଣୀୟ । ଧନ ଓ କୂଟନୀତି ବଳରେ ମଣିଷ ନିଜର ମାନବିକତା ହରାଏ । କୂଟନୀତି ପ୍ରୟୋଗ କରି ଶ୍ରୁତିଭଦ୍ରଙ୍କ ପିତା ଭଳି ତଥାକଥିତ ଭଦ୍ରବ୍ୟକ୍ତିମାନେ ସ୍ୱାମୀ ନିକଟରୁ ସ୍ତ୍ରୀକୁ ଦୂରେଇ ନେଇ ନିଜର କାମନା ଚରିତାର୍ଥ କରନ୍ତି । ପରିଣାମରେ ରେବତୀ ଭଳି ଝିଅମାନେ ପିତୃମାତୃ ସ୍ନେହରୁ ବଞ୍ଚିତ ହୋଇ ଅନାଥାଶ୍ରମର ଜୀବନଧାରାକୁ ଆଦରି ନେଇ ନାରୀ ସୁଲଭ ଗୁଣ ଓ ସ୍ୱାଭାବିକତାକୁ ମଧ୍ୟ ପରିତ୍ୟାଗ କରିବାକୁ ବାଧ୍ୟ ହୁଅନ୍ତି । ମିଷ୍ଟର ଶର୍ମା ଓ ବ୍ୟାନାର୍ଜିଙ୍କ ପରି ମୁଖାଧାରୀ ନାରୀମାଂସ ଲୋଲୁପ ବ୍ୟକ୍ତିମାନେ ଅଯାଚିତ ସାହାଯ୍ୟ ପ୍ରଦାନ କରିବାକୁ ଅପରିଷ୍କାର ଅନ୍ଧକାର ଗଳିରେ ପାତ-ଦେବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ । ଭଦ୍ରତାର ଆବରଣ ତଳେ ଏହି ନିର୍ଲଜ ଆଚରଣ; ଶୋଷକ ଆଉ ଶୋଷିତର ଚିରନ୍ତନ ସମସ୍ୟା, ସମସ୍ୟାର ସମାଧାନ ପାଇଁ ଦରଦୀ ବିପ୍ଳବୀ ପ୍ରାଣର ପ୍ରଚେଷ୍ଟାକୁ ଅଙ୍କନ କରିବାରେ ଔପନ୍ୟାସିକଙ୍କର ଲେଖନୀ ସତତ ମୁଖର ।

ଆତ୍ମକଥନ ଶୈଳୀରେ ଲିଖିତ ଏଇ ଉପନ୍ୟାସଟିରେ ପାଠକ ଆଦ୍ୟରୁ ପ୍ରାନ୍ତପାଏ ନାୟକ ଶ୍ରୁତିଭଦ୍ର ଓ ନାୟିକା ରେବତୀକୁ ପ୍ରତି ପୃଷ୍ଠାରେ ଭେଟିଛନ୍ତି । ନାୟକ ନାୟିକାଦ୍ୱୟଙ୍କର ନୀରବ ପ୍ରେମ ସାଧନା ଓ ପ୍ରେମର ସୁ-ପରିଣତି ପରିପ୍ରକାଶ ଉପନ୍ୟାସର ଯଥେଷ୍ଟ ମୂଲ୍ୟ ବୃଦ୍ଧି

କରିଛି । ଏହି ଦୁଇ ମୁଖ୍ୟ ଚରିତ୍ର ସହ ଅନ୍ୟ କେତେକ ଗୌଣ ଚରିତ୍ରର ଯଥାଯଥ ସମାବେଶ ତଥା ଉପନ୍ୟାସର ସ୍ୱଚ୍ଛ ଭାଷାର ସମାରୋହ ଉପନ୍ୟାସଟିକୁ ବେଶ୍ ସୁଖପାଠ୍ୟ କରିଛି ।

ରୂପକ ଓ ଚିତ୍ରକଳ୍ପର ସଫଳ ପ୍ରୟୋଗ, ଘଟଣାମୁଖୀ ଭାଷା ଓ ବଳିଷ୍ଠ ସଂଳାପ ପରିବେଷଣରେ ଔପନ୍ୟାସିକଙ୍କର ଦକ୍ଷତା ଉପନ୍ୟାସର କଳାତ୍ମକ ମୂଲ୍ୟ ବୃଦ୍ଧି କରିବାରେ ସାହାଯ୍ୟ କରିଛି । ନିମ୍ନରେ ତାର କେତେକ ଉଦାହରଣ :—

ରୂପକ ଓ ଚିତ୍ରକଳ୍ପ :

୧ । ବାଆ ବତାସର ସୁ ସୁ ଶବ୍ଦ ଭିତରେ କେବେକେବେ କେଉଁଠି ଯକ୍ଷ୍ମାରୋଗୀଟାଏ କାଶିଲାପରି ପୁଙ୍ଗାଟାର ଭଙ୍ଗାଭଙ୍ଗା ଶବ୍ଦ । (ପୃ—୧)

୨ । ନାଲେଇ ପାଲେଇ ହୋଇ କୋଉଥିରେ ସେ ନିଜେ ଆସି କ୍ଷମା ମାଗେ, ଜବରଦସ୍ତ ଭିତର ଘରେ ପଶେ, ପୋଷା ବିଲେଇଟି ପରି । (ପୃ—୨)

୩ । ଟାଙ୍ଗା, ରିକ୍ସା ଆଉ ଟାକ୍ସି ବାଲାଙ୍କ ହିଂସ୍ର ଲୋଲୁପ ଦୃଷ୍ଟି, ଜୀଅନ୍ତା ବାଘପରି କଟମଟ କରି ଚାହିଁ ସୁଯୋଗ ଉଣ୍ଡୁଛି ଝାମ୍ପି ନେବାକୁ । (ପୃ—୧୦)

୪ । ବର୍ଷାର କଳା ଆକାଶ ପରି ସନ୍ଦେହ ଆଉ ଚିନ୍ତାରେ ଭାରାକ୍ରାନ୍ତ । (ପୃ—୧୮)

ଭାଷା ଓ ସଂଳାପ :

ରେବତୀ :—ମଣ୍ଡାପଲ ଭୂତମାନେ, ମଣ୍ଡା ଝୁମ୍ପି ଖାଇବାର ଆଦତ ସିଏ ଭୂତମାନଙ୍କର ?

ରେବତୀ :—ଲୋକ ଗୁଣ୍ଡାଙ୍କ ହାଣ୍ଡିଆ ଖାଇ ମାତାଲ ହୋଇ ପାରନ୍ତି, ମାତ୍ର ଏମାନଙ୍କ ମନରେ କାହାର ସର୍ବନାଶ କରିବାର କୂଟ ଚକ୍ରାନ୍ତ ନାହିଁ ।

ଝିଙ୍କା ଓଠର, ସାଇତ ସୁଇତ, ଫିଙ୍ଗା, ଫୁଙ୍କୁଲା, ନାଳେଇ ଘାଳେଇ, ହାଉ ହାଉ, କାଇଲ କାଇଲ ହବ, ଧୁମାଳିଆ ଧୁମ ହିଆ ମୂର୍ଖ, ନଙ୍ଗର ଫଙ୍ଗର, ଗୁଇ ଗୁଇଆ, ଗାଧୁଆ ଘାଧୁଆ, ଚଟପଟ୍—ଏ ପ୍ରକାର ଶବ୍ଦର ବହୁଳ ବ୍ୟବହାର ଉପନ୍ୟାସରେ ଦେଖିବାକୁ ମିଳେ ।

ପାଶ୍ଚାତ୍ୟମୁଖୀ ଭାଷା ପ୍ରୟୋଗ କରିବାକୁ ଯାଇ ଔପନ୍ୟାସିକ ନରହର ଗୁରୁଆ ଓ ଟାଙ୍ଗାବାଲା ଆଦିଙ୍କ ମୁହଁରେ ନିମ୍ନୋକ୍ତ ଗ୍ରାମ୍ୟ ଶବ୍ଦର ପ୍ରୟୋଗ କରିଛନ୍ତି :—

ଇସ୍‌ଟିସନ୍ (Station), ଫେସେ (ଘୁଞ୍ଚି), ଡ଼ିପାର୍ଟ (Department), ଟିକଟ (Ticket), ମିଣ୍ଟି (Minute), କୁମ୍ପାନୀ (Company), କାମ୍ରାସକଟର (କଣ୍ଟ୍ରାକ୍ଟର), ପରଚେ, ବେଇଗି, ବେଉସା, ଅପସମାର, ମାବ, ଯୁ ଅନାରୁର, ଝଟ ଇତ୍ୟାଦି ।

ଉପନ୍ୟାସର ଅନ୍ତିମ ପର୍ଯ୍ୟାୟରେ କୋର୍ଟ ଦୃଶ୍ୟ ବର୍ଣ୍ଣନାରେ ଔପନ୍ୟାସିକଙ୍କର ଦକ୍ଷତା ପାଠକର ଦୃଷ୍ଟି ଆକର୍ଷଣ କରିଥାଏ ।

ସାମଗ୍ରିକ ଭାବେ ଆଲୋଚନା କଲେ "ସେଇ ଅଲୁଅ ପାଇଁ" ଉପନ୍ୟାସଟି ଯେ ଶ୍ରୀଯୁକ୍ତ ନାୟକଙ୍କର ଏକ ଅନୁପମ କୃତି, ଏଥିରେ ସନ୍ଦେହ ନାହିଁ ।



ଅଧ୍ୟାପିକା, ଓଡ଼ିଆ ବିଭାଗ
ସରକାରୀ ମହିଳା ମହାବିଦ୍ୟାଳୟ
ପୁରୀ

# ଯୁଗ ସନ୍ଧିର ସାହିତ୍ୟ



ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର

( 'ଭୁଲିଲି ପଛେ ପକ୍ଷୀ' ଉପନ୍ୟାସକୁ ଭିତ୍ତିକରି )

ସେତେବେଳେ ଓଡ଼ିଆମାନେ ଭାରତ ମାନଚିତ୍ରରେ ନିଜପାଇଁ ଏକ ସ୍ଥାନର ସନ୍ଧାନ କରୁଥିଲେ । ବଙ୍ଗଳା ପ୍ରେସିଡେନ୍‌ସି ଅଧୀନରେ ଥିବା ସମସ୍ତ ଓଡ଼ିଆଭାଷୀ ଅଞ୍ଚଳ ଶିକ୍ଷା, ସାହିତ୍ୟ, ସଂସ୍କୃତି, ଶିଳ୍ପ ଓ ବାଣିଜ୍ୟରେ ଯେ ଭାରତୀୟ ସ୍ତରର ବହୁ ନିମ୍ନରେ ଥିଲା, ତାହାର ସହ ଯୋଡ଼ି ହୋଇ ରହିବାଦ୍ୱାରା ମଧ୍ୟ ଅବସ୍ଥା କିଛି ବଦଳିଲା ନାହିଁ । ତେଣୁ ୧୯୦୩ ମସିହାରୁ ଉତ୍କଳ ସମ୍ମିଳନୀର ନେତୃତ୍ୱରେ ଯେଉଁ ଆନ୍ଦୋଳନର ଆରମ୍ଭ ହୋଇଥିଲା, ୧୯୩୦ ପରେ ପରେ ତାହା ବ୍ୟାପକତର ହେବାକୁ ଆରମ୍ଭ କଲା । ସେତେବେଳେ ଜାତୀୟତାର ଅର୍ଥଥିଲା ଉତ୍କଳୀୟତା ଏବଂ ଦେଶାତ୍ମବୋଧ ଥିଲା ପୂର୍ଣ୍ଣାଙ୍ଗ ଉତ୍କଳର ସ୍ୱପ୍ନ । ଏହି ସ୍ୱପ୍ନ ପ୍ରଥମେ ଦେଖିଲେ ସତ୍ୟବାଦୀ ଗୋଷ୍ଠୀର କବିଗଣ ଏବଂ ତାହାର ବାହକ ଥିଲେ ସତ୍ୟବାଦୀ, ସହକାର, ମୁକୁର, ନବଭାରତ ଓ ଉତ୍କଳସାହିତ୍ୟ ପ୍ରଭୃତି ପତ୍ରିକା । ଏ ସ୍ୱପ୍ନ ଯେତେବେଳେ ବହୁ ଯୁବ ସାହିତ୍ୟିକଙ୍କ ମାନସକୁ ଉଦ୍‌ବେଳିତ କରୁଥିଲା ଓ ଏହି ମାନସର ଅନ୍ୟତମ ଅଧିକାରୀ ଥିଲେ ଔପନ୍ୟାସିକ ଶ୍ରୀ ଲକ୍ଷ୍ମୀଧର ନାୟକ ।

'ଭୁଲିଲି ପଛେ ପକ୍ଷୀ' ଲକ୍ଷ୍ମୀଧରଙ୍କର ଦ୍ୱିତୀୟ ପ୍ରକାଶିତ ଉପନ୍ୟାସ । ୧୯୩୪ ମସିହାରେ ତାଙ୍କର ପ୍ରଥମ ଉପନ୍ୟାସ 'ଉଦ୍‌ଭ୍ରାନ୍ତ' ପ୍ରକାଶ ପାଇବା ପରେ ପରେ ସେହିବର୍ଷ 'ସହକାର'ର ସମ୍ପାଦକ

ଶ୍ରୀଯୁକ୍ତ ବାଳକୃଷ୍ଣ କରଙ୍କ ପ୍ରେରଣାରେ ଏହି ଉପନ୍ୟାସଟି ପ୍ରକାଶ ପାଇଲା ବୋଲି ସେ ସ୍ୱୀକାର କରିଛନ୍ତି । ଶ୍ରୀଯୁକ୍ତ ନାୟକ ଲେଖା ଆରମ୍ଭ କଲ-ବେଳକୁ ଓଡ଼ିଶାରେ ସବୁଜ ଗୋଷ୍ଠୀର ଉଦୟ ହୋଇଗଲାଣି । ସବୁଜ ଆଦର୍ଶ ଥିଲା ବହିର୍ମୁଖୀ । କେତେକ ଦୃଷ୍ଟିକୋଣରୁ ପାଶ୍ଚାତ୍ୟବାଦ ଆଦର୍ଶର ଏହା ସମ୍ପୂର୍ଣ୍ଣ ପ୍ରତିଫଳିତ । ଏହି ନବଆଦର୍ଶ ତନ୍ତ୍ରରେ ଉତ୍କଳୀୟ ପ୍ରାଚୀନ ସାହିତ୍ୟ, ସଂସ୍କୃତି, ଐତିହ୍ୟ ବା ପରମ୍ପରା ଉପେକ୍ଷଣୀୟ । ଭବିଷ୍ୟତ ସମାଜ ଗଠନପାଇଁ ଏଗୁଡ଼ିକ ସମ୍ପୂର୍ଣ୍ଣ ଅନାବଶ୍ୟକ । ଓଡ଼ିଶାକୁ ଏକ ନୂତନ ପ୍ରଗତିଶୀଳ ରାଷ୍ଟ୍ର ରୂପେ ଗଢ଼ିବାକୁ ହେଲେ ବାହ୍ୟଜଗତରୁ ଆସୁଥିବା ଚିନ୍ତାଧାରା ଓ ଦର୍ଶନବାଦକୁ ସ୍ୱାଗତ କରିବାକୁ ହେବ । ନିଜ ସାହିତ୍ୟରେ ଏହି ଆଦର୍ଶର ନିଖୁଣ ପ୍ରତିଫଳନ ଏମାନେ କରିଥିଲେ ଏବଂ ନିଜ ସାହିତ୍ୟ ନିଜସ୍ୱର ପାଶ୍ଚାତ୍ୟ ଓ ପ୍ରଗତିଶୀଳ ପଥର ଝରକାଗୁଡ଼ିକ ଏମାନେ ଖୋଲି ରଖିଥିଲେ । କହିବା ବାହୁଲ୍ୟ, ଏମାନଙ୍କ ଉପରେ ଯେ କେବଳ ବ୍ୟାକନ୍, ହେଗେଲ ପ୍ରଭୃତିଙ୍କ ବୈଜ୍ଞାନିକ, ବସ୍ତୁବାଦୀ ଦର୍ଶନର ବା ମାର୍କ୍ସୀୟ ସାମ୍ୟବାଦର ପ୍ରଭାବ ପଡ଼ିଥିଲା ତାହା ନୁହେଁ, ସେ ସମୟରେ ବଙ୍ଗଳାରେ ପ୍ରସିଦ୍ଧି ଅର୍ଜନ କରିଥିବା ସାହିତ୍ୟିକମାନଙ୍କର ସମାଜ ସଚେତନଧର୍ମୀ ଶୈଳୀର ପ୍ରଭାବ ମଧ୍ୟ ପଡ଼ିଥିଲା । ଲକ୍ଷ୍ମୀଧର ନିଜେ ପାଶ୍ଚାତ୍ୟବାଦୀ ଓ ସବୁଜ ଏଇ ଦୁଇ ପ୍ରତିଫଳିତ ମୁଖୀ ଆଦର୍ଶବାଦର ଦାୟାଦ । ତେଣୁ ଆମେ ତାଙ୍କ ଉପନ୍ୟାସରେ ଦେଖୁ, ପାଠକ ପ୍ରାଣରେ ଉଗ୍ର ଉତ୍କଳୀୟତା ଜାଗରଣ ପାଇଁ ପ୍ରବଳ ଆବେଦନ ସାଙ୍ଗକୁ ସଂସ୍କାରମୂଳକ ଆନ୍ଦୋଳନ ପାଇଁ ପ୍ରଚୁର ଖୋରାକ୍ ।

ଉପନ୍ୟାସଟିର ବିଷୟବସ୍ତୁ ଓ ଗଠନ ଶୈଳୀ ଦୃଷ୍ଟିରୁ ବିଚାର କଲେ ଏହା ଚାଳିଶ ବର୍ଷ ତଳର ଓଡ଼ିଆ ଉପନ୍ୟାସର ଅନୁଭୂତି ଓ ଘଟଣା ପ୍ରବାହର ସ୍ୱାକ୍ଷର ବହନ କରେ । ରେଭେନ୍ସା କଲେଜରେ ପ୍ରଥମ ବର୍ଷରେ ଦୁଇଟି ନବଯୁବକଙ୍କ ବନ୍ଧୁତ୍ୱ ମଧ୍ୟରୁ ଆରମ୍ଭ ହୋଇ ବିଷୟବସ୍ତୁ ଗଢ଼ି ଯାଇଛନ୍ତି ନାୟକ ନାୟିକାର ପ୍ରଥମ ଦର୍ଶନ, ନବାନୁରାଗ, ଲଜ୍ଜିତ ସାନ୍ନିଧ୍ୟ, ଉତ୍କଣ୍ଠା, ଲମ୍ବା ଲମ୍ବା ପତ୍ରାଳାପ ମଧ୍ୟଦେଇ । ତାପରେ ଆସିଛି ବିରହ, ଜନ୍ମିଛି ଭୁଲବୁଝା । ବହୁଦିନର ଅଦର୍ଶନ ପରେ ନାୟକ

ହାତରେ ଖୋଜିବୁଲିଛି ନାୟିକା ଲୀଲାକୁ ଉତ୍କଳ ପ୍ରସ୍ଥାନ ଭିତରେ ଭାରତର ବହୁ ନଗରେ ଓ ଜନପଦରେ । ଶେଷକୁ ଦିନେ ସାକ୍ଷାତ୍ ହୋଇଛି କିନ୍ତୁ ଅତି ଅସ୍ୱାଭାବିକ ପରିସ୍ଥିତିରେ ଅନ୍ୟ ଜଣେ ବ୍ୟକ୍ତିଙ୍କର ପତ୍ନୀ-ଭାବରେ । ଏହି ସାଧାରଣ ବିଷୟବସ୍ତୁର ପୁସ୍ତକଟି କିନ୍ତୁ ୧୯୩୯ରୁ ୧୯୫୦ ମଧ୍ୟରେ ବିଭିନ୍ନ ପ୍ରକାଶକଙ୍କ ଦ୍ୱାରା କୋଡ଼ିଏଟି ସଂସ୍କରଣରେ ପ୍ରକାଶ ପାଇବା (ନୂତନ ସଂସ୍କରଣର ପ୍ରକାଶକଙ୍କ ମୁଖବନ୍ଧ) ଏହାର ସୂଚନା ଦିଏ ଯେ ସାଧାରଣ ଓଡ଼ିଆ ପାଠକ ପାଠିକାମାନଙ୍କ ପାଇଁ ଏଥିରେ ସମସ୍ତୋପଯୋଗୀ ଖୋରାକ୍ ଥିଲା ।

ଉପନ୍ୟାସର ଆରମ୍ଭରେ ପଚିଶବର୍ଷ ତଳର ଓଡ଼ିଶା ଓ ବିଶେଷ କରି କଟକ ସହରର କେତେକ ବାସ୍ତବ ଓ ସତ୍ୟାଶ୍ରୟୀ ଘଟଣାପ୍ରବାହର ଚିତ୍ର ଦିଆଯାଇଛି । କଲେଜ ଜୀବନର ଚିତ୍ର, ରେଭେନ୍ସା କଲେଜ ଓ ମେଡ଼ିକାଲ ସ୍କୁଲ ମଧ୍ୟରେ କ୍ରୀଡ଼ା କ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱିତା, ସ୍ୱାଧୀନତା ଆନ୍ଦୋଳନର ଧାରା ଯେ ଆନ୍ଦୋଳନରେ ଗୁପ୍ତରେ ଯୋଗ ଦେଇଥିବା ତତ୍କାଳୀନ ପୋଲିସ୍ ଅଫିସରଙ୍କ ପୁଅର ଆତ୍ମହତ୍ୟା ପ୍ରଭୃତି । ତା'ଛଡ଼ା ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ସେତେବେଳେ ପ୍ରତିଷ୍ଠିତ କେତେକ ବ୍ୟକ୍ତିବିଶେଷଙ୍କ ନାମ ଓ କାର୍ଯ୍ୟାବଳୀର ଉଲ୍ଲେଖ ମଧ୍ୟ ଉପନ୍ୟାସର ବିଷୟବସ୍ତୁକୁ ବାସ୍ତବତାର ରଙ୍ଗରେ ରଞ୍ଜିତ କରିଛି । ମନେହୁଏ ଏହି ପୂର୍ବ ପଚିଶ ବର୍ଷ ମଧ୍ୟରେ ଲେଖକ ପୁସ୍ତକଟିର କଳେବରକୁ କିଞ୍ଚିତ ପରି-ବର୍ତ୍ତନ, ପରିବର୍ଦ୍ଧନ ଓ ଆଧୁନିକୀକରଣ କରିବାର ପ୍ରଚେଷ୍ଟା କରିଛନ୍ତି । ଆଧୁନିକ ଯୁଗରେ ବ୍ୟବହୃତ କେତେକ ପ୍ରସାଧନ ଦ୍ରବ୍ୟ, ଚିକିତ୍ସା କ୍ଷେତ୍ରରେ ଆଣ୍ଟିବାଇଓଟିକ୍ସ, ଲକ୍ଷାଧିକ ଲୋକସଂଖ୍ୟା ବିଶିଷ୍ଟ କଟକ ନଗରୀ ଓ ସିମଲା ପ୍ରଭୃତି କେତେକ ଉତ୍ତର ଭାରତୀୟ ନଗରର ଆଧୁନିକ ରୂପ ଉଲ୍ଲେଖରୁ ମନେହୁଏ ଲେଖକ ସମ୍ଭବତଃ ୧୯୫୦ ପରେ ଏଥିରେ ଅଧିକ କିଛି ଆଲୋକ ଦେଇଛନ୍ତି ।

ପ୍ରେମ ଓ ପ୍ରେମ ଜନିତ ମାନସିକ ଦ୍ୱନ୍ଦ୍ୱ ଉପନ୍ୟାସର କେନ୍ଦ୍ରୀୟ ବିଷୟ । ପ୍ରେମର ପ୍ରଥମ ଆବେଗ ବର୍ଣ୍ଣନାରେ ଭାଷା ଅତ୍ୟନ୍ତ ସାବଲୀଳ ଓ କବିତ୍ୱପୂର୍ଣ୍ଣ । "ଏଇରେ ତେବେ ପାହାଡ଼ୀ ଝରଣା ଛୁଟିବାର ଅବକାଶ

ଉଠରେ ପୁଳ ପୁଳ ସବୁ ବାଧା ବନ୍ଧନକୁ ହଠାତ୍ ଦିନେ ଚୂର୍ମାର କରି ଛୁଟିଆସେ ବାହାରକୁ କଳକଳ ନିନାଦରେ ।

ଏକେଟରି ତେବେ ମେଘଦୁଅ ଆକାଶର ଉପାନ୍ତମଧ୍ୟ ଥରି ଥରି ଫାଟି ପଡ଼େ ବଜ୍ର ନିର୍ଘୋଷରେ । ଅନାଡ଼ ଦିଏ ମୂଷଳଧାରାରେ ବର୍ଷାର ଅସର ।

ଏଣେ ଏଇ ତେବେ ମନର ସବୁ ଅଭିଯୋଗ ଆଉ ଅଭିମାନ, କୋହକୁ ତାହାର ପରି ମର୍ମଗତ ହୋଇ ଉଠେ ହୃଦୟବୀଣାର ତାରେ ତାରେ ।"
× × (ପୃ ୧୩୮)

ଆଧୁନିକ ଓ ଆଦ୍ୟ ଉପନ୍ୟାସ ଲିଖନ ସ୍ତରେ ଏକ ସମନ୍ୱୟ ଲେଖକଙ୍କ ବର୍ଣ୍ଣନା ମଧ୍ୟରୁ ବାରିହୋଇ ପଡ଼େ । ସାମାଜିକ ବିଶ୍ଳେଷଣ ମଧ୍ୟରେ ଆଧୁନିକତାର ଆଭାସ ଥିବାବେଳେ ନାୟକ ନାୟିକାଙ୍କର ଆଦ୍ୟ ପ୍ରେମାନୁରାଗ ସୂଚକ ଅନୁଶୀଳନ, ପ୍ରେମପତ୍ର ଲିଖନ ଓ ନାୟିକାର ଅଙ୍ଗ ଶୋଭା ବର୍ଣ୍ଣନାରେ ପ୍ରାଚୀନତାର ପ୍ରଭାବ ସୁସ୍ପଷ୍ଟ । କେବେ କେବେ ତାହା ସ୍ୱତନ୍ତ୍ରୀୟ କାବ୍ୟ ଶୈଳୀର ସ୍ମରଣ କରାଇ ଦିଏ—କୁଞ୍ଚିତ କେଶ-ଦାମରେ ମେଘର ମାଧୁରୀ, ଉତ୍‌କ୍ରମ କପୋଳରେ ଗୋଧୂଳିର ବର୍ଣ୍ଣବିଭା, ଆଖିର ଡୋଳାରେ ଚନ୍ଦ୍ରଂଚର ନିଷ୍ଠା, ନାସାଗ୍ରରେ ଆକାଶର ସୌନ୍ଦର୍ଯ୍ୟ, ଓଠରେ ଗୋଲାପର କମ୍ପନ, ବକ୍ଷଯୁଗଳରେ ଗିରିଶୃଙ୍ଗର ଲାବଣ୍ୟ, କଟି ମେଖଳାରେ ସିଂହଶାବକର ସୌକୁମାର୍ଯ୍ୟ, ପୁଣି ନିତମ୍ବର ରହସ୍ୟକୁ ନେଇ × × " (ପୃ ୧୪୦)

ସବୁ ଲେଖକପ୍ରିୟ ଉପନ୍ୟାସ ପରି ଏଥିରେ ମଧ୍ୟ ପ୍ରେମ ମଧ୍ୟରେ ଶୃଙ୍ଗାରିକ ଭାବ ଅବସ୍ଥିତ । ସ୍ଥାନେ ସ୍ଥାନେ ସେଇ ଶୃଙ୍ଗାର ପ୍ରତିଚ୍ଛବିର ସମତ ଓ ଲଳିତ, ଅବଲମ୍ବିତ ପଦପ୍ରକାଶ ଘଟିଛି—"ମୁହଁର ଗୋଟିଏ ପାଳ ମୋ ଅଧିକ, ଓଠର ଅଧେ, ଚିବୁକରୁ ଟିକିଏ, ଆଉ ବେକର କିଛି ଅଂଶ, ଯାହା ତଳକୁ ତେଜ୍‌ଠା ଲମ୍ବି ଆସିଥିବା ବ୍ଲାଉଜ୍ ଭିତରେ ପଶିଯାଇଛି, କୋଉପର୍ଯ୍ୟନ୍ତ ସାହିତ୍ୟ ଅନୁମାନ କରି ହୁଏନି, ତେବେ ବି ଶାଢ଼ୀର ସଙ୍କୁଚିତ ଶୀର୍ଣ୍ଣରୀପାଖେ ଏପଟେ ଏକ ପୃଷ୍ଠ ଆଭା ଝଲମଲ କରୁଛି,

ଦୃଷ୍ଟି ପଡ଼ିଲମାତ୍ରେ କେତେ ଗୋଟାଏ ଅସ୍ପୃଶ୍ୟ ଶିହରଣରେ ଶିହରି ଉଠନ୍ତି ଦେହ, ହାତ ।

ଏଇ ଗୋଟିଏ ମୁହୂର୍ତ୍ତ, ଜଳଧାର ବର୍ଷି ଜାଳିଦେବାରେ ଶକ୍ତି ଯାହାର ସାଙ୍ଘାତିକ, କାମନାର ମୃଦଙ୍ଗ ବଜାଇବାରେ କୌଶଳ ଯାହାର ଅଲୌକିକ, ବାସନାର ଫୁଲ ଫୁଟାଇବାରେ ପ୍ରଭାବ ଯାହାର ଆକସ୍ମିକ, ସବୁ ସାବଧାନତା ସତ୍ତ୍ୱେ, ସମ୍ଭ୍ରମ ହରାଇ ନଇଁ ପଡ଼ିବାକୁ ବାଧ୍ୟହୁଏ ଆତ୍ମା ପୁରୁଷ ।" (ପୃ ୧୮୦)

ତଥାପି ସ୍ଥାନେ ସ୍ଥାନେ ଦେହ ଶୃଙ୍ଗାର ଚେତନା କହିତ ଉଗ୍ର-ତର ଓ ସମ୍ଭୋଗମୁଖୀ । ୧୯୩୮ରେ ଜଣେ ତରୁଣ ଗାଳ୍ପିକଙ୍କ ଉଦ୍ଦାମତା ସ୍ୱୀ ନିମ୍ନୋକ୍ତ କେତେକ ପଙ୍କ୍ତିରେ ପ୍ରତିଫଳିତ "ବଡ଼ ଆଇନାଟା ସାମନାରେ ଠିଆ ହୋଇ ବେଣୀ ଫିଟାଉଥିଲା ସଲିଳା । କାନ୍ଧ ପାଖରୁ ହୋଇ ଶାଢ଼ୀଟା ଖସି ଯାଉଥିଲା ଟିକିଏ ଆଗରୁ, ମୁଁ ଘର ଭିତରକୁ ପଶିଗଲା-ବେଳେ, ତାକୁ ଉଠେଇ ନେଇ ପୁଣି ଗୁଞ୍ଜିଦେଉଥିଲା ବେକ ବ୍ଲାଉଜ ପାଖରେ । କିନ୍ତୁ ତା ପିଠି, ତା ଅଣ୍ଟା, ଆଉ ପାଦଠୁ ମୁଣ୍ଡପାଏଁ ଚହଟୁଥିବା ସେଇ ଲାବଣ୍ୟ, ସେ ସବୁକୁ ଏମିତି ପୁଞ୍ଜୁଳାଇବା ମତେ ଡାକିଲା ସେ କେମିତି ଘର ଭିତରକୁ, ହବ ଅସ୍ପୃଶ୍ୟ ହେଲି × ×

ଦୁଆର ପଟକୁ ପିଠିକରି ଠିଆ ହୋଇଥିଲା ସେ । ମତେ ଦେଖି-ପାରୁଥିଲା ଆଇନାରେ । ଅଉ ମୁଁ ଦୁଆର ମୁହଁରୁ ତା ମୁହଁ ଅଉ ଛାତିର ପ୍ରତିବିମ୍ବ, ନଗ୍ନ କଠୋର ।" (ପୃ ୧୮୮)

ଉପନ୍ୟାସର ଗଳ୍ପାଂଶଟି ମୁଖ୍ୟତଃ ପ୍ରେମ ମୂଳକ ହେଲେ ମଧ୍ୟ ବର୍ଣ୍ଣନା ମାଧ୍ୟମରେ ଜାତୀୟତା, ବିଶେଷକରି ଉତ୍କଳୀୟ ପ୍ରେମ ଚେତନା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ନାୟିକା ଲଳିତାର ପରିବାରକୁ ଲେଖକ ଏକ ଅତ୍ୟାଧୁନିକ ପ୍ରଗତିଶୀଳ ଓଡ଼ିଆ ପରିବାର ରୂପେ ଚିତ୍ରଣ କରି ତାହାର ପ୍ରତ୍ୟେକ ବ୍ୟକ୍ତିକ ବକ୍ତବ୍ୟ ଓ ଚିନ୍ତାଧାରାରେ ଓଡ଼ିଶାର ବିଭିନ୍ନ ଅନୁଷ୍ଠାନ, ଶିଳ୍ପକଳା, ଦର୍ଶନୀୟ ସ୍ଥାନ ଓ ଇତିହାସ ଧର୍ମକର୍ମର ବିଶଦ ବ୍ୟାଖ୍ୟା କରାଇଛନ୍ତି । ପୁସ୍ତକ ରଚନା ସମୟରେ ଓଡ଼ିଶା, ବିହାର

ଦନ୍ଦ ମିଶିକର ଥିବ । ତେଣୁ ସଲିଳା, ତା'ର ପିତା ରଜନୀ ବାବୁ ଓ ନାୟକ ସାଗରର କଥାବାର୍ତ୍ତା ଦେଲେ ଦଳିତାର ବିଂଶ ଘମାନଙ୍କ ପ୍ରତି ଆକ୍ଷେପ ପ୍ରଣିଧାନ ଯୋଗ୍ୟ ।

"—ସାରା ବଜାରରେ ଉଗ୍ର ପ୍ରାଦେଶିକତା ଭିତରେ ନିଜର ଦାବୀ ହାସଲ କରିବାର କି ସାଙ୍ଘାତିକ ପ୍ରଚେଷ୍ଟା ଚାଲିଛି, ଯେମିତି ତ ବାପା ! ସେମାନେ କି ଭୀଷଣ ସଙ୍ଗଠିତ × × ତୁମେ ହିନ୍ଦି ଜାଣି ନଥିଲେ ବି ସେମାନେ ଇଂରେଜୀରେ ନ କହି ସେହି ହିନ୍ଦିରେ, ତାଙ୍କର ଭାଷାରେ କହି ଚାଲିବେ, ତୁମେ ବୁଝ ନ ବୁଝ ।

+ + +

—ଏଠି କିନ୍ତୁ ଅଣ-ଓଡ଼ିଆଙ୍କୁ ଅଭିନନ୍ଦନ ଜଣାଇ ବାଣିଜ୍ୟ, ବେପାର, ଶାସନ, ସଂସ୍କୃତି ସବୁ କିଛିରେ ସେମାନଙ୍କ କର୍ତ୍ତୃତ୍ୱ ଜାହିର କରିବାକୁ ଛୁଟି ଦେବାରେ ଆମ୍ଭମାନଙ୍କର ଦବଦାରର୍ଯ୍ୟ ଉଦାର ଭାବ ।

(ପୃ ୭୦)

ମଧୁରମାଳମ ଓଡ଼ିଶାର ବଉଳ ବଣିଜ ବୁଲି ଦେଖୁଥିବାବେଳେ ନାୟକ ଓ ନାୟିକା ମୁଗ୍ଧ ହୋଇଛନ୍ତି ଏବଂ ତା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିର ବର୍ତ୍ତମାନର ଦୟନୀୟ ଅବସ୍ଥାରେ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି—

× × କୋଣାର୍କ ଭାଙ୍ଗିଗଲାଣି, ଖଣ୍ଡେ ପଥର ଉଠେଇ ଖଞ୍ଜିଦବାର ବୁଦ୍ଧି ଅଛି ? ବଙ୍ଗଳା ବଜାରରେ ଆମକୁ 'ଉଡ଼େ' କହି ଲାଞ୍ଛିତ କରାଯାଉଛି, ଏଠି ତା'ର ପ୍ରତିକ୍ରିୟା ଅଛି ? ଖାସ୍ କଟକ ସହରରେ ବେପାର ବାଣିଜ କରି ଲକ୍ଷ ଲକ୍ଷ ଲୁଟି ନେଇ ଯାଉଚନ୍ତି ଅନ୍ୟ ପ୍ରଦେଶର ଲୋକ, ପ୍ରତିରୋଧ କରିବାର ଶକ୍ତି ଅଛି କାହାଠି ? ଅଥଚ କଳିଙ୍ଗର ଐତିହ୍ୟ, ଓଡ଼ିଶାର ସ୍ଥାପତ୍ୟ ଶିଳ୍ପ, ଗଜପତି ବଂଶଧରର ଗର୍ବ ଗୌରବ ଏଇ ସବୁ ଭାଷଣ ପ୍ରସଙ୍ଗରେ କହି ବାହାପିଟା, ନିଶମୋଡ଼ା… "

(ପୃ ୧୬୧)

ଓଡ଼ିଶାର ଧାର୍ମିକ ଓ ଆଧ୍ୟାତ୍ମିକ ଗୌରବ ବିଷୟରେ ସତେ ଯେପରି ଲେଖକ ନିଜେ ନାୟକ ମଧ୍ୟରେ ପ୍ରବେଶ କରି ଚିନ୍ତା କରି ଲେଖିଛନ୍ତି—

"++ ଆମର ଶ୍ରେଷ୍ଠ ଉପାସ୍ୟ ଦେବତା ଜଗନ୍ନାଥ ପୁରାଣରେ ଥିବା ଶବର ଦେବତା ଭାବରେ ସ୍ୱୀକୃତ । ଓଡ଼ିଶାର ସଭ୍ୟତା ଜଗନ୍ନାଥଙ୍କୁ କେନ୍ଦ୍ର କରି । ଭାରତର ବିଭିନ୍ନ ପ୍ରାନ୍ତରୁ ଶଙ୍କର, ଗୌତମ, ରାମାନୁଜ ପ୍ରଭୃତି ମହାପୁରୁଷମାନେ ନିଜ ନିଜ ଧର୍ମର ପ୍ରଚାର ଅଭି ପ୍ରେରଣା ପାଇଁ ପୁରୀଧାମକୁ ଆସିଛନ୍ତି । ଜଗନ୍ନାଥ ଧର୍ମ ସେଇଥିପାଇଁ ବୌଦ୍ଧ, ଶାକ୍ତ, ଶୈବ ଓ ବୈଷ୍ଣବ ଧର୍ମଦ୍ୱାରା ପ୍ରଭାବିତ । ନିଜର ଉଦାରତା-ଗୁଣରେ ଜଗନ୍ନାଥ ଧର୍ମ ଆଉ ସବୁ ତ ମଧ୍ୟ ବିଭିନ୍ନ ଧର୍ମର ମତାମତକୁ ନିଜର କରି ନେଇଛି ++" (ପୃ ୧୮୧)

ଏ ଶତକର ଏସୁ ଦଶକରେ ଭାରତରେ ବୈପ୍ଳବିକ ହିଂସା-କଳାପ ବିଶେଷତଃ ଗାନ୍ଧିଜୀଙ୍କ ନେତୃତ୍ୱରେ ଅହିଂସ ସ୍ୱାଧୀନତା ଆନ୍ଦୋଳନ ତୀବ୍ରତର ହୁଏଥାଏ ଏବଂ ତା ସଙ୍ଗେ ସଙ୍ଗେ ଦେଶର ବହୁ ଉଗ୍ରଦେଶ-ପ୍ରେମୀ ଯୁବକ ସଶସ୍ତ୍ର ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଉଥାଆନ୍ତି । ଓଡ଼ିଶାର କେତେକ ନେତାଙ୍କଠାରେ ମଧ୍ୟ ସୁଭାଷ ବୋଷଙ୍କ ଇଙ୍ଗିତରେ ସଶସ୍ତ୍ର ବିପ୍ଳବର ପ୍ରତିଧ୍ୱନି ଶୁଣାଯାଉଥାଏ । ଅହିଂସ ବିପ୍ଳବକୁ ସେମାନେ ପ୍ରତ୍ୟକ୍ଷରେ ବିଦ୍ରୂପ କରୁଥାଆନ୍ତି । ସେଇ ବିଦ୍ରୂପର ଧ୍ୱନି ଓ ସଶସ୍ତ୍ର ବିପ୍ଳବର ସଙ୍କେତ ଉପନ୍ୟାସର କେତେକ କ୍ଷେତ୍ରରେ ପ୍ରତିଫଳିତ; ବିଶେଷ କରି ପ୍ରଚେଷ୍ଟାଶୀଳତାର ପ୍ରତୀକ ବହୁରୂପିଣୀ ସଲିଳାର ମୁହଁରେ—ନା, ଦୟାର ସ୍ୱରାଜ ଆମର ଦରକାର ନାହିଁ । ଆମେ ସ୍ୱରାଜ ଚାହୁଁ, ସ୍ୱାଧୀନତା ଚାହୁଁ, ସେ ଆମର ହକ୍, ଜନ୍ମଗତ ଦାବୀ । କିନ୍ତୁ ସେଇଥିପାଇଁ ଆମେ ଯୁଦ୍ଧ ଭୂଇଁରେ ଶତ୍ରୁର ମୁକାବିଲା କରିବୁ ସାମନାସାମନି । 'ଭିକ୍ଷାବାଦୀ'ର ସ୍ୱାଧୀନତାକୁ ମୁଁ ପସନ୍ଦ କରେନା, ପ୍ରତ୍ୟାଖ୍ୟାନ କରେ ସେ ଧରଣର 'ଆଜାଦି'କୁ (ପୃ ୧୬୮)

ଉପରେ ଯେଉଁସବୁ ବିଷୟ ଉତ୍ଥାପନ କରିଥିଲେ ଲେଖକଙ୍କର ଚିନ୍ତାର ପରିବଳୟ ତାହାଠାରୁ ଅଧିକ ବ୍ୟାପକତର । ଓଡ଼ିଆ ସାହିତ୍ୟରେ ତାହାର ନିଜ ଅବସ୍ଥା, ସାହିତ୍ୟିକ ଶୈଳୀ, କବିତାର ଧର୍ମ ଓ ସଂଜ୍ଞା ସମ୍ପର୍କରେ ସେ ଚରିତ୍ର ମାନଙ୍କ ମୁଖରେ ବିସ୍ତୃତ ଆଲୋଚନା କରିଛନ୍ତି । ଉପନ୍ୟାସର ନାୟକ ନିଜେ ଜଣେ କେବଳ ଧୂମଲେଖିକା ନୁହେଁ, ସାହିତ୍ୟର ସମଝଦାର ଦ୍ରଷ୍ଟା । ସାଗରର କାବ୍ୟିକ ପ୍ରଚେଷ୍ଟା ହିଁ ତାକୁ ବେଶି ଆକର୍ଷିତ କରିଛି । ଆଜିର କାବ୍ୟ ସ୍ରୋତ ସମ୍ପର୍କରେ ନିଜର ମତାମତ ପ୍ରକାଶ କରି ଲେଖକ ଚଳିତା ମୁଖରେ କୁହାଇଛନ୍ତି—"ଆଜିର କାବ୍ୟ ସାହିତ୍ୟ ବାସ୍ତବ ଜୀବନର ଗୋଟିଏ ପ୍ରଧାନ ଅଂଶ । ସେଥିରେ ଯଦି ଆଗାମୀ ଜୀବନର ସ୍ୱପ୍ନ ନ ରହେ, ତେବେ ମନକୁ ଛୁଇଁବ କିପରି ? କବିତା କ'ଣ ଖାଲି ବାଡ଼ବ ବିରହରେ 'ମୁଁ ଲୁହେଁ' ସେ ଜନ୍ମ ବେଦନାର ଜ୍ୱାଳାରେ । ମଣିଷର ନିଃସଙ୍ଗତା ଆଜି ମାନସିକ ଯନ୍ତ୍ରଣାକୁ ଅସ୍ୱୀକାର କରିବା ପଥରେ ଯୋଉ ବୌଦ୍ଧିକ ସଙ୍ଘର୍ଷ, ତା'ର ଏକ ନୂତନ ଦିଗନ୍ତ ପ୍ରସାରିତ କରି-ଦିଅ ତୁମେ । ସେଠି ନ ରହୁ ସ୍ୱପ୍ନବିଳାସର ବର୍ଣ୍ଣବ୍ୟଞ୍ଜନା, ରହୁ ନବ-ଜାଗରଣର ରକ୍ତରାଗ ।" (ପୃ ୧୨୭)

ଲକ୍ଷ୍ମୀଧରଙ୍କର ସ୍ୱକୀୟ କବିପ୍ରାଣ ମଧ୍ୟ ଉପଯୁକ୍ତ ସୁଯୋଗ ବାଛି ନେଇ ନାୟକ ମଧ୍ୟଦେଇ ଆତ୍ମପ୍ରକାଶ କରିଛି ଲଳିତ କୋମଳ ମୂର୍ଚ୍ଛନାମୟୀ ବାଣୀରେ—

ଧବଳ ଝରର ପୁଟେ କଟକରେ
　　　　ପୁଷ୍ପରେ ବାସନା ମହକେ
ବୁଣିଦେଲେ ଟିକେ ଆଉ ଗୁହାଣୀରେ
　　　　ଦଶ ଦିଗ ମୋର ଝଲକେ
ଛୁଇଁଦିଏ ଯଦି ଖେଳ କଜ୍ଜଳକେ
ହସି ଝୁଲିଚାଲେ ଲଜ ଲଜ ମୁହେଁ
ଯେଉଁ ଠାଣି ଯେଉଁ ଭଙ୍ଗୀଟି ଆହା
　　　　ସପନେ ସପନେ ଚମକେ
ଭାବନାର ପଥେ ମୂର୍ତ୍ତିମୟୀ ସେ
　　　　ନାଚୁଛି ପଲକେ ପଲକେ

ଚରିତ୍ର ଚିତ୍ରଣ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ ଲେଖକ ପ୍ରେମକୁ ଉପନ୍ୟାସର ପ୍ରଧାନ ଉପଜୀବ୍ୟ କରିଥିବାରୁ ଦୁଇଟି ମୁଖ୍ୟ ଚରିତ୍ର ଅର୍ଥାତ୍ ନାୟକ ସାଗର ଓ ନାୟିକା ସଲିଳା ଚରିତ୍ରକୁହିଁ ଏକମାତ୍ର ପ୍ରାଧାନ୍ୟ ଦିଆଯାଇଛି । ଅନ୍ୟ ଉପନ୍ୟାସର ନାୟକମାନଙ୍କ ପରି ସାଗର ସର୍ବଗୁଣର ଆଧାର—ଦକ୍ଷ, ବୁଦ୍ଧିମାନ, ସୌମ୍ୟ, ନମ୍ର, କ୍ରୀଡ଼ାପ୍ରେମୀ ଓ ଓ ସଂସ୍କୃତି-ସମ୍ପନ୍ନ । ପ୍ରଥମାବସ୍ଥାରେ ଲେଖକ ତାକୁ କିଛି ପରିମାଣରେ ରକ୍ଷଣଶୀଳ ଓ ପରମ୍ପରାବାଦୀ ରୂପେ ଚିତ୍ରଣ କରିଛନ୍ତି । ପ୍ରେମ କ୍ଷେତ୍ରରେ ସେ ଖୁବ୍ ଭାବପ୍ରବଣ ଓ ପ୍ରଥମ ଦର୍ଶନର ପ୍ରେମିକ ।

ସମଗ୍ର ଉପନ୍ୟାସଟି ସାଗର ମୁଖରେ ପ୍ରଥମ ପୁରୁଷରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ସଲିଳା ଚରିତ୍ରଟିକୁ ଲେଖକ କେନ୍ଦ୍ରୀୟ ଚରିତ୍ର ରୂପେ ସମସ୍ତ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେ ଅତ୍ୟାଧୁନିକା, ପ୍ରଗତିଶୀଳା, ନିର୍ଭୀକା, ଦୁଃସାହସିକା ଏବଂ ଅନ୍ୟର ପ୍ରତିଭାର ସ୍ୱୀକୃତି ଦେବାରେ ଅତ୍ୟନ୍ତ ଆଗ୍ରହୀ । ଷାଠିଏ ଦଶକରେ ଓଡ଼ିଶାରେ ନାରୀ ସ୍ୱାଧୀନତାର ଯେତିକି କଳ୍ପନା କରିଯାଇପାରୁଥିଲା, ତାଠାରୁ ବେଶିକିଛି ଲେଖକ ତାଠାରେ ଦେଖାଇ-ଛନ୍ତି । ତାର ରଚନା ଓ କ୍ରୀଡ଼ାରେ ନୈପୁଣ୍ୟ, ଜାତୀୟତା, ବିଜ୍ଞାନ, ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଗୁରୁଗମ୍ଭୀର ଆଲୋଚନା ଏଇ ସବୁ ସମଗ୍ର ପୁସ୍ତକକୁ ଆଚ୍ଛାଦିତ କରି ରଖିଛି । ପ୍ରେମ ସଂପର୍କରେ ମଧ୍ୟ ସେ ସେହିପରି ଉଦାର. ବାଂଛିତ ପୁରୁଷର ମନକୁ ଆକର୍ଷିତ କରିବାର ସମସ୍ତ କଳାକୁଶଳତା, ସମସ୍ତ ମୋହିନୀ ମାୟାରେ ମଧ୍ୟ ସେ ପାରଦର୍ଶିନୀ । ତଥାପି ସାଗର ପରି ସେ ଭାବପ୍ରବଣା ନୁହେଁ, ଖୁବ୍ ବାସ୍ତବବାଦୀ । ସେ ଚାହୁଁଥିଲା ତାର ପ୍ରେମିକ, ତାର ଭାବୀ ସ୍ୱାମୀ ମଧ୍ୟ ତାରି ପରି ଦୁର୍ଦ୍ଧର୍ଷ, ତାରି ପରି ସଂଗ୍ରାମଶୀଳ ହେଉ । ସେଥିପାଇଁ ଯେତେବେଳେ ସାଗର ତାକୁ ପଚାରିଛି—ଅଭାବ ଅସୁବିଧା ଭିତରେ ମୁଁ ଯଦାବେଳେ ଦହଗଞ୍ଜ ହୁଏ ଏଇଆ ତା'ହେଲେ ତମେ ରହିବ ? ଦୃପ୍ତ ସ୍ୱରରେ ସଲିଳା ଉତ୍ତର ଦେଇଛି—"ହଁ ଏକ ପ୍ରକାର ସେଇଆ । ଜଣେ ଆଘାତ ନ ପାଇଲେ, ସାଂଘାତିକ ଭାବରେ ଆକ୍ରାନ୍ତ ନ ହେଲେ, ଅବସ୍ଥାକୁ ମୁକାବିଲା କରିବାର ଅଟଳ ପ୍ରତିଜ୍ଞା କରିବ କାହିଁକି ?" ସେଇଥିପାଇଁ କହୁଛି

'ପ୍ରିୟତମା ନେହୀ' ଉପରେ ମୋତେ ପାଇବାର ସମ୍ଭାବନା ତୁମ ମନରେ ନେହେରେ ଶହେ ରହିବେ ଲ୍ ତୁମେ ବ ସେଇ ଆଦମ ରକ୍ଷଣଶୀଳ ପୁରୁଷ ହୋଇଯିବ । ଯାହେଉ, ସେଇ ଅନ୍ଧବଣ-ଧର୍ମୀ ସଂଗ୍ରାମ ସମ୍ମୁଖ ମଣିଷ ଯେ କେବଳ ଲୁଣ ତେଜାଳ ଖାଇ ସନ୍ତୁଷ୍ଟ ରହିବାକୁ ଚାହେଁ । ସାମନ୍ତବାଦୀ ପ୍ରାଚୀନ ଭିତରେ ଉପେନ୍ଦ୍ରଭଞ୍ଜଙ୍କ ଲବଣ୍ୟବତୀକୁ ନେଇ ସ୍ୱପ୍ନର ରାଜ୍ୟରେ ଅସ୍ପୃଶ୍ୟ । ଜାଣ ସେ ସ୍ୱପ୍ନରାଜ୍ୟରେ ମୁଁ ତୁମର କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ ହେବାକୁ ଚାହେଁନା × × ମୁଁ ଚାହେଁ ତୁମ ଭିତରେ ଏକ ବହ୍ନି ଅଉ ଦୁର୍ବିସହ ଜ୍ୱାଳାର ବହ୍ନିଶିଖା ପରି ରହିବା ପାଇଁ ରି ଅଉ ନିମିତ ! ପ୍ରିୟତମାକୁ ପ୍ରତି ମୁହୂର୍ତ୍ତରେ ହରାଇବାର ଆଶଙ୍କା ଭିତରେ ତୁମେ ରହିବ ସଦା ଜାଗ୍ରତ ! ତା ହେଲେହିଁ ଅସିବ ତୁମଠି ସଂଗ୍ରାମଶୀଳ ହେବାର ଜିଦ୍, ବଡ଼ଲୋକ ହେବାର ଉତ୍ସାହ । ପ୍ରେମ, ରୋମାନ୍ସ, ରସକଲ୍ପନା ଏବଂ ମନର ଚଟୁଣୀ ପାଇଁ ଲେଖକର ସ୍ପୃହଣୀୟ, ଏସବୁ ରହିବନି ତୁମ ପାଖରେ । ତୁମେ ହେବ··· ଚିନ୍ତା ଅଉ ମନସ୍ତାପ, ଜ୍ୱାଳା ଆଉ ଯନ୍ତ୍ରଣାର ଏକ ଜ୍ୱାଳାମୁଖୀର ଦୁର୍ଜୟ ପ୍ରାଣ । ଅସମ୍ଭବକୁ ସମ୍ଭବ କରିବା ପାଇଁ, ଦୁର୍ଲଭକୁ ନିଜସ୍ୱ କରିବା ପାଇଁ, ଶପଥର ବାସ୍ତବିକତାରେ ତୁମେ ହେବ ଏକ ଅଶାନ୍ତ ଯୁବକ, ଏବଂ ସେଇ ଅସ୍ଥିର, ଅଶାନ୍ତ, ଦୁର୍ଦ୍ଦାନ୍ତ ଯୁବକହିଁ ହେବ ମୋର ଉପାସ୍ୟ, ନମସ୍ୟ ।" (ପୃ ୨୬୩୦)

ନାଟ୍ୟକାରଙ୍କୁ ଚଳେଇବା କାହ୍ନୁଚରଣଙ୍କ ଏସବୁ ମନ୍ତ୍ର ସାଗର-ଠାରେ ଠିକ୍ ପ୍ରତିକ୍ରିୟା ସୃଷ୍ଟି କରିଛି । ଜଣେ ନିର୍ବାହ ଚାକିରି ବାଳକର ଅବସ୍ଥାରୁ ଜାଗ୍ରତ ହୋଇ ସେ ହୋଇ ଉଠିଛି ଦୁର୍ଦ୍ଧର୍ଷ । ନିଜର ସାମାଜିକ ପ୍ରତିଷ୍ଠା ପାଇଁ ସେ ନିଜେ ପଥ ଖୋଜି ନେବାରେ ସକ୍ଷମ ହୋଇଛି । କିନ୍ତୁ ଯେତେବେଳେ ସେ ଧଳିଆ ପାଇଁ ନିଜକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ କରସାରିଚି ସେତେବେଳେ ବହୁକାଳର ଅଦର୍ଶନ ଓ ପ୍ରତୀକ୍ଷାପରେ ଦେଖିଛି ଧଳିଆ ଅନ୍ୟର ନେହୀ ।

ଉପନ୍ୟାସର ପ୍ରଥମ ପର୍ଯ୍ୟାୟରେ ସାଗର ଓ ଧଳିଆର ଶେଷ ଦେଖାଦେଖି ବେଳେ ଧଳିଆର ହାବଭାବ ଖୁବ୍ ନୈସର୍ଗିକ ଓ

ଦୁର୍ବୋଧ ମନେ ହୁଏ । ବଜଦ୍ୱାରର ଗହ୍ୱର ଭିତରେ ସେ ସାଗରକୁ ଚହ୍ଲି-ପାରି ନିଜ ସ୍ୱାମୀ ନିକଟରେ ଥାଇ ମଧ୍ୟ ସେ ଚିତ୍କାର କରି ଯେଉଁ ଭବ-ବନ୍ଧ୍ୟତା ପ୍ରକାଶ କରନ୍ତି ତାହା ସେ ପରିସ୍ଥିତିରେ କେତେଦୂର ଯଥାର୍ଥ କହିହୁଏ ନାହିଁ । ତଥାପି ସନ୍ଧ୍ୟା ଜଣେ ପ୍ରତ୍ୟକ୍ଷ ନାରୀ ।

ଅନ୍ୟାନ୍ୟ ଉପଚରିତ୍ରମାନଙ୍କ ମଧ୍ୟରୁ ସନ୍ଧ୍ୟାର ଭାଇ ଅଜିତ ହୁଏତ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷ କ୍ଷେତ୍ରରେ, ବାଗ୍ମିତାରେ ଓ ଅଭିଜାତ ବଂଶ-ସୁଲଭ ବିଚକ୍ଷଣତାରେ ସେ ସାଗରଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । କିନ୍ତୁ କାହିଁକି ଲେଖକ ସେ ଚରିତ୍ରଟି ସୃଷ୍ଟି-କଲେ ? ନାୟକ ଓ ନାୟିକାଙ୍କର ମିଳନ ଘଟାଇଦେବା ହୁଏତ ଥିଲା ସେ ଚରିତ୍ରଟିର ଏକମାତ୍ର କାମ । ସେ କାମଟିର ଶେଷ ପରେ ଅର୍ଥାତ ମୁଖ୍ୟତଃ ତାରି କ୍ରିୟାକଳାପ ଫଳରେ ସାଗର ଓ ସନ୍ଧ୍ୟାର ଘନିଷ୍ଠତା ଚରମ ସୀମାକୁ ସ୍ପର୍ଶ କଲାପରେ ଲେଖକ ତାକୁ ମୃତ୍ୟୁର ଗହ୍ୱର ମଧ୍ୟକୁ ଠେଲି ଦେଇଛନ୍ତି । ବିଚରା ଅଜିତ ! ମଦଖୋର, କାମ ସରିଲେ ଗଙ୍ଗରଡ଼ା । ଅଜିତର ଅପମୃତ୍ୟୁ ପରେ ପାଠକର ବେଳେ ବେଳେ ମନେ ହୁଏ ସେ ଚରିତ୍ରଟିର ସୃଷ୍ଟି ମଧ୍ୟ ଏକ ଅପସୃଷ୍ଟି···ଆଉ ସେଥିଲାଗି ବ୍ୟର୍ଥସୃଷ୍ଟି ଆଉ କେତେକ ଚରିତ୍ର ।

ଉପନ୍ୟାସର ଭାଷା ଅନେକାଂଶରେ ସରଳ । ସବୁଗୁଡ଼ିକ ଚରିତ୍ର ପ୍ରାୟ ସମ୍ଭ୍ରାନ୍ତ ଓ ଶିକ୍ଷିତ ହୋଇଥିବାରୁ ବହୁଳ ଚରିତ୍ରୋପଯୋଗୀ ଭାଷା ଅନୁସନ୍ଧାନର ଆବଶ୍ୟକତା ପଡ଼ିନାହିଁ । ସ୍ଥାନେ ସ୍ଥାନେ ଭାଷା କଥୋପକଥନ ଭଙ୍ଗୀରେ ଶବ୍ଦଚିତ୍ରଧର୍ମୀ, ଅନ୍ୟସ୍ଥଳରେ ବାଗ୍ମୀ ବର୍ଣ୍ଣନରେ ପ୍ରବାହିତ ମନ୍ଦମନ୍ଥର ପରିପୁଷ୍ଟ ଓ ଚମତ୍କୃତ । ନାୟକର ଅନ୍ତଃକ୍ରନ୍ଦନ ମଧ୍ୟରେ ବାରମ୍ବାର ସେ ଭାଷାର ସନ୍ଧାନ ମିଳେ । —"ମୋ' ସାଙ୍ଗରେ ଏଇ ଯେଉଁ କନକବରଣୀ ଚଉଷଠି ମିଳାଖେଳା ଖେଳେଇଲା, ମାଟିଆ ଦେଲା ଲାଉତୁମ୍ବା ବନ୍ଧେଇ ଗୋଟିଏ ହାତକୁ ନଚାଇଲା ପରି ମନ୍ତ୍ରମୁଗ୍ଧ କରି ରଖିଛି, ସେ ହଠାତ୍ କିଏ ? କୋଉ ଅମରାବତୀର ଉର୍ବଶୀ ? କୋଉ ସ୍ୱପ୍ନପୁରର ରାଜଜେମା ? କିଏ ବା ତାର ଉଦ୍ଦେଶ୍ୟ ?

କଅଣ ଖୋଜେ ସେ ମୋତେ ? କଣ୍ଢେଇଟିପରି ମତେ ନଚେଇବାରେ ଖାଲି ତା'ର ଆନନ୍ଦ ନା କୁଅଁଳେ ନେଇଯିବାକୁ ଖୋଜେ ସେ ମୋତେ ଦୂର-ଦୂରନ୍ତରକୁ ? ନେଇଯିବାକୁ ଖୋଜେ କେଉଁ ରହସ୍ୟଲୋକର ସନ୍ଧାନରେ ଅମୃତ ଜୀବନର ଉପଭୋଗ ପାଇଁ ?

ହଲକା ! ସଲକା ! !

ଆଃ କି ମାଦକତା ନାଁ ଟି ଉଚ୍ଚାରଣରେ !

କି କ୍ଲାନ୍ତ ଦେହର ସାନ୍ନିଧ୍ୟରେ ! !

କି ଶାନ୍ତ ସେ ଭାବନାର ଶିହରଣରେ ! ! ! " (ପୃ ୧୮୧)

'ଭଙ୍ଗିଲ ସରେ ସଙ୍ଗ' ପ୍ରକାଶ ହେଇବା ପୂର୍ବରୁ ଲେଖକଙ୍କର 'ଉଦ୍‌ଭ୍ରାନ୍ତ' ନାମରେ ଉପନ୍ୟାସଟିଏ ପ୍ରକାଶ ପାଇଥାରଥିଲା ଏବଂ ତାଙ୍କଦ୍ୱାରା ଲିଖିତ ଓ ପ୍ରକାଶିତ ପୁସ୍ତକାବଳୀ ଓ ସେ ସବୁର ସଂସ୍କରଣର ସଂଖ୍ୟା ଓ ଜନପ୍ରିୟତାରୁ ସେ ଯେ ଜଣେ ସାର୍ଥକ ଓ ଲୋକପ୍ରିୟ ଲେଖକ ଏଥିରେ ଦ୍ୱିମତ ଥାଇନପାରେ ।



ରେଭେନ୍‌ସା କଲେଜ
କଟକ

# ଭଲ ମଣିଷ

ଅକ୍ଷୟ ମହାନ୍ତି



ସେଇ ପିଲାଦିନର କଥା ଯେତେବେଳେ ବନ୍ଧା ନହୋଇଥିବା ଖଣ୍ଡେ ବହିକୁ ପଢ଼ିସାରି ମୁଁ କଳ୍ପନା କରିବାକୁ ଚେଷ୍ଟା କରିଥିଲି ସେ ଲେଖକଟି କେମିତି ହୋଇଥିବ, ଗୋରା ନା କଳା—ସେଇ ପିଲାଦିନେ ପୁଣି ମନେ ମନେ ଗୋଟେ ଚେହେରା ଆଙ୍କିନେଇ ଠିକ୍ କଲି ହୁଏତ ଲେଖକ ହେବାକୁ ହେଲେ ଏମିତି ସୁସ୍ଥବାଧ ହେବା ଉଚିତ—କିନ୍ତୁ ଆଜି ଏତେ ଦିନର ବାଟ ଚାଲି ପରେ ଲେଖକ ଶବ୍ଦର ଅର୍ଥ ଆଉଥରେ ନିରୂପଣ କରିବାକୁ ପଡ଼ିଲା ।

ଏ ଅଭିନନ୍ଦନ ଉତ୍ସବରେ ଯେତେବେଳେ ପ୍ରତିଷ୍ଠିତ, ଲବ୍ଧ-ପ୍ରତିଷ୍ଠିତ ସାହିତ୍ୟିକମାନେ ଲକ୍ଷ୍ମୀଧର ବାବୁଙ୍କର ଅମର ସାହିତ୍ୟ କୃତି ସମ୍ପର୍କରେ ଆଲୋଚନା କରୁଛନ୍ତି, ମୁଁ ସେଇ ଶୋଭାଯାତ୍ରାର ଅନ୍ୟ ଏକ ପ୍ଲାକାର୍ଡ଼ ଧରି ଚାଲିଛି—ତା ହେଉଛି ତାଙ୍କ ବ୍ୟକ୍ତିତ୍ୱର ।

ହୃଦୟର ନିଭୃତତମ ପ୍ରଦେଶରେ ଗୋଟିଏ ଦ୍ୱୀପ ଅଛି । ଏହି ସୂକ୍ଷ୍ମ ଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ସେଇ ଦ୍ୱୀପକୁ ଆବିଷ୍କାର କରେଇବାରେ ଓ ବଞ୍ଚେଇବାରେ ଜୀବନର ସମସ୍ତଟିକ ଖଟେଇ ଦେଇଥାଏ । —ଏହା ଏକ ଇଉଟୋପିଆ କଳ୍ପନା ମତ । ତାହା କେତେଦୂର ପ୍ରତିଫଳିତ ଲକ୍ଷ୍ମୀଧର ନାୟକଙ୍କ ଜୀବନରେ, ତାହା ଦେଖିବାକୁ କମ୍ପା ପରୀକ୍ଷା କରିବାକୁ ଗଲେ କାହାକୁ ବେଶୀ ପରିଶ୍ରମ କରିବାକୁ ପଡ଼ିବନି ।

ଗୀତନର ସ୍ତୃତ ମୁହୂର୍ତ୍ତରେ ତାଙ୍କର inspirationର ରଙ୍ଗ ବଦଳି ଆସିଛି । ହୃଦୟର 'କାଳସୀ' ତାଙ୍କୁ କେତେବେଳେ କବିତା ଆବୃତ୍ତି କରେଇଛନ୍ତି, କେତେବେଳେ ଉପନ୍ୟାସ ଲେଖେଇଛନ୍ତି, କେତେବେଳେ ପ୍ରବନ୍ଧ ଲେଖେଇଛନ୍ତି, କେତେବେଳେ ନୃତ୍ୟ କରେଇଛନ୍ତି, କେତେବେଳେ ଗୀତ ଶୁଣାଇଛନ୍ତି । ଜଣେ ଲୋକ ପାଖରେ କେବଳ inspiration ହିଁ inspiration. ସେ ବୋଧେ ଏମିତି କୌଣସି କାମ କରନ୍ତି ନାହିଁ ଯେଉଁଥିରେ inspiration ନଥାଏ ।

ଶ୍ରୀରାମଚନ୍ଦ୍ର ଭବନରେ ଥରେ ଶୁଣିବାକୁ ପାଇଥାଏ ତାଙ୍କର କବିତା ଆବୃତ୍ତି । ଅନେକ ଓଡ଼ିଆ ସାହିତ୍ୟିକ ଚେତନାର ପରମ୍ପରା ଅନୁଯାୟୀ ଏକ-ଚତୁର୍ଥାଂଶ-ପୂର୍ଣ୍ଣ ପ୍ରେକ୍ଷାଳୟରେ ଲକ୍ଷ୍ମୀଧର ନାୟକ ଆରମ୍ଭ କଲେ ଆବୃତ୍ତି । ଓଡ଼ିଆ ଆବୃତ୍ତି ବୋଧହୁଏ ମୁଁ ପ୍ରଥମେ ଏମିତି ଶୁଣିଲି ଯାହା ଫଳରେ କି ମୁଁ ଗୋଟାଏ କମ୍ପାନୀକୁ ଅନୁରୋଧ କରି ତାଙ୍କର ଖଣ୍ଡେ ଆବୃତ୍ତି ରେକର୍ଡ କରେଇଲି । ଏବଂ ତା'ର ଉନ୍ମୋଚନ ଉତ୍ସବରେ କଟକର ବରିଷ୍ଠ ବୁଦ୍ଧିଜୀବୀମାନଙ୍କୁ ସେଇ ରାମଚନ୍ଦ୍ର ଭବନରେ ନିମନ୍ତ୍ରଣ କରିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଆବୃତ୍ତି କରିବାର ତରିକା ବା ଉପାୟ ସମ୍ପର୍କରେ ଭାଷଣ ଦେଲେ । ମୁଁ ଲକ୍ଷ୍ୟ କରୁଥିଲି ଲକ୍ଷ୍ମୀଧର ବାବୁଙ୍କର ମୁହଁକୁ । କିନ୍ତୁ ସେଠି ଆହତ ହେବାର କୌଣସି ଇଙ୍ଗିତ ପାଇଲିନି ।

ନା' ଏସବୁ କଥାକୁ ସେ ଦେହରେ ନିଅନ୍ତି ନାହିଁ । ହୁଏତ— ତାଙ୍କ ସାହିତ୍ୟିକ ଜୀବନରେ ଏଗୁଡ଼ା ଦେହ ସୁହା ହୋଇଗଲଣି । ସେ, ଏ ସାହିତ୍ୟିକମାନଙ୍କୁ ଚଉଳି, ମାଟି, ହସ ଇ, କନ୍ଦାଇ, ଜଳାଇ, ଚାଲି ଯାଇଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟ ! ସେଇ ଲୋକ ଦିନେ ଅପରାହ୍ଣରେ ମୋର କାର୍‌ରେ ବସି, ମୋର ଗୋଟିଏ ଗୀତ ଶୁଣି ଆଖିରୁ ଲୁହ ଢାଳିଥିଲେ ।

ତା' ମାନେ ଏ ଲୋକଟି ହିପୋକ୍ରିଟ୍ ନୁହେଁ ।

ତାଙ୍କର ମୋର ସମ୍ପର୍କ କୌଣସି ସାହିତ୍ୟର ନୁହେଁ । ସେ ବାପ୍ପା ମୁଁ ପୁତ୍ର । କିନ୍ତୁ ଧୀରେ ଧୀରେ ସମ୍ପର୍କ ଏତେ ନିବିଡ଼ ହୋଇଗଲା ଯେ

ହଠାତ୍ ମୁଁ ହାଇନେଜସ୍ମଳ ଛୁଞ୍ଚ କଲମ ଧରି ଲେଖିବାକୁ ଅଭ୍ୟାସ ଆରମ୍ଭ କରିଦେଲି ।

ତାଙ୍କର inspiration ଏକ ଉଦ୍ଭାବେଗ ଏବଂ ସେ ବେଗ ମତେ କିଛି କିଛି ଆକ୍ରାନ୍ତ କରି ଦେଲାଣି । ସବୁ ଗୀତ ମୁଁ ଗାଇ ପାରେ ନାହିଁ, ମୁଁ ମୋର ଜନ୍ମସ୍ୱରକୁ ଉଦ୍ଭାବିତ କରି ପାରିଲି ସେଥିରେ ମୋତେ ଗୋଟେ ଅଲଗା ଆତ୍ମସନ୍ତୋଷ ମିଳିବ । ସେଇ ଆତ୍ମ-ସନ୍ତୋଷ ହିଁ ଲକ୍ଷ୍ମୀଧର ନାୟକଙ୍କ ବ୍ୟକ୍ତିତ୍ୱର ସବଶ୍ରେଷ୍ଠ ପରିଚୟ । ସେଥିପାଇଁ ସାଧାରଣ ଅସୁବିଧାରେ ତାଙ୍କ ମୁହଁ ଉପରେ ଗୋଟେ ଚିନ୍ତାର ବାଦଲ ଘେରିଯିବ ଏମିତି କେହି ଦେଖି ନାହାନ୍ତି ।

ସେ ଏପର୍ଯ୍ୟନ୍ତ ଅନେକ କିଛି ପାଇଛନ୍ତି କିନ୍ତୁ ହରାଇ ନାହାନ୍ତି କିଛି । କାରଣ ସେ ହରାଇଥିବା ଜିନିଷ ପାଇଁ ପଶ୍ଚାତାପ କରି ଜାଣି-ନାହାନ୍ତି । St—John Parse ଙ୍କ ଭାଷାରେ 'The inner most soul of an artist is serene ।" ଏବଂ ସେ ନିଭୃତତମ ହୃଦୟକୁ କୌଣସି ବାହାରର ଶକ୍ତି ଶାନ୍ତି ଲୁଟି ନେବାପାଇଁ ଆସି ନାହାନ୍ତି । ତାଙ୍କ ସହିତ ମିଶିଲେ ସ୍ୱତଃ ପ୍ରଶ୍ନ ଉଠେ (ଏବଂ ପିଲାଦିନୁ ସେ ପ୍ରଶ୍ନ ଥିଲା) ସେ ଜଣେ ଭଲ ଲେଖକ ହେବାକୁ ହେଲେ କଣ ହେବାକୁ ପଡ଼ିବ ।

ତାଙ୍କ ସହିତ ମିଶି ତାଙ୍କ ନିକଟରୁ ଆସିଲାପରେ ଜାଣିପାରେ "ଭଲ ଲେଖକ ହେବାକୁ ହେଲେ ଆଗେ ଭଲ ମଣିଷଟିଏ ହେବା ଦରକାର ।"

ଆଜି ଯିଏ ଭଲ ମନରେ ପଢ଼ିବ, ଏଇ କଥାପଦକ ମଧ୍ୟ ତା' ଜୀବନର ଏପିଗ୍ରାମ ହେଉ ।



ବଡ଼ଦାଣ୍ଡ, ଶେଖ ବଜାର
କଟକ

# ବନ୍ଧୁ ମୁରାରିଙ୍କୁ ଖଣ୍ଡିଏ ଚିଠି



ଶ୍ରୀ ଯମେଶ୍ୱର ତ୍ରିପାଠୀ

ଶ୍ରଦ୍ଧେୟ ମୁରାରି;

ତୋ ଚିଠି ପାଇଲି । ପ୍ରଗତି ଯୁବ ପରିଷଦର ମୁଖ୍ୟ ବ୍ୟବସ୍ଥାପକ ହିସାବରେ ଜଣେ ଲେଖକଙ୍କର "ଲେଖାର ସୁବର୍ଣ୍ଣ ଜୟନ୍ତୀ" ପାଳନ କରୁଥିବାର ଦେଖି ମୁଁ ଆନନ୍ଦରେ ଆପ୍ଲୁତ ଓ ଅଭିଭୂତ ହୋଇ-ପଡ଼ିଛି । ସମସ୍ତେ ସାହିତ୍ୟିକଙ୍କର ଜୟନ୍ତୀ ପାଳନ କରନ୍ତି କିନ୍ତୁ ଲେଖାର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବା ଏକ ଅଭିନବ ଓ ଅନନ୍ୟ-ସାଧାରଣ ପ୍ରଚେଷ୍ଟା । ତୋର ଏଇ ଅଭିନବ ଉଦ୍ୟମ ପାଇଁ ତୋତେ ବିଶେଷ ବଧାଇ ଜଣାଉଛି ।

ଲକ୍ଷ୍ମୀଧର ନାୟକ ଓଡ଼ିଶାର ଜଣେ କୃତବିଦ୍ୟ ସାହିତ୍ୟିକ । ତାଙ୍କ ବିଷୟରେ ଲେଖି ବସିଲା ବେଳକୁ କେତେ କଥା ମନରେ ଆସୁଛି । ମୁଁ ତାଙ୍କ ସହିତ ପ୍ରାୟ ତିରିଶ ବର୍ଷକାଳ ଧରି ସାହିତ୍ୟ କ୍ଷେତ୍ରରେ ଘନିଷ୍ଠ । ମୋତେ ବର୍ତ୍ତମାନ ପଚାଶ ବର୍ଷ । ତୋତେ ହେଲା ଏକାବନ । ତେଣୁ ଆମେ ଦୁହେଁ ଭୂମିଷ୍ଠ ହେଲା ବେଳକୁ ଲକ୍ଷ୍ମୀଧର ବାବୁ ଲେଖଣୀ ଧରି ସାହିତ୍ୟ ସାଧନା କ୍ଷେତ୍ରରେ ଅବତୀର୍ଣ୍ଣ ହେଲେଣି । ତାଙ୍କର ସାହିତ୍ୟ ସାଧନାର ନିଷ୍ଠା ତାଙ୍କୁ ଆଜି ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ କରି-ପାରିଛି ।

ପିଲାଦିନ କଥା । ସ୍କୁଲରେ ପଢ଼ୁଥାଏ । ଆମ ଆଠଗଡ଼ରେ ଗୋଟିଏ ଥିଏଟର କ୍ଲବ ଥିଲା । ତାହାର ପୃଷ୍ଠପୋଷକ ଥିଲେ ରାଜା

ରାଧାନାଥ ଚକ୍ରବର୍ତ୍ତୀ ଟେଂନାୟକ ପିଏଚ ପରେ ସ୍ୱାମୀ ବିଦ୍ୟାନନ୍ଦ ସରସ୍ୱତୀ ହୋଇ ସନ୍ନ୍ୟାସ ଜୀବନ ଯାପନ କଲେ । ଏବେ ତାହାଙ୍କର ବୈକୁଣ୍ଠପ୍ରାପ୍ତି ହୋଇଛି । ସେହି ଅଂଶରେ କ୍ଲବରେ ନୂତନ ନାଟକମାନ ମଞ୍ଚସ୍ଥ ହେଉଥାଏ । ଆମେ ସବୁ ସ୍କୁଲ ପିଲା ନାଟକର ଦର୍ଶକ । ତତ୍କାଳୀନ ଅମଲାମାନେ ନାଟକରେ ଅଂଶ ଗ୍ରହଣ କରୁଥିଲେ । ସେହି ରଙ୍ଗମଞ୍ଚରେ ପ୍ରଥମେ ଦେଖିଥିଲି "ଧର୍ମପତ୍ନୀ" ନାଟକ । 'କରୁଣା' ଭୂମିକାରେ ଅଂଶଗ୍ରହଣ କରିଥିଲେ ଆମ ଘରର ଜାଣିଆ ନାଥିଆ ଘଇନା (ଦୁଇ ଜଣ ନାଥ ଘଇନା ଥିବାରୁ ଜଣଙ୍କ ନାମ ତାହାଙ୍କୁ ଦିଆ ହୋଇଥିଲା) । ତାହାଙ୍କର ଜୀବନ୍ତ ଅଭିନୟ ଏବେ ଆଖି ଆଗରେ ନାଚି ଉଠେ । ତାହାପରେ ଦେଖିଲି ଅନ୍ନପୂର୍ଣ୍ଣାରେ ରାଧାରାଣୀ ଦେବୀଙ୍କୁ ସେହି ଭୂମିକାରେ । ନାଟକ ସଂଳାପ ଶୁଣି ନାଟ୍ୟକାରଙ୍କ ପ୍ରତି ଅସୀମ ଭକ୍ତି ଆସି ଯାଇଥିଲା । ସେହି ନାଟକର ନାଟ୍ୟକାର ଥିଲେ ଲକ୍ଷ୍ମୀଧର ନାୟକ । ନାଟ୍ୟକାର ଭାବରେ ସେ ମୋ ନିକଟରେ ପ୍ରଥମେ ଦେଖା ଦେଇଥିଲେ । ତାହାପରେ ତାଙ୍କର ଉପନ୍ୟାସ ପଢ଼ିଲି ସବୁହରା, ଯା'ରେ ଦୁର୍ଗା ଦେଶ ପ୍ରତିଷ୍ଠ ।

ମାଟ୍ରିକ ପାସ୍ ପରେ ନରସିଂହପୁରର ଏକ ସରକାରୀ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ବର୍ଷଟିଏ ଶିକ୍ଷକତା କଲି । ତାହାପରେ ମେଡ଼ିକାଲ୍ ଟେକ୍‌ନିସିଆନ୍ ଟ୍ରେନିଂ ନେବାପାଇଁ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ନାଆଁ ଲେଖାଇଲି । ପିଲାଦିନରୁ ମୋର ସାହିତ୍ୟ ପ୍ରତି ଟିକିଏ ଆଦର ଆସିଯାଇଥାଏ । ଆମ ଗାଆଁରେ "ଜନନୀ" ବୋଲି ଖଣ୍ଡିଏ ହାତଲେଖା ପତ୍ରିକା ଆମେ କେତେଜଣ ଛାଡ଼ୁଥିଲୁ । ତହିଁରେ ଆଜିକାଲିର ବିଶିଷ୍ଟ ସାହିତ୍ୟିକ ରବିନାରାୟଣ ମହାପାତ୍ର ମଧ୍ୟ ସଂପୃକ୍ତ ଥିଲେ । କଟକକୁ ଆସିବାବେଳକୁ ମୋର କିଛି ଲେଖା "ଉତ୍କଳ ଦୀପିକା"ରେ ପ୍ରକାଶିତ ହୋଇ ସାରିଥାଏ । ଲେଖାଲେଖି କରିବାପାଇଁ ପ୍ରବଳ ଆଗ୍ରହ । କଟକରେ ପଢ଼ୁଥିବା ରହିଲି ବକ୍ସିବଜାର ଟେଲିଗ୍ରାଫରେ "ଅଶୋକ ଭବନ" ମେସ୍‌ରେ । ସେହି ମେସ୍‌ରେ ରହୁଥିଲେ ବନମାଳୀ ସାହୁ ବୋଲି ଜଣେ ଭଦ୍ରବ୍ୟକ୍ତି । ତାଙ୍କୁ କେତେକ ବନମାଳୀ ଦାଢ଼ୀ ବୋଲି ଡାକୁଥିଲେ । ସେ ଏକ ପ୍ରଚଣ୍ଡ ପ୍ରତିଭାଧର ବ୍ୟକ୍ତି ଥିଲେ । ଖୁବ୍ ଚମତ୍କାର କବିତା ଲେଖୁଥିଲେ ।

ତାହାଙ୍କ ସହିତ ମୋର ବନ୍ଧୁତ୍ୱ ବେଶ୍ ଜମି ଉଠିଲା । ସେହି ଉଦ୍ଭ-ବ୍ୟକ୍ତିଙ୍କ ସହିତ ମଧ୍ୟ କବି ରାଧାମୋହନ ଗଡ଼ନାୟକଙ୍କର ଖୁବ ଘନିଷ୍ଠତା ଥାଏ । ତେଣୁ ଗଡ଼ନାୟକ ବାବୁ ତାଙ୍କ ପାଖକୁ ଅଧିକାଂଶ ସମୟରେ ଆସୁଥିଲେ । ଅଶୋକ ଭବନ ମେସ୍‌ରେ ଆମେ ଏକ "ଅପର୍ଣ୍ଣ ଏକାଡ଼େମୀ" ପ୍ରତିଷ୍ଠା କରିଥିଲୁ । ସେହିଠାରେ ସାହିତ୍ୟ ବିଷୟରେ ଆଳାପ, ଆଲୋଚନା କରୁଥିଲୁ । ରାଧାମୋହନ ବାବୁଙ୍କ ସହିତ ମିଶିବାର ସୌଭାଗ୍ୟ ମୋତେ ସେହିଠାରେ ହିଁ ମିଳିଲା ।

ବିଜ୍ଞାପନ ପଢ଼ିଥିବୁ—'ବିନା ଗୁରୁରେ ଜ୍ୟୋତିଷ ଶିକ୍ଷା ।' କିନ୍ତୁ ବିନା ଗୁରୁରେ କ'ଣ ସାହିତ୍ୟ ସାଧନା ସଫଳ ହୋଇ ପାରେ କି ? ମୋର ମତ କିନ୍ତୁ ଭିନ୍ନ । ଗୁରୁ ନଥିଲେ କୌଣସି କାର୍ଯ୍ୟରେ ସିଦ୍ଧି ଆସିପାରେ ନାହିଁ । ଗଡ଼ନାୟକ ବାବୁଙ୍କ ସହିତ ମିଳାମିଶା ହିଁ ମୋର ସାହିତ୍ୟ ସାଧନାକୁ ପୁଷ୍ଟିଳ କରିଛି । ତାହାଙ୍କ ଆଦେଶମାନ ମୁଁ କବିତା ଲେଖା ଗ୍ରନ୍ଥ ରଚନାକୁ ଚାଲି ଆସିଲି । ତାହାଙ୍କ ସହିତ କେତେ ସଂଧ୍ୟା, କେତେ ଦି'ପହର ଏହିପରି ଆଲୋଚନାରେ ବିତିଛି ।

କବି ଗଡ଼ନାୟକଙ୍କ ଘରଆଗରେ ହିଁ ମୋର ଲକ୍ଷ୍ମୀଧର ବାବୁଙ୍କ ସହିତ ପରିଚୟ ହୁଏ । ପ୍ରକୃତରେ ମୁଁ ଭାବେ, ସେ ଦୁଇଜଣ କବିବନ୍ଧୁଙ୍କର ସ୍ନେହ, ସମ୍ପ୍ରୀତି ଦେଖିଲେ ମୁଁ ବିସ୍ମିତ ହୁଏ । ଆଜିକାଲି ଆମ ଲେଖକ ମାନଙ୍କ ଭିତରେ ଭରି ଉଠିଛି ହିଂସା, କପଟତା ଓ ଛଳନା । ସେମାନେ ଆପଣାକୁ କଡ଼ରେ ଅନନ୍ୟ ମଣୁଛନ୍ତି । କିନ୍ତୁ ସେ ଦୁହିଁଙ୍କ ସମ୍ପର୍କରୁ ଆମର ଯଥେଷ୍ଟ ଶିକ୍ଷା କରିବାର ଅଛି । ରାଧାମୋହନ ବାବୁ ଲକ୍ଷ୍ମୀଧର ବାବୁଙ୍କୁ ଲକ୍ଷ୍ମୀ ବୋଲି ଡାକନ୍ତି ଏବଂ ଲକ୍ଷ୍ମୀଧର ବାବୁ ରାଧାମୋହନ ବାବୁଙ୍କୁ "ରାଧା" ବୋଲି ଡାକନ୍ତି ।

୧୯୫୩ ମସିହାର କଥା । ଲକ୍ଷ୍ମୀଧର ବାବୁ ସେତେବେଳେ ରହୁଥାନ୍ତି କଟକରେ, ବର୍ଣ୍ଣୀହାଟରୁ ମେଡ଼ିକାଲ ଆଡ଼କୁ ଯିବା ରାସ୍ତାରେ ଏକ ଭଡ଼ା ଘରେ । ବର୍ଣ୍ଣୀହାଟରେ ଅପଣାର "ମହାଲକ୍ଷ୍ମୀ" ପ୍ରେସ୍‌କୁ ଦେଖୁଥାନ୍ତି । ପ୍ରେସ ସିନା କରିଥାନ୍ତି କିନ୍ତୁ ପ୍ରେସ କଥା ସେ ବୁଝୁ ନ

ଥାନ୍ତି । ରାଧାମୋହନ ବାବୁଙ୍କ ଭାଷାରେ—ଲକ୍ଷ୍ମୀ ତାଙ୍କର ବହୁତ ସ୍ୱପ୍ନ ଦେଖେ । ପ୍ରକୃତରେ ବନ୍ଧନ କାର୍ଯ୍ୟ କରିବା ପାଇଁ ଲକ୍ଷ୍ମୀଧର ବାବୁଙ୍କର ଅନେକ ଯୋଜନା । ତାଙ୍କର ଦ୍ୱାରା ହିଁ ପ୍ରଥମ ସିନେମା ପତ୍ରିକା "ଚିତ୍ର-ଲେଖା" ଓଡ଼ିଆରେ ପ୍ରକାଶ ପାଇଥିଲା । ସିନେମା ସଂବାଦ ପ୍ରଭୃତି ସାହିତ୍ୟକୁ ସେ ତହିଁରେ ଏକତ୍ର କରିଥିଲେ ।

ଓଡ଼ିଶାରେ ଆଜ ପ୍ରତ୍ୟେକ ପେଷାଦାର ରଙ୍ଗମଞ୍ଚର ପାଦପ୍ରଦୀପ ଲିଭି ଯାଇଛି । କିନ୍ତୁ ଗୋଟିଏ ରଙ୍ଗମଞ୍ଚ ପ୍ରତିଷ୍ଠା କରିବା, ତାହାକୁ ଚଳାଇବା, ଏବଂ ସର୍ବୋପରି ମନୁଆ କଳାକାରଙ୍କୁ ଏକତ୍ର କରି କାର୍ଯ୍ୟ କରାଇବା ଯେ କେତେ କଠିନ କାର୍ଯ୍ୟ, ଯିଏ ତାହା ନ ଦେଖିଛି ତାହା ବିଶ୍ୱାସ କରି ପାରିବ ନାହିଁ । ଯେଉଁ ଜନତା ରଙ୍ଗମଞ୍ଚ ଦେଖନ୍ତି ତାହାର ଆଦ୍ୟ ରୂପ ଥିଲା "ରୂପଶ୍ରୀ ରଙ୍ଗମଞ୍ଚ" । ତାହା ପ୍ରତିଷ୍ଠା ହୋଇଥାଏ ଯେଉଁ ପାଖାପାଖି ଜାଗାରେ, ଯେଉଁଠାରେ କି ବର୍ତ୍ତମାନ ମଧୁସୂଦନ ଆଇନ କଲେଜ ହୋଇଛି । ସେହି ରୂପଶ୍ରୀ ରଙ୍ଗମଞ୍ଚର ସୃଷ୍ଟି ମୂଳରେ ଲକ୍ଷ୍ମୀଧର ବାବୁଙ୍କ ଦାନ ଯଥେଷ୍ଟ । ଅନେକ ଥର ମୁଁ ଲକ୍ଷ୍ମୀଧର ବାବୁଙ୍କ ସହିତ ସେହି ରଙ୍ଗମଞ୍ଚକୁ ଯାଇଛି । ରିହଲସାଲ ଦେଖିଛି । କଳାକାର ମାନଙ୍କ ମାନ ଅଭିମାନ ତୁଟାଇବାର ପାଳି ବି ଦେଖିଛି । ସେହି ରଙ୍ଗମଞ୍ଚ ପାଇଁ ଲକ୍ଷ୍ମୀଧର ବାବୁ ଶେଷରେ ବାଷଠି ହଜାର ଟଙ୍କାର ଋଣୀ ହେଲେ । କଟକ ଛାଡିଲେ ।

ଜୀବନରେ ବହୁ ଘାତ ପ୍ରତିଘାତ ସହି ଲକ୍ଷ୍ମୀଧର ବାବୁ ଏକ ନେଳସ୍ତ ପିଣ୍ଡା ନଦୀ ମଣିଷ । ସେ ଯାହାକୁ ବନ୍ଧୁ ବୋଲି କୋଳ କରିଛନ୍ତି ସେ ତାହାଙ୍କ ସହିତ ବିଶ୍ୱାସଘାତକତା କରିଛନ୍ତି । ତାହା ଲେଖି ବସିଲେ ପୋଥି-ପୁରାଣ ହେବ । ଜୀବନରେ ଯାହାର ଅନୁଭୂତି ନାହିଁ ସେ କଦାପି ଲେଖକ ହୋଇପାରେ ନାହିଁ । ଜାଣିଥିବୁ ତ ଆମ ଓଡ଼ିଶାରେ ସାହିତ୍ୟ ସମାଲୋଚକଙ୍କ କଥା ' ଯେଉଁ କେତୋଟା ପ୍ରଚଳିତ ପୁସ୍ତକ ନାଆଁକୁ ଧରି ସେମାନେ ଲେଖକର ଜାତି ଓ କୁଳ ବିଷୟରେ ଲେଖିଛନ୍ତି, ସେଥିରୁ ମୁଁ ତ କାହିଁ କାହା ଶୁଣିଛୁ ଲକ୍ଷ୍ମୀଧର ବାବୁଙ୍କ ଲିଖିତ ଉପନ୍ୟାସ 'ସୁରଭି-ହେଜନାଳୟ' କିମ୍ବା 'ସୁନା ପ୍ରତିମା'ର ନାମ ଏପର୍ଯ୍ୟନ୍ତ ଶୁଣି ନାହିଁ ?

ସେଇଭଳି ଦୁଇଖଣ୍ଡି ବହି ଏପର୍ଯ୍ୟନ୍ତ କ'ଣ ସମାଲୋଚକମାନଙ୍କ ଦୃଷ୍ଟିକୁ ଆସିନାହିଁ କି ? ସମସ୍ତେ ଲେଖିବେ, ପ୍ରଚଳିତ ପୁସ୍ତକ 'ହା'ରେ ଦୁର୍ଭାଗା ଦେଶ', 'ଇନ୍‌କ୍ଲାବ୍' 'ଆସିବ କେବେ ପ୍ରିୟ', 'ବର୍ଷାର ଶେଷ' ପ୍ରଭୃତି । କେତେଜଣ ପଢିଲେଣି ତାଙ୍କର "ରକ୍ତର ଢେଉ" ଓ "ମୋ ସ୍ୱପ୍ନର ସହର" ?

ଲକ୍ଷ୍ମୀଧର ବାବୁ ଏକାଧାରରେ କବି, ଔପନ୍ୟାସିକ, ନାଟ୍ୟ-କାର, ଗାଳ୍ପିକ, ଏବଂ ଭ୍ରମଣ କାହାଣୀ ଲେଖକ ।

ଅଜକୁ ପାଞ୍ଚବର୍ଷ ତଳେ ତାଙ୍କ ସହିତ ଦେଖା ହୋଇଗଲା ଧର୍ମଭରମ୍ ଷ୍ଟେସନରେ ହଠାତ୍ । ମୁଁ ଥିଲି ପୁଟ୍ଟପର୍ତ୍ତୀର ଯାତ୍ରୀ । ସେ ମଧ୍ୟ ଥିଲେ କରୁଣାମୟ ଭଗବାନ ସତ୍ୟସାଇ ବାବାଙ୍କର ଦର୍ଶନାଭିଳାଷୀ ଭକ୍ତ । ମୁଣ୍ଡ ନଇଁଗଲା । ପ୍ରଣତି ଜଣାଇଲି । କହିଲେ—ପରମେଶ୍ୱର ବାବୁ, ଠିକ୍ ବାଟ ଧରିଛ । ଯାହା ସତ୍ୟ ତାହାହିଁ ଈଶ୍ୱର । ଆମେ ସମସ୍ତେ ଭଗବାନ । କାରଣ ଆମ ବାପା, ଜେଜେ ବାପା, ଭଗବାନଙ୍କ କାହାଣୀ ଶୁଣୁଥିଲେ । କିନ୍ତୁ ଆମେ ଯାଉଛେ ସ୍ୱୟଂ ଅବତାରୀ ପୁରୁଷ ଭଗବାନଙ୍କୁ ଦର୍ଶନ ପାଇଁ । ଦୁଇଦିନ ପୁଟ୍ଟପର୍ତ୍ତୀରେ ରହିଲୁ । ସେ ଅନୁଭୂତି ବିଚିତ୍ର ଧରଣର ।

ଲକ୍ଷ୍ମୀଧର ବାବୁ କ'ଣ କେବଳ ଜଣେ ସାହିତ୍ୟ-ସେବୀ ? ସେ ହେଉଛନ୍ତି ଜଣେ ପ୍ରବାସୀ ସଂଗଠକ । 'ସିଂହଭୂମିରେ ଗୋପବନ୍ଧୁ' ପୁସ୍ତକ ପଢିଲେ ତାଙ୍କର ସଂଗଠନ ବିଷୟରେ ସଂପୂର୍ଣ୍ଣ ଧାରଣା ହୁଏ । ସାଥୀ ଉପନ୍ୟାସ ସିରିଜ୍ ସେ ବାହାର କରିଥିଲେ ପ୍ରବାସରୁ । ବଟୁଆ ପ୍ରବନ୍ଧର ଲେଖକ ୰ଗୋବିନ୍ଦ ତ୍ରିପାଠୀଙ୍କର "ଚତୁର ଗଦାଧର" ରହସ୍ୟ ରୋମାଞ୍ଚ ଉପନ୍ୟାସ ବି ସେହି ସିରିଜ୍‌ରେ ପ୍ରକାଶିତ କରିଥିଲେ । ତାପରେ କଟକ ଗ୍ରୁଡ଼ ଯେତେବେଳେ କଟଣୀରେ ରହିଲେ—ଆରମ୍ଭକଲେ ଦୀପ୍ତି ଉପନ୍ୟାସ ସିରିଜ୍ ।

ବୟସ ବର୍ତ୍ତମାନ ତାହାଙ୍କୁ ସତୁରି ବର୍ଷ । ଦେଖିଲେ କିଣ ଜଣା ପଡ଼ନ୍ତି ଏତେ ବୟସ ? ଏବେ ବି ସାଇକେଲ ପେଲୁଛନ୍ତି । କଲମ ଗୁଡ଼ି

କରୁଛନ୍ତି । କର୍ମଠ ଅଛନ୍ତି । କହିଲି, ଆମକୁ ସତୁରିବର୍ଷ ହେବା ପର୍ଯ୍ୟନ୍ତ ଆମେ ଏଇ ପରି ରହି ପାରିବା କି ?

ନିରୋଗ ସ୍ୱାସ୍ଥ୍ୟ ପାଇଁ ମନରେ ସନ୍ତୋଷ ଦରକାର । ସିଏ ସମସ୍ତ ଦୁଃଖ କଷ୍ଟ, ଛଳନା, ପ୍ରତାରଣାକୁ ନୀଳକଣ୍ଠ ଭଳି ପାନକରି ଏବେ ବି ହସୁଛନ୍ତି । ତାହାହିଁ ତାଙ୍କ ବ୍ୟକ୍ତିତ୍ୱର ପରମ ବୈଶିଷ୍ଟ୍ୟ ।

ମନେ ଅଛି ସେ ପ୍ରଶ୍ନ କରିଥିଲେ—ଏତେ ବହି ତ ଲେଖିଲଣି ! ରୟାଲ୍‌ଟି କେତେ ପାଉଛ ?

ମୁଁ କହିଲି—ଆପଣ ତ ମୋର ଅଗ୍ରଜ । ଆପଣଙ୍କର ମାନସ ପୁତ୍ର-କନ୍ୟା କ'ଣ ମୋ ଠାରୁ କମ୍ କି ? ସେମାନେ କେତେ ଅର୍ଜନକରି ଆପଣଙ୍କୁ ପୋଷୁଛନ୍ତି ?

ସେ ହସିଦେଇ କହିଲେ—ଓଡ଼ିଶାରେ ଲେଖକ ହେବା ଅର୍ଥ ହାତରୁ ଖାଇ ଘୋଡ଼ାଆଗେ ନାଚିବା । ହଁ, ଜଣେ ଅଧେ ଭଲ ପ୍ରକାଶକ ଅଛନ୍ତି, ଆଉ କେତେଜଣ ମୁଷ୍ଟିମେୟ ଲେଖକ ହିସାବ୍ ରୟାଲ୍‌ଟି ପାଉଛନ୍ତି । କିନ୍ତୁ ତାହା କ'ଣ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ହେବା ଉଚିତ ନୁହେଁ ପରମେଶ୍ୱର ?

ମୁରାରି, ଦୁଃଖ କହିବି କି ସୁଖ କହିବି—ନା, ଯାହା ଅଟେ ନଥିଛି ତାହା କହିବି—କହିଲି ପରି ମୁଁ ଏତିକ ଲେଖିଲି । ଲକ୍ଷ୍ମୀଧର ବାବୁଙ୍କ ଷଷ୍ଠିପୂର୍ତ୍ତିରେ ଲେଖିବାକୁ ଯାଇ ମୁଁ ମୋ ଷଷ୍ଠିପୂର୍ତ୍ତିରେ ଗୁଡ଼ାଏ ଲେଖିବସିଲି । ସେଥିପାଇଁ କବି ବନ୍ଧୁ ବନମାଳୀ ସାହୁଙ୍କର ଛଦ୍ମନାମରେ ପ୍ରକାଶିତ କବିତାର ଦୁଇଟି ପଂକ୍ତି ଆଜି ମନେ ପଡ଼ୁଯାଉଛି । ସେଇଟି ହେଲା—

"ତୁମ କଥା ଯେବେ କହିବି ବନ୍ଧୁ,
ମୋ କଥା କହିବା ନୁହେଁ ତ,
ଜୀବନର ଶତ ବନ୍ଧୁର ପଥେ
କରୁଣ ମନ୍ଥର ନୁହେଁ ତ ।"

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତୁ ଜଣେ ଅଗ୍ରଗାମୀ ସଙ୍ଗଠକ । ହଇରେ; ସଙ୍ଗଠନ କାର୍ଯ୍ୟ ବଡ଼ କଠିନ କାର୍ଯ୍ୟ । ପୁଣି ସଙ୍କଳନଟିଏ ପ୍ରକାଶ କରିବାକୁ ହେଲେ ଆମ ଦେଶରେ ଲେଖକମାନଙ୍କୁ ବାରମ୍ବାର ଅନୁରୋଧ କରିବାକୁ ହୁଏ । ଯାହା ବହୁତ ସେ ଅଭିଜ୍ଞତା 'ଉତ୍କଳ ପାଠକ ସଂସଦ'ରୁ ଲାଭ କରି ପାରିଛୁ । ତୁ ତ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ କବି ଓ ସମାଲୋଚକ । ସୁଦ୍ଧା ଯାହାକୁ ତୋ' ସଙ୍ଗଠନର ଅଦ୍ଭୁତ କାର୍ଯ୍ୟର ଜାରିରୁ ପୂର୍ଣ୍ଣ ଆଜି ସମଗ୍ର ଓଡ଼ିଆ ସାହିତ୍ୟରେ ଯେଉଁ ଅଭିନବ ଅଧ୍ୟାୟ ସୃଷ୍ଟି କରିଛୁ ତା'ର ଦୃଷ୍ଟାନ୍ତର ନାହିଁ । ତୋ ସଙ୍ଗଠନ ଶକ୍ତିକୁ ବଧାଇ ଦେବା ପାଇଁ ମୋ ପାଖରେ ଭାଷା କାହିଁ ? ସତରେ ମୁଁ ଭାବିଛି, ଅନେକ କିଛି ଲେଖିବା ପାଇଁ ଇଚ୍ଛା ହେଉଛି । ତିରିଶବର୍ଷର ଅନୁଭୂତି । କ'ଣ କମ୍ କି ? ତେଣୁ ଏ ପଦଟି ଏଠାରେ ଶେଷକଲି ବେଳକୁ ପୁଣି ଧେଇ ବନମାଳୀ ସାହୁଙ୍କର କବିତାରୁ ଆଉ ପଂକ୍ତିଟିଏ ଲେଖୁଛି । ତାକୁ ପଢ଼ିଲେ ତୁ ସବୁ ବୁଝି ପାରିବୁ । ତୁ ସବୁ ବିଖ୍ୟାତ ରସଜ୍ଞ !

ଭୁକୁର ଦରଜ ବୁଝିବାକୁ ଲୋକ ମିଳେନ
ଥିଲେ ଅବା ଥିବେ କୋଟିକେ ଗୋଟିଏ ଜଗତେ
ଖୋଜ କହିବାକୁ ଶତ୍ରୁ ଯେତେକ ବଳେନ
ନକହିଲେ ଶତ୍ରୁ ଲୋଡ଼ଇ ଯେତିକ ଆରତେ ।

ତୋର
ସ୍ନେହର ଓ ସମ୍ମାନର
ସମେଶ୍ବର



ସିଟି ହସ୍ପିଟାଲ
କଟକ

# ହାଁରେ ଦୁର୍ଭାଗା ଦେଶ
# ଚିହ୍ନିଲୁ କି ନାହିଁ ?



ଡକ୍ଟର କୁଞ୍ଜବିହାରୀ ଦାଶ

ଆରାମ ଚୌକିରେ ବସି
ଘୁମାଇଁ ଘୁମାଇଁ
ଆକାଶକୁ ଚୁମ୍ବି
ତୁମେ ଲେଖିଲ କବିତା
ବଞ୍ଚିବା ପାଇଁ କି ତୁମେ
ସହୁଥିଅଛ ଅହରହ
ଶ୍ରମର ସ୍ୱେଦରୁ ଝରେ
ସେତିକି ବିନ୍ଦୁ ଜୀବନର ଚିନ୍ତା !

ମେସିନ୍‌ରେ ଛପାଉଛ
ଖଞ୍ଜୁଛ ଅକ୍ଷର
ଅବା ଦେଖୁଅଛ ପ୍ରୁଫ୍
ପୁଣି ଲେଖୁଅଛ ବହି
ବିଶ୍ରାମ ବିହୀନ ଶ୍ରମେ
ଜୀବନଟା ନେଲ ତୁମ ବହି ।

ଏ କ୍ଷଣେ ନାଟକ ଲେଖ
ଆଉ କ୍ଷଣେ ଶିଖାଅ ଯେ ଅଭିନୟ
ବେଶ କର ଓଡ଼ିଆ ନର୍ତ୍ତକୀ
କବିତା ଆବୃତ୍ତି କର
ପ୍ରଣୟର ପଦ ଲେଖ
ଭୁଲିଲ କି ସଖୀ ?

ପେଷାଦାରୀ ନାଟ୍ୟଦଳ ଗଢ଼ି
ବୁଲ କେବେ ନଗରେ ନଗରେ
ତୁମେ ଜଣେ ଅଭିନେତା ବାହାରେ ବା ଘରେ ।

କେବେ ଘୋର ବ୍ୟବସାୟୀ
ହିସାବ ନିକାଶ କର
କେବେ ଅବା କବି ହଲ୍
ସାମ୍ନାରେ ଉଡ଼ିଯାଏ ବଳାକାର ଶ୍ରେଣୀ
ଝୁଲେ ଅବା ଯୁଇଫୁଲେ ଭରା ଏକ ବେଣୀ ।

ବାସ୍ତବ ସୈନିକ ଜଣେ
କେତେ ଯେ ସ୍ୱପନ ଦେଖେ
ଜରା ଜର୍ଜରିତ ଦେହ କେତେ ଯେ ଉଚ୍ଛ୍ୱାସ
ରହିଅଛି ଦୂର
ସ୍ୱପ୍ନ ଦେଖିବାର ଏତେ ମୌକା ହଏ
ବସନ୍ତ ଗୋଧୂଳି ।

ଲକ୍ଷ୍ମୀ ବରପୁତ୍ର ହେବା
ସେ ଆଶାରେ ଦିଆହେଲା
ନାମ ଲକ୍ଷ୍ମୀଧର

ଛିନ୍ନ ବୀଣାଟିଏ ଧରି ବଜାଇଲ
ଲକ୍ଷ୍ମୀଛଡ଼ା ତୁମେ ଯାଯାବର ।

କିଛି ନଥିଲର ରୂପ
ମୁହିଁ ଦେଖେ ବହୁ କିଛି ହଜାଇଲା ପର
ବେପରୁଆ ମନ ତୁମ
ସୁନାର ଝଲକ ଧରେ
ଜୀବନଟା ଯାକ ପୋଡ଼ି ଜଳ ।

ପାଦତ ଗଲଣି ଥକ
ଦଉଡ଼ିବା ଶ୍ରମ ବା କାହିଁ ?
ଗାଇ ଗାଇ ତୋଣ୍ଟି ଫାଟିଲଣି
କେବେ ଗାଉଛୁ ସେ ଗୀତ
ଦ୍ୱାରେ ଦୁର୍ଗା ଦେଶ
ଶୁଣିଲୁ ବ ନାହିଁ ? ?

●

ହୃଦୟଶ୍ରୀ
ଜାନ୍ସୁମୈଶ୍ର ଲେନ୍
କଟକ

# ସଘନ ସବୁଜ ସାହିତ୍ୟର ଜଣେ ଆଗୁଆ ସ୍ରଷ୍ଟା ସଙ୍ଗେ ମୋର ପରିଚୟ



କମଳଲୋଚନ ମହାନ୍ତି

ତାଙ୍କୁ ଜାଣିଥାଏ । ଶୈଶବରୁ ତାଙ୍କ ସାହିତ୍ୟ କୃତିରେ ଆତ୍ମ-ହରେଇ ହୋଇ ପଢ଼ୁଥାଏ । ତାଙ୍କ ନାଟକ ଧର୍ମପତ୍ନୀ, ଲଲ ଗୁଲୁକ ରଙ୍ଗମଞ୍ଚରେ ଅଭିନୟ ହେବାର ଦେଖି, ଏମିତି ନାଟକ ଲେଖି ପାରନ୍ତି କି ! ଏଇ ପ୍ରେରଣା ନେଇ ତାଙ୍କୁ ଦେଖିବାକୁ ଖୋଜ ବୁଲୁଥାଏ ।

ହେଲେ କେଉଁଠି ନା କେଉଁଠି ଅତ୍ମଗୋପନ କରିଥାନ୍ତି ନା କ'ଣ ? କଏ କହେ ସେ ଟାଟାରେ ଛନ୍ତି । ସେରେଇକଲା, ଖରସୁଆଁ, ଚକ୍ରଧରପୁର ବା ଅନ୍ୟ କୌଣସି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ପ୍ରୀତି ନେଇ ଦେଶମିଶ୍ରଣ, ସାହିତ୍ୟ ସାଧନା, କଳା, ସଂସ୍କୃତି ନେଇ ବ୍ୟସ୍ତ ଛନ୍ତି । ଅଉ ତ ମାଳକଣ୍ଠଙ୍କର "ନବଭାରତ" ପତ୍ରିକାର ମଧ୍ୟ ପ୍ରଧାନ ସଂସ୍କରଣ ହେଉନାହିଁ । ତେଣୁ ସେ କଟକ କମ୍ ଆସନ୍ତି ।

ନୂତନ ପ୍ରେସ ଥିଏଟର ଚଳାଇବାରେ କିଛୁକାଳ କଟକରେ ରହୁ-ଥିଲେ । କଳାକାର ଓ ବନ୍ଧୁମାନଙ୍କଠାରୁ ଗୁରୁତର ଧକ୍କାରେ ଆର୍ଥିକ କ୍ଷତି ସହି ଓଡ଼ିଆ ସ୍ୱାର୍ଥରକ୍ଷା କରିବା ପାଇଁ ଓଡ଼ିଶା ବାହାରେ ବାହାରେ ସମୟ କଟାଇ ଦେଇଅଛନ୍ତି ।

"ଭୁଲିଲି ସତେ ସଖୀ", 'ହାୟରେ ଦୁର୍ଭାଗା ଦେଶ' ୧ମ ଭାଗ ଓ ୨ୟ ଭାଗ ବହି ସାଇତ ରଖିଥାଏ । 'ସବ୍‌ହଗ୍' ଉପନ୍ୟାସ ଓ

'ମଲ ସ୍ମୃତିକ' ଦୁଇଟିଯାକ ବହି ପଢ଼ି ଉପନ୍ୟାସକୁ କପରି ନାଟ୍ୟରୂପ ଦିଆଯାଇ ପାରେ, ସେ ଶୈଳ୍ପିକ ସ୍କ୍ରିପ୍ଟର ଅନୁସନ୍ଧାନ କରୁଥାଏ । ମନେ-ମନେ ଖୋଜୁଥାଏ ସେ ମୋର ମନର ନାୟକ ଲକ୍ଷ୍ମୀଧର ନାୟକ କପରି ? କପରି ତାଙ୍କ ସଙ୍ଗରେ ପରିଚୟ ହୁଅନ୍ତା କ ? ଜୀବନରେ ଏ ଗୋଟାଏ ଜ୍ୱଳନ୍ତ ବାସନା ଦର୍ଶନ ଧରି ରହିଆସିଥିଲା ।

ଏକାଧାରରେ କବି / ଔପନ୍ୟାସିକ / ଗୀତକାର / ସାମ୍ବାଦିକ/ ସମ୍ପାଦକ । କ'ଣ କୌଣସି ସ୍ୱୀକୃତି କରନ୍ତୁନାହିଁ ? ଝିଅମାନଙ୍କର ସିକ୍ୟୁରିଟି (Security) ପାଇଁ ବିବାହ ଉପରେ ଅନିବାର୍ଯ୍ୟ, ଶିକ୍ଷକର ହେଉ/ ସାହିତ୍ୟିକ ହେଉ/କଳାପ୍ରେମୀ ହେଉ, ମୋର ପରିଚିତ ପ୍ରତ୍ୟେକ ପ୍ରତିଭାସନ୍ନ ସ୍ୱୀକୃତି କରୁଛନ୍ତି । ସେ ସ୍ୱୀକୃତି ନ କରି ଜୀବନ ନିର୍ବାହ କରନ୍ତି କପରି ?

ଆକାଶର ଖଣ୍ଡଖଣ୍ଡ ଚଳ ମେଘ ପରି ଅବସର ସମୟରେ ବହୁ-ବାର ଶ୍ରୀ ନାୟକଙ୍କ ବିଷୟରେ ନାନା ଚିନ୍ତନା ଭାସିଯାଉଥାଏ । ସେତେ-ବେଳକୁ ଦେଖାଦାର ରଙ୍ଗମଞ୍ଚରେ ମୋର ଅନେକଗୁଡ଼ିଏ ନାଟକ ଅଭିନୀତ ହୋଇ ଯାଇଥାଏ । ପ୍ରୌଢ଼ଶିକ୍ଷା ବିଭାଗ ତରଫରୁ ନାଟକ ପ୍ରତି-ଯୋଗିତାରେ ମୋର ଲେଖା ଶ୍ରେଷ୍ଠ ବିବେଚିତ ହୋଇ ପ୍ରଥମ ପୁରସ୍କାର ମିଳିସାରିଥାଏ । ପ୍ରୌଢ଼ଶିକ୍ଷା ପାଇଁ ସ୍ୱମାନ୍ୟ ଭାବରେ ତିନି ବର୍ଷକାଳ ଲଗାଲଗ୍ ଭାରତ ସରକାରଙ୍କଦ୍ୱାରା ପୁରସ୍କୃତ ହୋଇ ସାରିଥାଏ । ନିଜର ଆର୍ଥିକ ଅବସ୍ଥାଦୃଢ଼ କରିବା ପାଇଁ ସରକାରୀ ଦପ୍ତରରେ ଉପ-ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରୁଥାଏ ।

ଜ୍ୟେଷ୍ଠ ମାସର ଏକ ନିଦାରୁଣ ମଧ୍ୟାହ୍ନ । ସରକାରୀ ପ୍ରକୋଷ୍ଠରେ ବସି ଅଖିଲ ବୃତ୍ତିଜ୍ଞ ଉପଲକ୍ଷେ ବେଚାରା ଲକ୍ଷଣ ଚଠା ପ୍ରସ୍ତୁତ କରୁ-ଥାଏ । ଫୋନ ବାଜିଉଠିଲା । ରିସିଭରରେ ଫୋନଟି ଧରିଲି । ଫୋନରେ ଜବାବ୍ ଆସିଲା । ମୁଁ ଡକ୍ଟର ମାନସିଂହ କହୁଛି । ମଣି ମହାରାଜଙ୍କ ଆଶ୍ରମରୁ । ସେ କଳ୍ପନା ସିନେମା ଦ୍ୱାରରେ ଆସିଲେ, ତାଙ୍କ ଅଶ୍ରମ ଯିବେ । ଶୀଘ୍ର ଆସ । ଗାଡ଼ି ପଠାଇବୁ ।

ନା, ମୁଁ ସରକାରୀ ଗାଡ଼ିରେ ଯାଉଛି । ଜରୁରୀ ଖବର । ମଣି ମହାରାଜ । ଡକ୍ଟର ମାନସିଂହ କେଉଁ ଦିନରୁ ମହନ୍ତ, ମହାରାଜ, ସନ୍ୟାସୀ

ସଙ୍ଗ-ଲକଯୀ ହୋଇଯାଇଛନ୍ତି ? ମନରେ କୌତୂହଳ, ମଣ୍ଟୁ ମହାରାଜଙ୍କ ବାସଭବନ ଖୋଜିବାକୁ କଷ୍ଟକର ହେଲା ନାହିଁ । ତାଙ୍କ ଡ୍ରଇଂ ରୁମକୁ ପଶିଗଲୁ । ଡକ୍ଟର ମାନସିଂହ, କବି ରାଧାମୋହନ ଗଡ଼ନାୟକ, ଅନ୍ୟ-ଜଣେ ଗୋରା କୃଷ୍ଣକୁଞ୍ଚିଆ ବାଳ, ସୁନା ଚଷମା ପିନ୍ଧା ହସହସ ମୂର୍ତ୍ତି ବାରବାର ମୋ ଆଡ଼କୁ ଅନାଇ ଦେଉଥାନ୍ତି । ଏକା ଧାଡ଼ିରେ ତିନିଜଣ-ଯାକ ବସିଥାନ୍ତି । ଆଉ ସେମାନଙ୍କ ସମ୍ମୁଖରେ ସିଂହାସନ ଆରୋହଣ କରି ବସିଥାନ୍ତି ମଣ୍ଟୁ ମହାରାଜ । ଆସନ ବ୍ୟସନରୁ ଗୁରୁଙ୍କର ପରିଚୟ ମିଳିଯିବା ସ୍ୱାଭାବିକ ।

ହେଲେ ମାନସିଂହ ଓ ଗଡ଼ନାୟକ ପାଖରେ ଏ ତୃତୀୟ ପୁରୁଷଟି କିଏ ? ବେଶ୍ ମନ-ମୁଗ୍ଧକର ଚେହେରା । ଯାଣାଜଣା କଣ୍ଠସ୍ୱର ।

ମୋର ତ କୌଣସି ବାବାଜୀଙ୍କର କେବେ ଭକ୍ତ ବା ଶିଷ୍ୟ ହେବାର ବାସନା ନ ଥିଲା । ତେଣୁ ତାଙ୍କ ପ୍ରତି କୃତ୍ରିମ ଭକ୍ତି ପ୍ରଦର୍ଶନ କରି ସେ ତୃତୀୟ ପୁରୁଷଙ୍କ ବିଷୟରେ ବିଶେଷ ଆଗ୍ରହୀ ହେବାର ବାସନା ଜାଗ୍ରତ ହେଉଥିଲା । କାରଣ ମାନସିଂହ, ଗଡ଼ନାୟକଙ୍କ ପାଖରେ କେବେହେଁ ବ୍ୟବସାୟୀ, ରାଜନୀତିକ କିମ୍ବା ସରକାରୀ କର୍ମଚାରୀଙ୍କ ଚହଟରେ ଏପରି ମନଖୋଲା ଗୋଟିଏ ସହଜ ସୁଲଭ, ଚିତ୍ତ ଜୟ କରିବା ପରିବେଶ ସୃଷ୍ଟି ହୋଇ ପାରେନା । ଏ ଜଣେ କେଉଁ ପ୍ରତିଭାସମ୍ପନ୍ନ କବି, ସାହିତ୍ୟିକ, କଳାକାର ସାଂସ୍କୃତିକ ପ୍ରେମୀ ଉତ୍କଳର ବରପୁତ୍ର ହୋଇଥିବେ ନିଶ୍ଚୟ ।

ପ୍ରାରମ୍ଭିକ ଉପକ୍ରମ କରିଦେଲେ ଡକ୍ଟର ମାନସିଂହ । ମଣ୍ଟୁ ମହାରାଜଙ୍କ କରୁଣା ପାଇଁ ମୋତେ ଆଶୀର୍ବାଦ ମାଗିବାକୁ ଆଦେଶ ଦେଲେ । ମଣ୍ଟୁ ମହାରାଜଙ୍କଠାରୁ ଆଶୀର୍ବାଦ ମାଗି ଚରଣଧୂଳି ନେବା ପାଇଁ ଚିତ୍ତ ବଳୁ ନ ଥିଲେ ମଧ୍ୟ, ଡକ୍ଟର ମାନସିଂହଙ୍କ ଆଦେଶ ମାନି ନେଲି ।

ତା'ପରେ ତୃତୀୟ ପୁରୁଷଙ୍କର ପରିଚୟ ପାଇଲି । ମନ ବହୁ ବର୍ଷ ଧରି ଯେଉଁ ପ୍ରତିଭାର ସନ୍ଧାନ ପାଇଁ, ହୃଦୟର ଭକ୍ତି ଶ୍ରଦ୍ଧା ଅଜାଡ଼ି

ଦେବାପାଇଁ ଯାହାଙ୍କ ଅନ୍ୱେଷଣରେ ଥିଲି, ସେଇ ବ୍ୟକ୍ତିଟି ହେଉଛନ୍ତି ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ।

ଲକ୍ଷ୍ମୀଧର ନାୟକ, ରାଧାମୋହନ ଗଡ଼ନାୟକ, ଉତ୍ତର ମାୟାଧର ମାନସିଂହ ଓଡ଼ିଆ ସବୁଜ ସାହିତ୍ୟ ଯୁଗର ଏ ତନୋଟି ଯୋଜନା ଗ୍ରହଣ କଲାପରି ଆମ ବାଡ଼ ବଟିଗ୍ୱର ସଦନ ପ୍ରଣାଳୀ ଅନୁକରଣ କରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅପୂର୍ବ ପ୍ରାଣ-ପ୍ରାଚୁର୍ଯ୍ୟର ଶସ୍ୟ ଉତ୍ପାଦନ କରିଛନ୍ତି। ଏଇ ମିଳନ ପୀଠରେ ମଣ୍ଡୁ ମହାରାଜ ମୋ ପାଖରେ ଗୌଣ ହୋଇ ଉଠିଲେ। ଏମାନେ ମୋ ମାନସ ରାଜ୍ୟର ଏକୁ ଆରେକ ବଳଆର ସ୍ରଷ୍ଟା···ଦର୍ଦ୍ରଷ୍ଟା। ସେଇ ଦଗଦ୍ରଷ୍ଟା ଲକ୍ଷ୍ମୀଧର ନାୟକଙ୍କର ୫୦ ବର୍ଷ ସାହିତ୍ୟ ସାଧନାର କଳ-ଫଳ, ସୌନ୍ଦର୍ଯ୍ୟରେ ମନ ପୁଲକିତ ହୋଇ ଉଠୁଛି।

ଆମ ସମାଜର ମଣିଷକୁ ଅନାଅ। ମାନବବାଦ ବିଶ୍ୱର ଏକମାତ୍ର ସତ୍ୟ। ମଣିଷକୁ ସୁନ୍ଦର କର—ସେ ହିଁ ଶିବ। କଳା ସଂସ୍କୃତି ଧର୍ମକୁ ଭୁଲି, ଧର୍ମର ଆଗ୍ରହ ପ୍ରତି ଆମ ସମାଜ ଯେତେବେଳେ ସଚେତନ ଥିଲା, ଲୋକଙ୍କୁ ସମାଜକୁ ଧର୍ମଗୁରୁଠାରୁ ଧର୍ମପାଳନ କରିବା ପାଇଁ ଯେଉଁ ଚିନ୍ତା ଓ ଚେତାବନୀ ଯୁଗଦ୍ରଷ୍ଟା ସାହିତ୍ୟିକ ଶୁଣାଇବାକୁ ବ୍ୟଗ୍ର ହୋଇ ଉଠିଲେ, ସେମାନଙ୍କ ମଧ୍ୟରେ ଲକ୍ଷ୍ମୀଧର ନାୟକ ଏକ ଅଗ୍ରଣୀ ସାଧକ।

ସେ ଜୀବନରେ Security ପାଇଁ ଅନ୍ୟାନ୍ୟ ସାହିତ୍ୟ ସାଧକଙ୍କ ପରି ନିଜ ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟକୁ ବଳିଦେଇ ନାହାନ୍ତି। ସାହିତ୍ୟିକ ଯେ ନିଜ ପ୍ରତିଭାକୁ ପୁଞ୍ଜି କରି, ନିଜର ତେଲ ଲୁଣରେ ସଂସାର ଚଳାଇ, ଦୋକାନର ଯୁଗଯନ୍ତ୍ରଣାକୁ ଭ୍ରୂକ୍ଷେପ ନ କରି, ସାଧୁ ଲୋକଙ୍କ ପରି ବଞ୍ଚିପାରେ, ତା'ର ପ୍ରତୀକ ଲକ୍ଷ୍ମୀଧର ନାୟକ। ସ୍ୱର୍ଗତଃ ବାଳକୃଷ୍ଣ କର ତାଙ୍କର ପ୍ରଥମ ଉପନ୍ୟାସ ପ୍ରକାଶ କରିବାକୁ ଯାଇ, ଉପନ୍ୟାସ ଲେଖିବାର ମୂଲ୍ୟ ଦେଇ କହିଲେ—ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଲେଖକ ଯେ ପାରିଶ୍ରମିକ ପାଇପାରେ, ତାହାର ପ୍ରତୀକ ଶ୍ରୀ ଲକ୍ଷ୍ମୀଧର ନାୟକ।

ମଧ୍ୟଯୁଗୀୟ ଅନ୍ଧକାର, କୁସଂସ୍କାର, ଅନ୍ଧ ଧର୍ମବିଶ୍ୱାସକୁ ଏଡ଼ାଇ ସବୁଜ ଯୁଗର ନୂଆ ଦୃଷ୍ଟିକୋଣ, ବିବେକକୁ ଖଟାଇ, ଭୁଲ୍ ଠିକ୍ ନିର୍ଦ୍ଧାରଣ କରି, ସମାଜ ସଂସ୍କାରକୁ ଆଖି ଆଗରେ ରଖି ଶ୍ରୀ ନାୟକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ବିପୁଳ ଫସଲ ତିଆରି କରି ପାରିଛନ୍ତି, ତାହା ତାଙ୍କ ସାଧନାର ସିଦ୍ଧି ଲବ୍ଧ । ସେଥିପାଇଁ ମୋର ବନ୍ଧୁଗଣ ଯେଉଁ ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛନ୍ତି, ତାହା ସମୟୋପଯୋଗୀ ।

ଓଡ଼ିଆ ଜାତିର ଅଭ୍ୟାସ—ସେ କୀର୍ତ୍ତିରେ ବିଶ୍ୱାସ କରେ । ମୁଁ ତେଣୁ କବି/ନାଟ୍ୟକାର/ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କର ଅମର ସାହିତ୍ୟ-କୃତି ଓ କୀର୍ତ୍ତିର ଉପାସକ, ଭକ୍ତ । ଉତ୍ତରାଧିକାରୀ ହେବାର ଗୌରବ ମନେକରେ । ତେଣୁ ଏଇ ସବୁଜ ଯୁଗର ଅନ୍ୟତମ ନିଷ୍ଠାପର ଋଷି ଶ୍ରୀ ଲକ୍ଷ୍ମୀଧର ନାୟକ ଯେ କି ଯୁଗଯନ୍ତ୍ରଣାରେ ଠେଲପେଲ ହୋଇ ସମଦଶା-ପନ୍ନ ଦେଶବାସୀଙ୍କ ଯନ୍ତ୍ରଣାର ଉତ୍ତାପକୁ ନିଜ ଦେହରେ ଜଡ଼ାଇ ମଣିଷ-ବାଦ କଥା ତାଙ୍କର ବହୁମୁଖୀ ସାହିତ୍ୟ ପ୍ରତିଭା ମାଧ୍ୟମରେ ଏ ଜାତିକୁ ଦେଇ ଯାଇଛନ୍ତି, ତାହା ଅତି ସଘନ/ଅତି ମର୍ଯ୍ୟାଦାବନ୍ତ/ଅତି ଗୌରବ-ମୟ ଓ ଯୁଗଯୁଗକୁ ଭବିଷ୍ୟତ ବଂଶଧରମାନଙ୍କୁ ପ୍ରେରଣା ଯୋଗାଇବ ।

●

ହୋମ୍ ଷ୍ଟେସନ
ଭୁବନେଶ୍ୱର

# ଲକ୍ଷ୍ୟଭେଦୀ
# ଲକ୍ଷ୍ମୀଧର



ଡକ୍ଟର ବିରଞ୍ଚିନାରାୟଣ ମହାନ୍ତି

ବିଂଶ ଶତାବ୍ଦୀର ଅର୍ଦ୍ଧଶତାଧିକ ବର୍ଷ ଧରି ଲେଖକଭାବେ ତାଙ୍କର ନାମ ଜଣାଶୁଣା । 'ଯବନିକା', 'ଉଦ୍‌ଭ୍ରାନ୍ତ' 'ହା'ରେ ଦୁର୍ଭାଗା ଦେଶ' ଓ 'ବର୍ଷାର ଶେଷ' ଉପନ୍ୟାସର ଲେଖକ ଭାବେ ତାଙ୍କ ଲେଖନୀର ଯାଦୁକରୀ ଶକ୍ତି ଓଡ଼ିଶାର ପ୍ରତିପର୍ଣ୍ଣରେ ବିଜ୍ଞାପିତ । 'ଧର୍ମ ପତ୍ନୀ', 'ଲ୍ଲକ-ଗ୍ଲୁକ', 'ଜମିଦାର'ର ନାଟ୍ୟକାର ଭାବରେ ସେ ବହୁଦିନ ଧରି ଓଡ଼ିଶାର ଜନଗଣମାନଙ୍କୁ ସ୍ନେହ ଡୋରରେ ବାନ୍ଧି ରଖିଥିଲେ । 'ଝୋଲ୍‌-ଝର୍କା', 'ଝରଝରଣୀ', 'କ୍ଷତିରୁ ଜ୍ୟୋତ୍ସ୍ନା' ଓ 'ସେ' କବିତା ଚୟନର କବି ଭାବରେ ବିଦଗ୍‌ଧ ପାଠକ ସମାଜରେ ଅଦୃତ । 'କଙ୍କାଳ' ଓ 'ଗୋଟିଏ ରାତିର ସାଥୀ'ର ଗଳ୍ପକାର ଭାବରେ ସେ ପ୍ରଶଂସିତ । 'କେତେ କେତେ ଲେଖା' ଓ 'ସିଂହଭୂମିର ଗୋପବନ୍ଧୁ' ପୁସ୍ତକଗୁଡ଼ିକ ତାଙ୍କର ମାନବଶୀଳତାର ପରିଚ୍ୟାୟକ । ଏତଦ୍‌ବ୍ୟତୀତ 'ସୁନାପ୍ରତିମା' 'ସେ ମରନାହିଁ','ସେ ଦିନ ଆସିବ','ମୋ ସ୍ୱପ୍ନର ସହର', 'ଭୁଲିଲ ସତେ ସଖି' 'ଟରଚହ୍ନାର ରାତି,' 'ଶେଷ ଦେଖା ପରେ,' 'ବାସନ୍ତୀ ପାଠାଗାର', 'ପ୍ରତିମା କଥା କୁହ', 'ନୁହେଁ ସେ ପ୍ରେମିକା,' 'ସୁଦୂର ଯୋଜନାଳୟ' 'ଆସିବ କେବେ ପ୍ରିୟ', 'ବୋଲାଭୂମିର ଅନୁରାଧା', ଓ 'ଏ ଦେଶ ଗଢ଼ିବେ ସେମାନେ' ଆଦି ଉପନ୍ୟାସମାନ କ୍ଲାନ୍ତଶ୍ରାନ୍ତ ପାଠକ ପାଠିକାଙ୍କ ମନରେ ଭରିଦେଇଛନ୍ତି ପ୍ରୀତିର ପୂରବୀ । ଏତେ ଗୁଡ଼ିଏ ବର୍ଷର ଯେଉଁ ସାଧନା ତାହା 'ଯେପାଖେ ଆରମ୍ଭ ଏ ପାଖେ ଶେଷ' ଆତ୍ମକାହାଣୀରେ ବର୍ଣ୍ଣିତ । ଏତଗୁଡ଼ିକ ଗ୍ରନ୍ଥର ଯେ ଗ୍ରନ୍ଥକାର—ଲକ୍ଷ ଲକ୍ଷ ପାଠକ ମନର ଅଦ୍ଭୁତ ମୁହୂର୍ତ୍ତିକୁ ଯେ ସରସ, ସୁନ୍ଦର, ଜୀବନ୍ତ କରିଛନ୍ତି; ପାଠକ, ଦର୍ଶକ, ଶ୍ରୋତା ମନରେ ଆନନ୍ଦ ଭରିଦେବା ଯା'ର ଲକ୍ଷ୍ୟ, ସେ ଲକ୍ଷ୍ୟ ଭେଦୀ ନୁହେଁ ତ ଆଉ କିଏ ?

ତାଙ୍କର ଲକ୍ଷ୍ୟଭେଦ କେବଳ ସାହିତ୍ୟ ବା ସଂସ୍କୃତିର ବାହକ ବା ଧାରକ ଭାବରେ ସୀମିତ ନୁହେଁ । ଦେଶ ଓ ଦଶର କଲ୍ୟାଣରେ ଅନ୍ତତଃ ପାଞ୍ଚ ଛଅଟି ଦଶନ୍ଧି ସେ ବିତେଇଛନ୍ତି । ବିହାରାଞ୍ଚଳରେ ଓଡ଼ିଆ ଭାଷା—ସାହିତ୍ୟ-ସଂସ୍କୃତିର ସୁରକ୍ଷାକଳ୍ପେ ଏକ ଜାଗ୍ରତ ପ୍ରହରୀରୂପେ ସେ ଦଣ୍ଡାୟମାନ । ସିଂହଭୂମ ଓଡ଼ିଆ ସାହିତ୍ୟ ସମାଜର ସଭାପତି ରୂପେ ଉତ୍କଳମଣି ଗୋପବନ୍ଧୁଙ୍କ ଜନ୍ମ ଶତବାର୍ଷିକୀର 'ଦିବ୍ୟଜ୍ୟୋତି' ପଠୂଆର ବାହାର କଲେ ଉତ୍କଳ ଆଟସାପିଏବନ୍ 'ଗୋପବନ୍ଧୁ ଭବନ'ରୁ । ସେ ଜ୍ୟୋତି ସମ୍ବର୍ଦ୍ଧିତ ହୋଇଥିଲା ବହୁ ଓଡ଼ିଆ ଅନୁଷ୍ଠାନଦ୍ୱାରା ଫୁଲ, ଦୀପ, ଧୂପର ଅର୍ଚ୍ଚନାରେ । ତେଣୁ ଜନ୍ମ ପୂଜାର ପୂଜାହାରୀ ଭାବରେ ମଧ୍ୟ ଲକ୍ଷ୍ମୀଧରଙ୍କ ପ୍ରତି ଦୃଷ୍ଟି ଆକର୍ଷିତ ହୋଇଯାଏ ଅତେ ଆପେ ।

ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରତି ତାଙ୍କର ଭକ୍ତି ଥିଲା ଅମାପ । ୧୯୨୫ ମସିହାରେ ଗୋପବନ୍ଧୁ ଆଣ୍ଡ୍ରୁଜ ସାହେବଙ୍କୁ ସାଥିରେ ନେଇ ସିଂହଭୂମ ଯାଇଥିଲେ ଯେଉଁଠାରେ ଓଡ଼ିଆ ଅଧିବାସୀ କିପରି ହଇରାଣରେ ଅଛନ୍ତି, ମାତୃଭାଷା ଓଡ଼ିଆ ପରିବର୍ତ୍ତେ ସେମାନଙ୍କ ଉପରେ କିପରି ପଡ଼ୋଶୀ ଭାଷାକୁ ଜବରଦସ୍ତ ଲଦି ଦିଆହେଉଛି, ସେ କଥା ପ୍ରତ୍ୟକ୍ଷରେ ଦେଖାଇ ମହାତ୍ମା ଗାନ୍ଧିଙ୍କ ନିକଟରେ ପ୍ରତିକାରର ପନ୍ଥା ସ୍ଥିର କରିବା ପାଇଁ । ଷ୍ଟେସନଠାରୁ ଶୋଭାଯାତ୍ରା ଅସି ଟିସ୍କୋ କେମିକାଲ ଲାବୋରେଟରୀର କେମିଷ୍ଟ ବଳଭଦ୍ର ନାୟକଙ୍କ ବିଷ୍ଟୁପୁର ସ୍ଥିତ 'ବ୍ଲୁ ହେଡ଼'ରେ ଥିବା ବାସଭବନରେ ପହଞ୍ଚିଲା । ଖୋଳ କରତାଳ, ହରିବୋଲରେ ଚାରିଆଡ଼ ଉଚ୍ଛୁଳି ଉଠୁଥାଏ । ଫୁଲମାଳରେ ଘୋଡି ହୋଇଥାନ୍ତି ଦୁଇ ନେତା । ପିତା ବଳଭଦ୍ର ବାର ବରଷର ପୁଅ ଲକ୍ଷ୍ମୀଧରକୁ ସେମାନଙ୍କ ପାଦତଳେ ପକାଇ ମୁଣ୍ଡିଆ ମରାଇଲେ । ମାତା କଣେଶ୍ୱମଣି ଦେବୀଙ୍କ ହାତରନ୍ଧା ସରୁ ଚକୁଳି, ଏଣ୍ଡୁରି ପିଠା, ଡାଲମା, ଶାଗବଡ଼ି ହନ୍ଲୁଳା, ନଡ଼ିଆ ଚଟଣି, ପାଣିକଖାରୁ ବଡ଼ି ଓ ନଡ଼ିଆ ରାଇର ରସ ଆସ୍ୱାଦନ କଲେ ଦୀନବନ୍ଧୁ ଆଣ୍ଡ୍ରୁଜ ଓ ଉତ୍କଳମଣି ଗୋପବନ୍ଧୁ । ବାଳକ ଲକ୍ଷ୍ମୀଧରକୁ ନମୋହାବିଷ୍ଟ କରି ପାଟିରେ ଖଣ୍ଡେ ପିଠା ଗୁଞ୍ଜିଦେଲେ ବାପେ ଅପଣେ ।

ସେହି ଧର୍ମ—ମମତାର ବନ୍ଧନରେ ବାନ୍ଧିଦେଇଥିଲେ ଲକ୍ଷ୍ମୀଧରଙ୍କୁ । ଖୋଜ ବସିଲେ ସିଂହଭୂମ ଜିଲ୍ଲାର କୋଣେ ଅନୁକୋଣେ ସେକାଳରେ କ ଚଳୁ ଯାଉଥାନ୍ତି ଯାଉଥିଲେ ଗୋପବନ୍ଧୁ ଉତ୍ସାହିତ ଦାସ୍ୟାଦଙ୍କ ଲମନ୍ତେ । ଗାନ୍ଧୀଙ୍କ 'ଦାଣ୍ଡୀଯାତ୍ରା'ର କୋଡ଼ିଏ ବର୍ଷ ଆଗରୁ ଗୋପବନ୍ଧୁ ଧାଇଁଥିଲେ ଓଡ଼ିଶାର ଏ ମୁଣ୍ଡରୁ ସେ ମୁଣ୍ଡ, ଦେଶକାଦେବା ଉଦ୍ଦେଶ୍ୟରେ - ସ୍ୱଦେଶୀ ମୂଲିଆଙ୍କୁ ଆପଣାର କରିବାପାଇଁ—ତାତ୍ସୂଏଁଟା ଖରାରେ ଧୂଳିଧୂସର ଓ ଝଡ଼ ବର୍ଷାରେ ଓଦା ଜୁଡ଼ୁବୁଡ଼ୁ ହୋଇ ।

ଗୋପବନ୍ଧୁଙ୍କ କର୍ମମୟ ଜୀବନର (୧୯୧୨ ରୁ ୧୯୨୩) ଏଗାର ବର୍ଷ ବହିର୍ଦ୍ଧାଞ୍ଚଳ ସିଂହଭୂମିରେ ଓଡ଼ିଆ ଶିକ୍ଷାପାଇଁ କଟିଥିଲା । ପ୍ରଚାରକ ଅନନ୍ତମିଶ୍ର ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ କର୍ମସ୍ଥଳ ଥିଲା ସିଏ । ୧୯୧୬ ବେଳକୁ ସତ୍ୟବାଦୀ ବନ ବିଦ୍ୟାଳୟର ଦୁଇଟି ଶାଖା ସ୍ଥାପିତ ହୋଇଥିଲା—ମଞ୍ଜିଷ ଗଡ଼ା କାରଖାନା । ୧୯୧୯ରେ ପଣ୍ଡିତ ଗୋଦାବରୀଶ ଚକ୍ରଧର ପୁରରେ ଓ ପଣ୍ଡିତ କୃପାସିନ୍ଧୁ ମେଦିନପୁର ବାହାଡ଼ାଗୋଡ଼ା ଯାଇ ସେ ଦୁଇ କାରଖାନା ଚଳାଇଲେ ।

ବଙ୍ଗ-ବିହାର-ଓଡ଼ିଶାରୁ ବିହାର-ଓଡ଼ିଶା ୧୯୧୨ରେ ସ୍ୱତନ୍ତ୍ର ହେବା ପରେ ଦୂରଦ୍ରଷ୍ଟା ଗୋପବନ୍ଧୁ ଦେଖିଲେ ସିଂହଭୂମ ଜିଲ୍ଲାରେ ଥିବା ଦୁଇ କରଦରାଜ୍ୟ ଖରସୁଆଁ ଆଉ ସରାଇକଳାର ଓଡ଼ିଆ ରାଜାମାନଙ୍କ ସହାୟତା ପାଇ ସାକ୍ଚୀ ଓ ଜାମ୍ସେଦ୍‌ପୁରଠାରେ ସ୍ଥାପିତ ହୋଇଥିବା ଟାଟା କମ୍ପାନୀ ଦ୍ୱାରା ସମ୍ପୃକ୍ତ ଓ ବହୁ ଓଡ଼ିଆଙ୍କ ଶ୍ରମରେ ଗଢ଼ିଉଠିଥିବା କାରଖାନା ସମେତ ଓଡ଼ିଆବାସୀ ସିଂହଭୂମ ଜିଲ୍ଲାକୁ ଓଡ଼ିଶାରେ ମିଶାଇବାର ସମ୍ଭାବନା ଉଜ୍ଜ୍ୱଳ । ତେଣୁ ପଇସିକିଆ ପାଣ୍ଠି ସଂଗ୍ରହ ଆଦି କରିଭି ସିଂହଭୂମର ଗାଁମେ ଗାଁମେ ବାର୍ତ୍ତା ପହଞ୍ଚାଇଲେ ଗୋପବନ୍ଧୁ ଓ ତାଙ୍କର ସହକର୍ମୀଗଣ ।

ସେଇ କାଳର ପୁରୁଣା କଥାକୁ ପ୍ରାଚୀନ ଲୋକଙ୍କ ସ୍ମୃତିରୁ ରେକର୍ଡ଼ କରି, ପ୍ରଶ୍ନୋତ୍ତର ଛଳରେ କେତେ ତଥ୍ୟ ଆଣି ଏକାଠି କରି-

ଛନ୍ତି ଲକ୍ଷ୍ମୀଧର ନାୟକ 'ସିଂହଭୂମର ଗୋପବନ୍ଧୁ' ପୁସ୍ତକରେ । ସିଂହ-ଭୂମିରେ ଓଡ଼ିଆ ଆନ୍ଦୋଳନର ନେତୃତ୍ୱ ନେଇ ଗୋପବନ୍ଧୁଙ୍କ ଜନ୍ମ-ଶତବାର୍ଷିକୀ ପାଳନ ଅବକାଶରେ ଏ ଗ୍ରନ୍ଥର କଳ୍ପନା—ଅଭିନନ୍ଦନୀୟ ।

ଆଜ ଲକ୍ଷ୍ମୀଧରବାବୁଙ୍କ ଲେଖନୀର ଅର୍ଦ୍ଧଶତବର୍ଷ ପୂର୍ତ୍ତି କାଳରେ ତାଙ୍କର ଜଣେ ଅନୁଜଭାବରେ ତାଙ୍କପାଇଁ ଜଗନ୍ନାଥଙ୍କ ପାଖେ ମାଗୁଣି—ଲେଖନୀ ତାଙ୍କର ବଳିଷ୍ଠ ହୋଇ ଆହୁରି ପଚିଶ ବରଷ ବଞ୍ଚିଥାଉ ।



ପ୍ରାଧ୍ୟାପକ, କୃଷ୍ଣଚନ୍ଦ୍ର ଗଜପତି କଲେଜ
ପାରଳାଖେମୁଣ୍ଡି

# ପ୍ରଣତି :
# ଏକ ପ୍ରତିଭାକୁ

●

ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ

ପ୍ରଣତ ଜଣାଉଛି ସେଇ ପ୍ରତିଭାକୁ, ଯେଉଁ ପ୍ରତିଭା ବହୁ ଦିନ ତଳେ, ମୋ କିଶୋର ବୟସରେ ମୋର କଞ୍ଚା ମନକୁ କରିଥିଲା ଅତି ମାତ୍ରାରେ ପ୍ରଭାବିତ ।

ସେତେବେଳେ ମୋର ବୟସ କେତେ ବାର ବା ତେର । ମୁଁ ଥିଲି ଅଷ୍ଟମ ବା ନବମ ଶ୍ରେଣୀର ଛାତ୍ର । ଓଡ଼ିଆ ସାହିତ୍ୟର ଯେଉଁ ସବୁ ପୁସ୍ତକ ପଢ଼ି ମୁଁ ସେତେବେଳେ ମୁଗ୍ଧ ହୋଇଥିଲି, ଅନୁପ୍ରାଣିତ ହୋଇଥିଲି, ଯାହା ବାରମ୍ବାର ପଢ଼ି ଏକପ୍ରକାର ମୁଖସ୍ଥ କରିଥିଲି, ତାହା ଭିତରେ ଥିଲା ଜଣେ ଯୁଗାନ୍ତକାରୀ ଅଗ୍ନିଗର୍ଭ ଲେଖକଙ୍କ ଜ୍ୱଳନ୍ତ କୃଷ୍ଣ···
"ହା'ରେ ଦୁର୍ଭାଗା ଦେଶ, ସର୍ବହରା, ବର୍ଷାର ଶେଷ, ଭୁଲିଲି ସତେ ସଖୀ, ଉଦ୍‌ଭ୍ରାନ୍ତ, ଯେ"···

ପରେ ରଙ୍ଗମଞ୍ଚରେ ସେଇ ଲେଖକଙ୍କର ଯୋଡ଼ାଏ ନାଟକ ମୋତେ ଉଦ୍‌ବୁଦ୍ଧ କରିଥିଲା - 'ଧର୍ମଚକ୍ରୀ' ଓ 'ଲଲ ସ୍ୱବୁକ' ।

ଭାଷାର ଓଜସ୍ୱିତା, ବିଷୟ ବସ୍ତୁର ନୂତନତ୍ୱ ଏବଂ ଭାବ-ପ୍ରକାଶର ନିର୍ଭୀକତା ମୋର ତରୁଣ ମନରେ ବିଶେଷ ପ୍ରଭାବ ସୃଷ୍ଟି କରିଥିଲା । 'ହା'ରେ ଦୁର୍ଭାଗା ଦେଶ' ଓ 'ବର୍ଷାର ଶେଷ' କେଉଁ ବହିଟି ଠିକ୍ ମନେ ପଡ଼ୁ ନାହିଁ – ପ୍ରାୟ ୩୫ ବର୍ଷ ତଳେ ପଢ଼ା—ସେଥିରେ ଓଡ଼ିଶାର ଡୁଡୁମା/ସରାଇକଳା/ଖରସୁଆଁ ସମସ୍ୟା ନେଇ ସ୍ପଷ୍ଟ ମନ୍ତବ୍ୟ ମୋର କଞ୍ଚାମନ ଆଗରେ ସାହିତ୍ୟରେ ଏକ ନୂତନ ଦିଗନ୍ତ ଖୋଲିଥିଲା । ସାହିତ୍ୟିକ କିପରି ସ୍ପଷ୍ଟବାଦୀ ହୋଇପାରେ, ମୁଁ ତାହା ସେଥିରୁ ଶିଖିଥିଲି ଓ ଉଦ୍‌ବୁଦ୍ଧ ହୋଇଥିଲି । ମୋର ତରୁଣ ବୟସରେ ସେ

ଥିଲେ ମୋର ଅତି ପ୍ରିୟ ସାହିତ୍ୟିକ/ଅତି ସମ୍ମାନିତ ଔପନ୍ୟାସିକ—ସ୍ୱର୍ଗତ କବି ଲକ୍ଷ୍ମୀଧର ନାୟକ।

ତାଙ୍କ ଉପନ୍ୟାସ ଯେପରି/କବିତା ଯେପରି/ନାଟକ ମଧ୍ୟ ସେପରି। ତାଙ୍କର ସେ କୌଣସି ଲେଖା ଅତୀବ ପ୍ରେରଣାଦାୟକ ଥିଲା। ଭାଷା ଅନୁକରଣ କରୁଥିଲି·· ଶୈଳୀ ଅନୁକରଣ କରୁଥିଲି।

ତା'ପରେ ବହୁବର୍ଷ ବିତି ଯାଇଛି। ମଝିରେ ତାଙ୍କ ଲେଖାରୁ ସେ ପ୍ରକାର ଅଗ୍ନିଗର୍ଭ ପ୍ରେରଣାଦାୟକ ଲେଖା ଆଉ ପଢ଼ିବାକୁ ପାଉ-ନାହିଁ। ସେ ଏହା ମଧ୍ୟରେ ପ୍ରବାସରେ ଓଡ଼ିଆଙ୍କ ସଂଗଠନ କାର୍ଯ୍ୟରେ ଲାଗିଛନ୍ତି, ପତ୍ରିକା ବାହାର କରିଛନ୍ତି···ଏବଂ ଏଇ କେତେ ବର୍ଷ ତଳେ ହଠାତ୍ ତାଙ୍କ ସହିତ ମୋର ପରିଚୟର ସୌଭାଗ୍ୟ ହୋଇଛି। ଏଇ ପରିଚୟ ବେଳକୁ ମୁଁ ତ ଆଉ କିଶୋର ବୟସରେ ନାହିଁ···ଯୌବନ ପାର ହୋଇ ପ୍ରୌଢ଼ତ୍ୱରେ ପାଦ ଦେଇଛି; କିନ୍ତୁ ପିଲାଦିନର ସାହିତ୍ୟ "ହିରୋ" ସହିତ ପରିଚୟ ମନରେ କମ୍ ରୋମାଞ୍ଚ ଦେଇ ନାହିଁ।···

ଏବେ ଅବଶ୍ୟ ଆମ ଭିତରେ ବୟସର ବ୍ୟବଧାନଟା ନାହିଁ··· ସେ ମୋତେ ତାଙ୍କ ସମାନ ସ୍ତରରେ ଦେଖିଛନ୍ତି, ମୋତେ ସ୍ନେହ ଦେଇ-ଛନ୍ତି, ଶ୍ରଦ୍ଧା ଦେଇଛନ୍ତି ଏବଂ ତାହା ମୋ ମନରେ ପୁରୁଣାଦିନ ଗୁଡ଼ିକର ତାଙ୍କ ସାହିତ୍ୟ ଦ୍ୱାରା ପ୍ରଭାବିତ ହେବାର ସ୍ମୃତିକୁ ଉଖାରି ଦେଇଛି।

ଆମ ସାହିତ୍ୟର/ଆମ ସଂସ୍କୃତିର ଏକ ଉଜ୍ଜ୍ୱଳ ଦୀପଶିଖା ସେ··· ପ୍ରଭାବଶାଳୀ ପ୍ରତିଭା···ମୁଁ ପୁଣି ପ୍ରଣତି ଜଣାଉଛି। ଏ ଦୀପଶିଖା ଚିରଦିନ ପ୍ରଜ୍ଜ୍ୱଳିତ ରହୁ।

●

ସହ-ସମ୍ପାଦକ "ସମାଜ"
ମଛରବା ସାହି, କଟକ

# ଆସ,

# ପୂଜ୍ୟ ପୂଜା କରିବା



**ଶ୍ରୀ କ୍ଷୀରୋଦଚନ୍ଦ୍ର ପୋଥାଲ**

ଆଜୀବନ ସାରସ୍ୱତ-ସାଧକ, ବର୍ଷିୟାନ ସାହିତ୍ୟିକ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ ସାହିତ୍ୟକୃତି ଦେଶ ଓ ଦେଶ ବାହାରେ ବ୍ୟାପୃତ । ତାଙ୍କର ସାହିତ୍ୟ ସାଧନା ସମ୍ପର୍କରେ ଚିନ୍ତା କଲାବେଳେ ଗୋଟିଏ କଥା ମନକୁ ଆସୁଛି । କୌଣସି କଳା, ସାହିତ୍ୟ ସାଧକଙ୍କ ଜୀବନରେ ସମ୍ବର୍ଦ୍ଧନା ଅଥବା ପୂଜା-ଅର୍ଚ୍ଚନାର ଆବଶ୍ୟକତା ଅଛି କି ?

ଗତ ଗୋଟିଏ ଦଶନ୍ଧି ମଧ୍ୟରେ ଏଇ ସମ୍ବର୍ଦ୍ଧନା ଓ ଜୟନ୍ତୀ ପାଳନ ଆମ ସାହିତ୍ୟ ଓ କଳା କ୍ଷେତ୍ରରେ ଅତି ବହୁଳ ଭାବରେ ଦେଖା-ଦେଇଛି । ଅଭିଜ୍ଞତାରୁ ଜାଣେ, ଥରେ ଜଣେ ସାହିତ୍ୟିକଙ୍କ ସମ୍ବର୍ଦ୍ଧନା ଉତ୍ସବରେ ସମ୍ମାନିତ ଅତିଥିଭାବେ ଯୋଗ ଦେବାକୁ ଆଉ ଜଣେ ବରିଷ୍ଠ ସାହିତ୍ୟିକଙ୍କୁ ନିମନ୍ତ୍ରଣ କରିବାକୁ ଯାଇଥିଲି । ମୋ ନିମନ୍ତ୍ରଣର ଉତ୍ତରରେ ସେ ମୋତେ କହିଲେ—"ଦେଖନ୍ତୁ, ମୁଁ ଏସବୁ ସମ୍ବର୍ଦ୍ଧନା/ସମ୍ବର୍ଦ୍ଧନାର ପକ୍ଷପାତୀ ନୁହେଁ କି ଏସବୁକୁ ଭଲ ପାଏ ନାହିଁ । ତେଣୁ ମତେ ଏଭଳି କାମରେ ସହଯୋଗ କରିବାକୁ ବାଧ୍ୟ କରନ୍ତୁ ନାହିଁ ।" କିଛି ବର୍ଷ ପରେ ଦେଖିଲି, ଯେଉଁ ସାହିତ୍ୟିକ ମତେ ଏପରି କହିଥିଲେ, ସେ ନିଜେ ସମ୍ବର୍ଦ୍ଧିତ ହେଲେ ଓ ତାଙ୍କ ସମ୍ବର୍ଦ୍ଧନା ଉତ୍ସବର ପ୍ରଧାନ ଉଦ୍ୟୋକ୍ତା ଥିଲି ମୁଁ ।

ଆଉ ଗୋଟିଏ କଥା । କୌଣସି ଜଣେ କୃତୀ ସନ୍ତାନଙ୍କର ବିୟୋଗରେ ଆମେ ଖୁବ୍ ଶୋକାଭିଭୂତ ହୋଇ ତାଙ୍କ ଶବାଧାର ଉପରେ ଫୁଲମାଳ/ଫୁଲ ତୋଡ଼ା ଜମା କରିଦଉ । ଖବର କାଗଜରେ

ଶୋକବାର୍ତ୍ତା ଦେଉ । ଶୋକସଭା କରି ତାଙ୍କର ଗୁଣକୀର୍ତ୍ତନ କରୁ । ପ୍ରତିମୂର୍ତ୍ତି ବା ପ୍ରତିକୃତି ଉନ୍ମୋଚନ କରି ତାଙ୍କ ନାମରେ ରାସ୍ତା ଇତ୍ୟାଦିର ନାମକରଣ କରୁ । କିନ୍ତୁ ଏ ସବୁଥିରୁ କ'ଣ ପାଆନ୍ତି ମୃତ ବ୍ୟକ୍ତି ? ଭାଗବତରେ କୁହାଯାଇଛି—

ଏ ଜୀବ ଯିବାର ନିକଟେ ।
ବେଗେ ଚଳଇ ଅନ୍ୟ ଘଟେ ॥

ଏ ଜୀବ ଗୋଟିଏ ଘଟ ଛାଡ଼ିବାର ପୂର୍ବ ମୁହୂର୍ତ୍ତରୁ ଅନ୍ୟ ଘଟରେ ଆଶ୍ରୟ ନେବାର ଚିନ୍ତା କରେ । ସେହିପରି ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ କହିଛନ୍ତି—ଯାବତ୍ ଜନନଂ, ତାବତ୍ ମରଣଂ, ତାବତ୍ ଜନନୀ ଜଠରେ ଶୟନଂ ।—ଏ ସବୁକୁ ଯଦି ଆମେ ବିଶ୍ୱାସ କରୁ, ତା ହେଲେ, ଆମେ ଯେଉଁ ମୃତାତ୍ମାଙ୍କ ପାଇଁ ଏତେକଥା କରୁ, ସେ ତ ଅନ୍ୟତ୍ର ଜନ୍ମ ନେଇ ସାରିଥାନ୍ତି, ତେବେ ଆମେ ଏସବୁ କାହିଁକି ଓ କାହାପାଇଁ କରୁ ? ଜୀବଦ୍ଦଶାରେ ଯାହାଙ୍କୁ ପଚାରୁ ନାହିଁ, ଯାହାଙ୍କ ସୁଖ ଦୁଃଖରେ ଭାଗୀ ହେବାକୁ ଆମକୁ ବେଳ ମିଳେନା, ସେଇ ପୁଣି ଚାଲିଗଲା ପରେ ଆମେ ଏତେ କଥା କରୁ କାହିଁକି ?

ଏହିପରି ବହୁ ଉଦାହରଣ ଆମ ଦେଶର କଳା, ସାହିତ୍ୟ ସାଧନା କ୍ଷେତ୍ରରେ ଦେଖିବାକୁ ମିଳେ । ସୁତରାଂ ଜଣେ ସାଧକ ଜୀବିତାବସ୍ଥାରେ ଯଦି ନିଜର କୃତକର୍ମର ଫଳ ସ୍ୱରୂପ ଆମ ମୁହଁରୁ ଟିକେ ପ୍ରଶଂସା ଶୁଣି, ଆମ ହାତରୁ ହାରେ ଫୁଲ ନେଇ, ଆମ ଓଠରୁ କାଣିଚାଏ ହସ ଦେଖି ଟିକେ ଆତ୍ମସନ୍ତୋଷ ଲାଭ କରିପାରେ, ତେବେ ତାହା ପ୍ରତି ଆମର ସେଇ ହେବ ସର୍ବଶ୍ରେଷ୍ଠ ସମ୍ମାନ ।

ଅତଏବ ଆସ, ସାହିତ୍ୟସାଧକ ଲକ୍ଷ୍ମୀଧର ନାୟକଙ୍କ ପରି ପୂଜ୍ୟ, ନମସ୍ୟ ବ୍ୟକ୍ତିମାନଙ୍କର ପୂଜାକରି ନିଜକୁ ଧନ୍ୟ ମନେକରିବା ।

●

କାଠଗଡ଼ା ସାହି, କଟକ-୧

# ନାଟ୍ୟକାର ବନ୍ଧୁ ଶ୍ରୀ ନାୟକ

●

ଶ୍ରୀ ଭଗବତ ପ୍ରସାଦ ଦାସ

ମୋର ବନ୍ଧୁ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ ସାହିତ୍ୟ ସାଧନାର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ସୁବର୍ଣ୍ଣ ଜୟନ୍ତୀ ପାଳନ କରାଯାଉଥିବା ସମ୍ବାଦ ଦୈନିକ ସମାଜରୁ ପଢ଼ି ଦୁଇ ପଦ ତାଙ୍କ ସମ୍ବନ୍ଧରେ ଲେଖି ପଠାଇବାର ଲୋଭ ସମ୍ବରଣ କରି ପାରିଲି ନାହିଁ ।

ଶ୍ରୀ ନାୟକ ଏକାଧାରରେ ଜଣେ କବି, ଗଳ୍ପିକ, ଔପନ୍ୟାସିକ ଓ ନାଟ୍ୟକାର । ସେ ଜଣେ ଅଭିନେତା ମଧ୍ୟ । ପୁଣି ସୁଗାୟକ, ଯାହା ହୁଏତ ଅନେକ ଜାଣନ୍ତି ନାହିଁ ।

ତାଙ୍କ ସଙ୍ଗେ ମୋର ପ୍ରଥମ ପରିଚୟ ହେଲା ୧୯୬୨ରେ । ମୁଁ ଜାମସେଦପୁର ଆସିଥାଏ ନୂଆ ହୋଇ, ବୃତ୍ତିର ସନ୍ଧାନରେ । ସେହି ବର୍ଷ ବନ୍ୟାର ବିପ୍ଳବ ଦେଖା ଦେଇଥାଏ ଓଡ଼ିଶାରେ । ବନ୍ୟାକ୍ରାନ୍ତ ଲୋକଙ୍କୁ କିଛି ଆର୍ଥିକ ସାହାଯ୍ୟ ଦେବାପାଇଁ ଗୋଟିଏ ନାଟକ ମଞ୍ଚସ୍ଥ କରିବାର ଆୟୋଜନ କରିଲେ ସ୍ୱର୍ଗତ ଭଗୀରଥି ଦାସଙ୍କ ପ୍ରସ୍ତାବକ୍ରମେ । ଦାସଙ୍କ ଟି. ଆର୍. ଟାଇପ୍ ଘରେ ବୈଠକ ବସିଲା । ସାମାଜିକ ନାଟକ 'ଧର୍ମଦ୍ରୋହୀ' ବହିଟିକୁ ମଞ୍ଚସ୍ଥ କରିବାର ସିଦ୍ଧାନ୍ତ ନିଆଗଲା । ଭଗୀରଥି ବାବୁ ପ୍ରସ୍ତାବ ଦେଲେ ଯେ ବହିର ଲେଖକ ଯେତେବେଳେ ଏଠାରେ ଅଛନ୍ତି, ତାଙ୍କୁ ଅନୁରୋଧ କରାଯିବ ନାଟକଟିର ନିର୍ଦ୍ଦେଶ ଦେବାପାଇଁ । ଶ୍ରୀ ନାୟକ ସେ ଅନୁରୋଧ ରକ୍ଷା କଲେ ଏବଂ ବହିଟିର ନିର୍ଦ୍ଦେଶନା ଦେଲେ । ଧର୍ମଦ୍ରୋହୀ ବହିର 'ବରଁଶିଆ' ବୃଦ୍ଧର ଭୂମିକାଟି ଦିଆଗଲା ମୋତେ । ଅନ୍ୟାନ୍ୟ ଭୂମିକାର ଲୋକମାନଙ୍କୁ ଅଦଳ ବଦଳ କରାଗଲା ପଛେ କିନ୍ତୁ ମୋ ଭୂମିକାରେ କେବେହେଲେ ହାତ ଦେଲେ ନାହିଁ ଶ୍ରୀ ନାୟକ । ମୁଁ ବହୁବାର ଶ୍ରୀ ନାୟକଙ୍କୁ କହେ, ମୋ ଭୂମିକାଟି ମୁଁ

ବୋଧହୁଏ ଠିକ୍‌ଭାବେ ଭୁଲାଇ ପାରୁ ନାହିଁ। ମୋର ମନେ ହେଉଛି, ଏଇ ଗ୍ରେଟିଆ ଭୂମିକାଟି ହିଁ ଏ ନାଟକ ଭିତରେ ସବୁଠାରୁ ଜରୁରୀ। ଏଇଟି ମୋ'ଠାରୁ ନେଇ ଅନ୍ୟ କାହାକୁ ଦିଆଯାଉ। ଏ କଥା ଶୁଣି ସେ ଟିକଏ ହସି ଦେଲେ, ଆଉ ସେ ହସ ଭିତରେ କ'ଣ ସେ ପ୍ରାଣମୟତା ଥାଏ...ଆତ୍ମ-ପ୍ରସାଦରେ ମୋର ଛାତି ଫୁଲିଉଠେ।

ଶେଷ ପର୍ଯ୍ୟନ୍ତ ଉକ୍ତ 'ବଇଁଶିଆ' ଭୂମିକାଟି ମୋର ଦାୟିତ୍ୱରେ ରହିଲା ଏବଂ ସେହିଁଦିନ ନାଟକଟି ଅଭିନୀତ ହେଲା 'ମିଲନ' ହଲ୍‌ରେ, ବନ୍ଧୁ ମୋ ଅଭିନୟରେ ଏତେ ବିମୋହିତ ହୋଇଗଲେ ଯେ ଧାଇଁ ଆସି କୁଣ୍ଢାଇ ପକାଇଲେ ମୋତେ। ସେଦିନ ତାଙ୍କର ସେଇ ତପ୍ତାକୋଷ ଆଲିଙ୍ଗନର ଉଷ୍ମତା ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରି ନାହିଁ। ସେହିଦିନଠାରୁ ଜାମସେଦପୁରରେ ମୁଁ ଜଣେ ପୋଖତ ଅଭିନେତା ଭାବେ ସୁଖ୍ୟାତି ଅର୍ଜନ କରିବାର ସାର୍ଟିଫିକେଟ୍ ହାସଲକଲି ତାଙ୍କ ହାତରୁ।

ତାପରେ ମୁଁ ମଝିରେ ମଝିରେ ତାଙ୍କ ସଙ୍ଗେ ସାକ୍ଷାତ ହୁଏ। କେତେବେଳେ ତାଙ୍କ କବିତା ଆବୃତ୍ତି ଶୁଣେ, କେତେବେଳେ ଶୁଣେ ତାଙ୍କ କଣ୍ଠରେ ସଙ୍ଗୀତର ଝଙ୍କାର।

ସେ ଯେ ଜଣେ ଉଚ୍ଚକୋଟିର ଗୀତିକାର, ହୁଏତ ତାଙ୍କ ବାହାର ପାଠକମାନେ ଜାଣି ନଥିବେ ଏକଥା। କେବଳ ଗୀତ ଲେଖନ୍ତି ନାହିଁ, ସେ ନିଜେ ସ୍ୱର ଦେଇ ମଧ୍ୟ ଗାଇ ପାରନ୍ତି ହୃଦୟମୋହନସ୍ପର୍ଶ ଧାରା। ତାଙ୍କ ଗାଇବାର ବୈଶିଷ୍ଟ୍ୟ ହେଲା, ତାଙ୍କ କଣ୍ଠର ମଧୁର ମୂର୍ଚ୍ଛନା ଏବଂ ଗୀତରେ ଥିବା ଛନ୍ଦସଯୋଜନା ଗୁଡ଼ିକର ନିର୍ଭୁଲ ଉଚ୍ଚାରଣ। କବି, ସ୍ୱରଚିତ ଗୀତଗୁଡ଼ିକ ଗାଇଲାବେଳେ ତାଙ୍କ ଭାବ ବିହ୍ୱଳତା ଏବଂ ପ୍ରାଣର ତନ୍ମୟତାକୁ ବି ଲକ୍ଷ୍ୟକରିବା କଥା। ଯେ କୌଣସି ଶ୍ରୋତାର ହୃଦୟ ତାଙ୍କର ଭାବରେ ଯେ ଆନ୍ଦୋଳିତ ହୋଇ ଉଠିବ, ଏଥିରେ ସନ୍ଦେହ ନାହିଁ।

ଏଇ ପରିପ୍ରେକ୍ଷୀରେ ହିଁ ତାଙ୍କ ସାନିଧ୍ୟ ଲାଭ ବନ୍ଧୁ ଅବିସ୍ମରଣୀୟ ସ୍ମୃତିର କାହାଣୀ ହୋଇ ରହିଛି ମୋ ପାଇଁ।

ସଙ୍ଗୀତ, ସାହିତ୍ୟ କଳା ନେଇ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ତାଙ୍କ ଉତ୍ସର୍ଗୀକୃତ ଜୀବନର ସାଧନା ଏକ ଆଦର୍ଶର କଥା ।

୧୯୫୪ରେ ସେ ଜାମସେଦପୁର ଛାଡ଼ି ଚାଲିଯାନ୍ତି । କିନ୍ତୁ ଆସନ୍ତି ମଝିରେ ମଝିରେ । ଝଣ୍ଟିନାଞ୍ଚଳ ସିଂହଭୂମ୍‌ର ଏଇ ଲୌହ ନଗରୀ ଜାମସେଦପୁର ତାଙ୍କପାଇଁ ସ୍ୱର୍ଗ ବୋଲି ସେ ଅନେକ ଥର କହିବାର ଶୁଣିଛି ।

ଅନେକ ଦିନ ହେଲା ତାଙ୍କ ସଙ୍ଗେ ଆଉ ଦେଖା ହୋଇନାହିଁ । ଶେଷ ଜୀବନରେ ତାଙ୍କ ସଙ୍ଗେ ଆଉ ଦେଖା ହେବ କି ନାହିଁ ଭଗବାନ ଜାଣନ୍ତି । ମନଟା ବେଳେ ବେଳେ ଅସ୍ଥିର ହୋଇ ପଡ଼େ ତାଙ୍କ ପାଇଁ । କାରଣ କ'ଣ ଠିକ୍ ବୁଝିପାରେ ନାହିଁ । ହୁଏତ ତାଙ୍କ 'ଧର୍ମପତ୍ନୀ' ନାଟକର 'ବଇଁଶୀଆ'ର ଚରିତ୍ରକୁ ସେ ଏତେ ପ୍ରାଣ ଦେଇ ଲେଖିଥିଲେ ଯେ, ମୁଁ ସେଇ ଚରିତ୍ରରେ ଅଭିନୟ କରି ତାଙ୍କୁ ମୁଗ୍ଧ କରିଥିଲି ବୋଲି ବୋଧହୁଏ ତାଙ୍କ ସ୍ନେହର କାହିଁର କାଠିଟିକୁ ସେ ଛୁଇଁଦେଇଥିଲେ ମୋ'ଠି । ...ଆଜି ସେଇଦିନଠାରୁ ତାଙ୍କ ପ୍ରତି ଆକର୍ଷଣର ଦୁରନ୍ତ ଦାବାନଳ ଦାଉ ଦାଉ ହୋଇ ଜଳୁଛି ମୋ ସ୍ମୃତି ଭିତରେ ।



୫୧ ନେହେରୁ କଲୋନୀ
ଜଉ କାଳ ମାଟି ରୋଡ଼
ପୋ. ଅ. ସାକଚୀ
ଜାମସେଦପୁର

# 'ସିଂହଭୂମିର' ଗୋପବନ୍ଧୁ ନାମକରଣରେ ଯଥାର୍ଥତା



ଶ୍ରୀ ଅଶୋକ ମିଶ୍ର

(ସହଯୋଗ—ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ)

'ଉତ୍କଳମଣି' ଗୋପବନ୍ଧୁ ଥିଲେ ଭାରତର ସ୍ୱାଧୀନତା ଆନ୍ଦୋଳନର ପୁରୋଧା, ଓଡ଼ିଶାରେ କଂଗ୍ରେସବାର୍ତ୍ତା ପ୍ରଚାର କରିବାରେ ପ୍ରଥମ ଜନନାୟକ ଏବଂ ଓଡ଼ିଆ ଜାତିକୁ ଅନ୍ଧକାର ଭିତରୁ ଆଲୋକକୁ ଆଣିବାରେ ଜଣେ ସେବକ ଓ ସଂସ୍କାରକ । ତାଙ୍କ ପରି ଯୋଗଜନ୍ମା ବ୍ୟକ୍ତି ଓଡ଼ିଶାରେ ବିରଳ । ସେ କେବଳ ଜଣେ ରାଜନୀତିଜ୍ଞ ବା ସମାଜ ସଂସ୍କାରକ ନଥିଲେ, ଥିଲେ ମହାନ୍ କବି ଏବଂ ମନସ୍ତତ୍ତ୍ୱବିଦ୍ । ସେ ଆଧୁନିକ ଓଡ଼ିଶାର ନିର୍ମାତା । ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ଆନ୍ଦୋଳନ ଆରମ୍ଭ ହେଲାବେଳେ ସିଂହଭୂମ୍‌କୁ ଓଡ଼ିଆ ସହିତ ସାମିଲ୍ କରି ସ୍ୱତନ୍ତ୍ର ପ୍ରଦେଶ ମିଳୁ ବୋଲି ସେ ଦୃଢ଼ କଣ୍ଠରେ ଦାବୀ କରିଥିଲେ ।

ଓଡ଼ିଶାର ଏହି ବରପୁତ୍ର ଗୋପବନ୍ଧୁଙ୍କ ସଂପର୍କରେ ବହୁକଥା କଥା ପ୍ରସଙ୍ଗରେ କୁହାଯାଏ । କିନ୍ତୁ ଓଡ଼ିଶାର କବି ଓ ସାହିତ୍ୟିକ ଶ୍ରୀ ଲକ୍ଷ୍ମୀଧର ନାୟକ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯେ କି ସିଂହଭୂମରେ ଗୋପବନ୍ଧୁଙ୍କର କାର୍ଯ୍ୟକଳାପର ଯେଉଁ ବିରାଟ ଇତିହାସ ଏକ ପ୍ରକାର ଲୁପ୍ତ ଏବଂ ବିସ୍ମୃତ ହୋଇ ଯିବାକୁ ବସିଥିଲା ଓଡ଼ିଶାର ଜନମାନସରୁ, ତାକୁ ସେ ପ୍ରଥମ ଥର ପାଇଁ ଲୋକ-ଲୋଚନକୁ ଆଣିଥିଲେ ।

ପଶୁରାଜ ସିଂହର ଲୀଳାଭୂମି 'ସିଂହଭୂମ୍' ଓଡ଼ିଶାର ଉତ୍ତର ସୀମା ପ୍ରାନ୍ତର ଏକ ଅବିଚ୍ଛିନ୍ନ ଅଂଶ ଏବଂ ବିହାର ସହିତ ଓଡ଼ିଶାର ଯୋଗସୂତ୍ର ରକ୍ଷା କରିବାର ଏକମାତ୍ର ମାଧ୍ୟମ ।

ଗୋପବନ୍ଧୁ ଆଶା କରିଥିଲେ ଅଳ୍ପ କେତେବର୍ଷ ଭିତରେ ଓଡ଼ିଶାନିଶ୍ଚୟ ସ୍ୱତନ୍ତ୍ର ପ୍ରଦେଶ ଭାବେ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ସ୍ୱୀକୃତି ପାଇବ । କିନ୍ତୁ ସିଂହଭୂମ୍ ଜିଲା ଯଦି ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହୁଏ ତାହେଲେ ଉତ୍କଳ ଜନନୀ ସବୁଦିନ ପାଇଁ 'ଛିନ୍ନମସ୍ତା' ହୋଇ ରହିଯିବ ଏବଂ ଓଡ଼ିଆ ଜାତି ପକ୍ଷରେ ତା' ହେବ ଏକ ବ୍ୟର୍ଥତାର କାହାଣୀ । ଜାମ୍‌ସେଦପୁରରେ ଯେଉଁ ବିରାଟ ଲୌହଶିଳ୍ପ ଗଢ଼ି ଉଠିଛି ତା ଯଦି ଓଡ଼ିଶାର ଏକ ଅଂଶ ନ ହୁଏ ତେବେ ଆର୍ଥିକ ଦୃଷ୍ଟିରୁ ଏ ପ୍ରଦେଶର ଲୋକେ ଏକ ଦରିଦ୍ରତମ ଜାତି ଭାବେ ଭାରତବର୍ଷରେ ସମସ୍ତଙ୍କ ପଛରେ ପଡ଼ି ରହିବେ ।

ପୌରାଣିକ ଯୁଗରୁ ସ୍ୱେଚ୍ଛ ନାଗପୁର ତତ୍କାଳୀନ ଚକ୍ରାକୀନ କଳିଙ୍ଗ ସାମ୍ରାଜ୍ୟର ଏକ ପ୍ରଧାନ ଅଂଶ ହୋଇଥିଲା, କିନ୍ତୁ ଦୁଇଶହ ବର୍ଷର ଉପନିବେଶ ବାଦ ଭିତରେ ବ୍ରିଟିଶ ଶାସନ ଅମଳରେ ଏହା କ୍ରମଶଃ ବିଚ୍ଛିନ୍ନ ହୋଇଯାଇଥିଲା ଓଡ଼ିଶାଠାରୁ ।

ତେଣୁ ଭାରତର ସ୍ୱାଧୀନତା ପାଇଁ ଅସହଯୋଗ ଆନ୍ଦୋଳନର ପ୍ରଥମ ଆହ୍ୱାନ ଯେତେବେଳେ ଦେଲେ ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଦାଶ ସେ ଆହ୍ୱାନର ବାର୍ତ୍ତାକୁ ଓଡ଼ିଶାବାସୀଙ୍କୁ ଶୁଣାଇବା ପାଇଁ ଚକ୍ରଧରପୁରଠାରେ ହିଁ ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ ଡାକି, ବଜ୍ରନିର୍ଘୋଷ କଣ୍ଠରେ ସେଇଠି କହିଥିଲେ—ଭାରତର ଜାତୀୟ ଆନ୍ଦୋଳନ ପ୍ରବାହ ସହିତ ଓଡ଼ିଆ ଜାତିର କର୍ମଧାରା ଆଜିଠାରୁ ମିଶି ଏକ୍ ହୋଇଗଲା ।

ଏବଂ ଗୋପବନ୍ଧୁ ହିଁ ଏକମାତ୍ର ବ୍ୟକ୍ତି ଯେ ସିଂହଭୂମ୍ ଜିଲ୍ଲାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ପଦବ୍ରଜରେ ବୁଲି ଓଡ଼ିଆ ବାସିନ୍ଦା ତଥା ସ୍ଥାନୀୟ 'ହୋ'ମାନଙ୍କୁ ଓଡ଼ିଆ ଭଷା ପ୍ରତି ଓଡ଼ିଆ ଜାତୀୟତାରେ ଉଦ୍‌ବୁଦ୍ଧ ହେବାପାଇଁ ଅନୁପ୍ରାଣିତ କରିଥିଲେ ।

ଗୋପବନ୍ଧୁଙ୍କ ଜୀବନର ଏଇ ବୃତ୍ତିଗୁଡ଼ିକୁ ବିଶେଷ ଭାବରେ କେହି ଜାଣିନଥିଲେ କି ସର୍ବସାଧାରଣରେ ଏହାର କୌଣସି ମୂଲ୍ୟାୟନ

ଏପର୍ଯ୍ୟନ୍ତ ହୋଇ ନଥିଲା । କିନ୍ତୁ ଶ୍ରୀ ନାୟକ ଏହି କଥାଟିକୁ ସର୍ବ-ସାଧାରଣଙ୍କ ଦୃଷ୍ଟିକୁ ଆଣି, ଗୋପବନ୍ଧୁ କିପରି ସିଂହଭୂମିକୁ ସର୍ବ-ଭାରତୀୟ ସ୍ତରରେ ଓଡ଼ିଶାର କର୍ମପୀଠ ଭାବରେ ଗୁରୁତ୍ୱ ଦେଇ, ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଆ ଜାତିର କର୍ତ୍ତବ୍ୟ-ପରାୟଣତା କ୍ଷେତ୍ରରେ ସିଂହଭୂମି ବାସୀମାନେ ଆଗୁଆ ହୋଇ-ଥିଲେ, ତାହା ଦର୍ଶାଇଥିଲେ । ଗୋପବନ୍ଧୁ' ସେ 'ସିଂହଭୂମି'ର ଗୋପବନ୍ଧୁ ଏ ଆଖ୍ୟା ତାଙ୍କୁ ଦେଇ ଶ୍ରୀ ନାୟକ ତାଙ୍କ ପୁସ୍ତକର ଶିରୋନାମା 'ସିଂହଭୂମିର ଗୋପବନ୍ଧୁ ରଖି ଏକ ମହାନ୍ କାର୍ଯ୍ୟ କରିଛନ୍ତି । ଗୋପବନ୍ଧୁଙ୍କ ମାନବିକ ମହତ୍ତ୍ୱକୁ ପ୍ରତିଷ୍ଠା କରିବା ପାଇଁ ମାତ୍ର ନଅଟି ଅନ୍ତର ଉପରେ ଗୋପବନ୍ଧୁଙ୍କର ବିରାଟ ବ୍ୟକ୍ତିତ୍ୱକୁ ଏକ ଜାତୀୟ ଗର୍ବ ରୂପେ ଟେକି ଧରିଛନ୍ତି । ଏହା ବାସ୍ତବରେ ଶ୍ରୀ ନାୟକଙ୍କ ସାହିତ୍ୟିକ ଦକ୍ଷତାର ଏକ ଅସାଧାରଣ କୃତିତ୍ୱର କଥା ।

ଶ୍ରୀ ନାୟକ କେବଳ ଜଣେ ପ୍ରଥିତଯଶା ଔପନ୍ୟାସିକ ନୁହନ୍ତି, ସେ ଏକାଧାରରେ କବି, ନାଟ୍ୟକାର, ପ୍ରାବନ୍ଧିକ, ସାମ୍ବାଦିକ ଏବଂ ସୁଗାୟକ ମଧ୍ୟ । ଏବଂ ସର୍ବୋପରି ସେ ହେଉଛନ୍ତି ଓଡ଼ିଶାର ଅନ୍ୟତମ ବ୍ୟକ୍ତି ଯେ ପୁରୀଜିଲ୍ଲାରେ ଜନ୍ମ ହୋଇ ମଧ୍ୟ ପଣ୍ଡିତ ଗୋପବନ୍ଧୁଙ୍କ ପରି, ବିଚ୍ଛିନ୍ନାଞ୍ଚଳ ସିଂହଭୂମିରେ ତାଙ୍କ ଜୀବନର ସର୍ବ ସମସ୍ତ ଅତିବାହିତ କରିଛନ୍ତି । ଓଡ଼ିଆ ଭାଷାସାହିତ୍ୟର ଆନ୍ଦୋଳନ ପାଇଁ ପତ୍ରପତ୍ରିକା ମାଧ୍ୟମରେ କେବଳ ନୁହେଁ, ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ ପରି ଏକ ସାଂସ୍କୃତିକ ଅନୁଷ୍ଠାନ ପ୍ରତିଷ୍ଠା କରି ଓଡ଼ିଶା ସହିତ ସିଂହଭୂମିର ସାଂସ୍କୃତିକ ଯୋଗସୂତ୍ରକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଅର୍ଦ୍ଧଶତାବ୍ଦୀ ଧରି ଚେଷ୍ଟା କରି ଆସୁଛନ୍ତି ।

୧୯୩୪ ଠାରୁ ଏ ପର୍ଯ୍ୟନ୍ତ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'ର ଅଧିବେଶନ ମଣ୍ଡପରେ ଏହି ଜାମସେଦ୍‌ପୁରରେ କର୍ମବୀର ଲକ୍ଷ୍ମୀନାରାୟଣ ସାହୁ, ଗୋପାଳଚନ୍ଦ୍ର ପ୍ରହରାଜ, ଆଠମଲ୍ଲିକ ରଜାସାହେବ, କେନ୍ଦୁଝରର ଟିକାୟତ୍, ଲକ୍ଷ୍ମୀନାରାୟଣ ଭଞ୍ଜଦେଓ, ଗୋକୁଳଚନ୍ଦ୍ର ଶତପଥୀ, ବାମଦେବ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର,

ଯଦୁମଣି ମଙ୍ଗରାଜ, ମାୟାଧର ମାନସିଂହ, କାଳନ୍ଦୀଚରଣ ପାଣିଗ୍ରାହୀ, କବି ରାଧାମୋହନ ଗଡ଼ନାୟକ, ସଚ୍ଚି ରାଉତରାୟ ଓ ଡଃ କୁଞ୍ଜବିହାରୀ ଦାଶ ପ୍ରଭୃତି ବହୁ ସାହିତ୍ୟିକ ଓ ଜନନାୟକ ମାନଙ୍କୁ ଡାକି, ସିଂହଭୂମିବାସୀଙ୍କୁ ଉଦ୍‌ବୋଧନ ଦେବା ପାଇଁ ସୁଯୋଗ ଦେଇ, ସେମାନଙ୍କୁ ସମ୍ବର୍ଦ୍ଧନା ମଧ୍ୟ ଦେଇ ଆସିଛନ୍ତି ।

ମୋର କକେଇ ବିଲୋଚନ ମିଶ୍ର ଥରେ କହୁଥିଲେ -- ଗୋପବନ୍ଧୁ ବାବୁ ବାହଡ଼ାଗୋଡ଼ା ଆସି ତାଙ୍କ ଘରେ ରହି, ଥରେ ପ୍ରକାଶ କଲେ— ତାଙ୍କପାଇଁ ସତ୍ୟବାଦୀର ଲୋକମାନେ ଯେପରି ଅତ୍ୟନ୍ତ ଆଦର, ସେହିପରି ସିଂହଭୂମିର ପ୍ରତ୍ୟେକ ଓଡ଼ିଆ ମଧ୍ୟ ତାଙ୍କର ଆତ୍ମୀୟସ୍ୱଜନ ପରି ଅତ୍ୟନ୍ତ ଆପଣାର । ସେଦିନ ଗୋପବନ୍ଧୁ ସ୍ୱୀୟ କହିଥିଲେ—ସେ ନିଜକୁ ଜଣେ ସିଂହଭୂମି ବାସୀ ବୋଲି ମନେ କରନ୍ତି । ତାଙ୍କଠାରେ ଏଭଳି ସ୍ନେହ ଓ ସୌହାର୍ଦ୍ଦ୍ୟର ପରିଚୟ ପାଇ, ବିଲୋଚନ ମିଶ୍ରେ ତାଙ୍କର ସାନ ଭାଇ ଫଣୀଭୂଷଣ ମିଶ୍ରଙ୍କୁ ସତ୍ୟବାଦୀ ସ୍କୁଲରେ ପଢ଼ିବା ପାଇଁ ପଠାଇଥିଲେ ।

"ସିଂହଭୂମିର ଗୋପବନ୍ଧୁ" ବହିଟି ମୁଁ ଏକ ନିଶ୍ବାସରେ ପଢ଼ି-ଥିଲି । ଶ୍ରୀ ନାୟକଙ୍କ ପାଖରେ ଆମେ ଋଣୀ—ସେ ଏପରି ଗୋଟିଏ ସୁନ୍ଦର ବହି ଲେଖିଛନ୍ତି ଓଡ଼ିଶାର ଯୋଗଜନ୍ମା ଉତ୍କଳମଣିଙ୍କ ସମ୍ପର୍କରେ । ଗୋପବନ୍ଧୁଙ୍କୁ ଆମ ଜିଲ୍ଲାର 'ଅମୃତ ପୁତ୍ର' ଭାବେ ଚିହ୍ନିତ କରି, ବହୁ ତଥ୍ୟସମ୍ବଳିତ ଐତିହାସିକ ଘଟଣାକୁ ଆମମାନଙ୍କ ସମ୍ମୁଖରେ ପ୍ରାଞ୍ଜଳ ଭାବରେ ପରିବେଷଣ କରି ଶ୍ରୀ ନାୟକ ଯେଉଁ ମହାନ୍ କାର୍ଯ୍ୟ କରିଛନ୍ତି, ତାହା ଆମ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିଛି ।



ଆଡ଼ଭୋକେଟ୍
୧୨୯, ସତ୍ରସ୍ଟ୍ରୀଟ୍
ସାକଚୀ, ଜାମସେଦପୁର

# ସୂର୍ଯ୍ୟ ଶିଖା



ଦେବେନ୍ଦ୍ରକୁମାର ଭଂଜ

ଆଲୋକ ଓ ଛାୟାର ସ୍ପନ୍ଦନରେ ବୈଚିତ୍ର୍ୟ ମଧ୍ୟରେ ସେଇ ଅର୍ଦ୍ଧ-ଶତାବ୍ଦୀ ବ୍ୟାପୀ ଦେଦୀପ୍ୟମାନ ସୂର୍ଯ୍ୟ ଶିଖା···

ଏକନିଷ୍ଠ ସାହିତ୍ୟ ସାଧନାର ଜ୍ୱଳନ୍ତ ପ୍ରତୀକ—

ଉତ୍କଳର ଲବ୍ଧ-ପ୍ରତିଷ୍ଠ ସାହିତ୍ୟିକ ଶ୍ରୀ ଲକ୍ଷ୍ମୀଧର ନାୟକ ;

"ତାଡାର ନାୟକ" ।

ବ୍ୟକ୍ତି ନୁହନ୍ତି,

ଏକ ଅନୁଷ୍ଠାନ ।

ଶ୍ରଦ୍ଧା ଓ ସମ୍ମାନ ଠାରୁ ଅଧିକ ପୂଜନୀୟ ।

ତାଙ୍କର କରଣୀ ଓ ଚରଣୀ···

ବରଣୀୟ···ଅନୁକରଣୀୟ···ବନ୍ଦନୀୟ···ଅଭିନନ୍ଦନୀୟ···

ବହୁ ଗଳ୍ପ, କବିତା, ଉପନ୍ୟାସ, ଓ ନାଟକର ବିଭିନ୍ନ ଦିଗରେ ବିସ୍ତୃତ ଆଲୋଚନା, ପତ୍ରିକା ଓ ପୁସ୍ତକ ପ୍ରକାଶନ, ମୁଦ୍ରଣ ପରିପାଟୀ, ଗ୍ରନ୍ଥପାଠ ସଭା ସମ୍ବନ୍ଧରେ ବିସ୍ତୃତ ବିମର୍ଷ, ସାଂସ୍କୃତିକ କାର୍ଯ୍ୟକ୍ରମ ତଥା ସାହିତ୍ୟ-ଆସର ଆୟୋଜନ ବେଳେ ଆମର ଏକାଠି ବହୁ ସମୟ ଅତି-ବାହିତ ହୋଇଛି ।

ତାଙ୍କର ଦକ୍ଷ ସାଙ୍ଗଠନିକ ଶକ୍ତି, ଅଦମ୍ୟ ଉତ୍ସାହ, ଯୁବକସୁଲଭ କର୍ମତତ୍ପରତା ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରେ ।

ତାଙ୍କ ନଜରରେ, 'ନଚାହାଇପାରିବାଉଜ' କିଛୁ ନାହିଁ ।

ପ୍ରତ୍ୟେକ କାର୍ଯ୍ୟକୁ ସୁନ୍ଦର, ସୁଚଳ, ନିଖୁଣ ଭାବେ ସମ୍ପାଦନ କରିବାରେ ସେ ସିଦ୍ଧହସ୍ତ ।

ଫାର୍ଦ୍ଦନର ସମସ୍ତ ସମ୍ପର୍କକୁ କାଳ-କଲମରେ ସୀମିତ କରିବା ଅତ୍ୟନ୍ତ ଆସ୍ଥ୍ୟସାଧ୍ୟ ।

ତାଙ୍କର ସାଧାରଣ କଥା ଅସାଧାରଣ ।

ଅସାଧାରଣ···ଅବଧାରଣା ବହିର୍ଭୂତ ।

ତାଙ୍କ ଖିଆଲି ମନର···ଭାବପ୍ରବଣତା···ବଡ଼ ଅଦଭୂତ !

ଆଜ ଏଠି, କାଲି ସେଠି, ତହିଁ ଆରଦିନ ଆଉ କେଉଁଠି··

ତା'ପରର ସନ୍ଧାନ ପାଇବା, ସମ୍ଭବପର ନୁହେଁ ।

ପୁଣି ସମସ୍ତଙ୍କୁ ଚମତ୍କୃତ କରିଦେଇ ହଠାତ୍ ନାଟକୀୟ ଆବିର୍ଭାବ ।

ତା'ପରେ ନୂତନ କିଛିର ଅପୂର୍ବ ଆରମ୍ଭ···

"ଏବଂ ତା' ପରେ—

ତାକନେଇଯାଏ ମୋର ହୃଦୟର ପୁଷ୍ପିତ ଉଦ୍ୟାନେ,
ଆସ ବନ୍ଧୁ, ଦେଖ ଏଠି ସ୍ୱପ୍ନବୃକ୍ଷ କଟ ଜଣେ
କପର ତା ପରିଣତ ବୟସର ଶେଷେ
ଏବେ ବି କଳ୍ପନା ପଥେ, ଅମୃତର ଦେଶେ
ଯିବାର ବାସନା ରଖି କାମନା ଚଞ୍ଚଳ ··
ପାରିଜାତ ଫୁଲପାଇଁ,
ଶୂନ୍ୟରେ ଉଡ଼ୁଛି କାହିଁ—
ସେ କେଉଁ ରୂପସୀ କାବ୍ୟ ନାୟିକା ଅଞ୍ଚଳ
ତାକୁ ହାୟ ଛୁଇଁବାକୁ ଏବେ ବି ତା' ଆଶା
ସାହିତ୍ୟର ସାଧନାରେ କେତେ ପୁଣି ଆକୁଳର ଭାଷା

ଆସ ବନ୍ଧୁ ଦେଖ ଏଠି ଫୁଲର ଉତ୍ସବ,
ପ୍ରସ୍ତୂର ଅଧିବାସ ନିତ୍ୟ ଅଭିନବ,
ଏଠି କି ସୁନ୍ଦର ଶାନ୍ତ ବରଷ ଜ୍ୟୋଛନାରେ;
ଏକ ଗୁଚ୍ଛ ରଜନୀଗନ୍ଧାର ଶୁଭ୍ର ଶିଖାପର
ବନ୍ଧନର ବାଣ ନେଇ ଜଳବାରେ
ଏଠି କି' ଆନନ୍ଦ !

ଏଠି କି ଅମୃତମୟ ଜୀବନର···ମୂର୍ଚ୍ଛନାର ଛନ୍ଦ ।"

ଲକ୍ଷ୍ମୀଧର ବାବୁ—
ମୋର ଜଣେ ଦରଦୀ ବନ୍ଧୁ ।
ହିତୈଷୀ,
ମାର୍ଗଦର୍ଶକ—
ନମସ୍କାର !

●

ସୁବର୍ଣ୍ଣ ସାହିତ୍ୟ ମନ୍ଦିର
୧୯, ଏଲ୍. ଫୋର
କାଳିନ୍ଦୀରୋଡ୍
ପୋ. କଦମା, ଜାମସେଦପୁର-୫

# ଜାତୀୟତାବାଦୀ ସାହିତ୍ୟିକ ଶ୍ରୀ ନାୟକ

●

ରବୀନ୍ଦ୍ରନାଥ ଶତପଥି
(ସମ୍ପାଦକ-ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ)

ଲକ୍ଷ୍ମୀଧର ବାବୁଙ୍କ ନାମ ମୁଁ ବାଲ୍ୟାବସ୍ଥାରୁ ଶୁଣିଥିଲି। କିନ୍ତୁ ତାଙ୍କୁ ଦେଖିବାର ସୌଭାଗ୍ୟ ମୋର ହେଲା ବହୁତ ଡେରିରେ। ୧୯୭୬ ମସିହାରେ ଦିନେ ରାତି ଦଶଟା ବେଳେ ଦିନେଶ ବାବୁଙ୍କ ସାଥିରେ (ବହଡ଼ା ଗୋଡ଼ାର ଡାଃ ଦିନେଶ ଷଡ଼ଙ୍ଗୀ) ତାଙ୍କ ଘରେ ଆମେ ଯାଇ ପହଞ୍ଚିଲୁ। ସେତେବେଳେ ଲକ୍ଷ୍ମୀଧର ବାବୁ 'ସିଂହଭୂମିର ଗୋପବନ୍ଧୁ' ପୁସ୍ତକ ପାଇଁ ତଥ୍ୟ ସଂଗ୍ରହ କାର୍ଯ୍ୟରେ ବ୍ୟସ୍ତ ଥାନ୍ତି। ସେଦିନ ତାଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା କରି ମୁଁ ଯେଉଁ ଆନନ୍ଦ ପାଇଥିଲି ତାହା ଭାଷାରେ ବର୍ଣ୍ଣନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ। ତାଙ୍କ ଲେଖା ସାଥିରେ ତ ପରିଚୟ ଥିଲା ବହୁ ଆଗରୁ, କିନ୍ତୁ ସେଦିନ ଜଣେ ଉଦାରମନା ଲେଖକଟି ସାଥିରେ ପରିଚୟ ହେଲାପରେ ମୋର ମନେ ହେଲା—ଜୀବନରେ ମୁଁ ପ୍ରଥମ ଥର ପାଇଁ ବୋଧହୁଏ ତାଙ୍କପରି ଜଣେ ଅମାୟିକ, ସହଜ, ସରଳ, ବନ୍ଧୁବତ୍ସଳ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲି। ତାଙ୍କ ଚରିତ୍ରର ଯେଉଁ ବିଶେଷତ୍ଵ ମୋତେ ତାଙ୍କ ଆଡ଼କୁ ଆକର୍ଷିତ କରିଥିଲା, ତା' ହେଲା ତାଙ୍କର ସ୍ୱାଧୀନଚେତା ଭାବ ଏବଂ ଉତ୍କଟ ଜାତୀୟତାବାଦୀ ଉଚ୍ଛ୍ୱାସ।

ତାଙ୍କ ଚରିତ୍ରର ସବୁଠୁ ବଡ଼ ଗୁଣଟିଏ ହେଲା, ଯେ କୌଣସି ଲୋକଠୁ ଚିଠିଟିଏ ପାଇଲେ ସେ ଫେରନ୍ତା ଡାକରେ ତାର ଉତ୍ତର ଦିଅନ୍ତି। ଥରେ ମୁଁ କୌଣସି ଏକ ଚିଠିର ଜବାବ ଦେବାରେ ଡେରି କରିଥିବାରୁ କଥା ଛଳରେ ସେକଥା କହି ମୋତେ ବହୁ ଉପଦେଶ ଦେଇଥିଲେ।

ମୋର ସବୁଠାରୁ ସୌଭାଗ୍ୟର କଥା, ସେ ସମୟ ଅସମୟରେ ମୋ ପ୍ରତି ଅତ୍ୟନ୍ତ ସ୍ନେହଶୀଳ ହୋଇ ହଠାତ୍ ଚିଠି ଲେଖି ମୋ ପରିବାରର ଭଲ ମନ୍ଦ କଥା ବୁଝନ୍ତି ଏବଂ କୌଣସି ନୂଆ ଯାଗାକୁ ଗଲେ ସେଠାରେ ତାଙ୍କ ଅନୁଭୂତିର ବିସ୍ତୃତ ବିବରଣୀ ଲେଖି ଚିଠି ଦିଅନ୍ତି।

ତାଙ୍କ ସାହିତ୍ୟିକ ଜୀବନର ଆରମ୍ଭ ୧୯୩୪ରେ, ଏଇ ବଳ୍ପିନ୍ନାଞ୍ଚଳ ସିଂହଭୂମିର ଲୌହନଗରୀ ଜାମସେଦ୍‌ପୁରରେ । ଆଜକୁ ୫୦ ବର୍ଷ ହୋଇଗଲା । ସେଇ ୧୯୩୪ରେ ସେ ଏଠାରେ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ପ୍ରତିଷ୍ଠା କରିଥିଲେ । ଆଜି ବି ସେଇ ଅନୁଷ୍ଠାନଟିକୁ ବଞ୍ଚାଇ ରଖିବା ପାଇଁ, ତାକୁ ସମୃଦ୍ଧ କରିବା ଲାଗି ସେ ଯେଉଁ ପ୍ରଚେଷ୍ଟା ଚଳେଇଛନ୍ତି, ସ୍ଥାନୀୟ ଯୁବକମାନଙ୍କୁ ଦେଶାତ୍ମବୋଧରେ ଅନୁପ୍ରାଣିତ କରି ଆସିଛନ୍ତି, ସେ କର୍ତ୍ତବ୍ୟ ନିଷ୍ଠାର ତୁଳନା ନାହିଁ । କଥା ପ୍ରସଙ୍ଗରେ ସେ ବରାବର କୁହନ୍ତି—ସିଂହଭୂମିର ମାଟି ତାଙ୍କ ଜୀବନର ମୁକ୍ତିତୀର୍ଥ । ସେ ଏଇଠି ତାଙ୍କ ଶେଷ ଜୀବନ ଅତିବାହିତ କରିବାକୁ ଚାହାନ୍ତି । ସୁଦୂର ପୁରୀଜିଲ୍ଲାର ଲୋକ ହୋଇ ମଧ୍ୟ, ସିଂହଭୂମିର ଓଡ଼ିଆମାନଙ୍କ ପ୍ରତି ତାଙ୍କର ଏ ମାୟା ମମତାର ପଟାନ୍ତର ନାହିଁ । ଯଦିଓ ସଂପ୍ରତି ସେ ଜାମସେଦ-ପୁର ଛାଡ଼ି ଚାଲି ଯାଇଛନ୍ତି, ତଥାପି ସେ ଯେ ଆମମାନଙ୍କ ପାଖରେ ସଦାବେଳେ ଅଛନ୍ତି—ଏଥିପାଇଁ ମନେହୁଏ । ଏବଂ ଯେତେବେଳେ ଆମେ ତାଙ୍କୁ ଖୋଜୁଁ, ସେ ଆସି ଛିଡ଼ା ହୁଅନ୍ତି ଆମ ପାଖେ । ସିଂହଭୂମି ପ୍ରତି ତାଙ୍କର କର୍ତ୍ତବ୍ୟର ପ୍ରାଣମୟତା କଥା ଲକ୍ଷ୍ୟ କଲେ ନିଜ ଜନ୍ମଭୂମିକୁ ଭଲ ପାଇବାରେ ଆମେମାନେ ଯେ କେତେ ପଛରେ ପଡ଼ନ୍ତି, ସେ କଥା ଭାବି ଲଜ୍ଜିତ ହେବାକୁ ପଡ଼େ ।

ଲକ୍ଷ୍ମୀଧର ବାବୁ ଏକାଧାରରେ କବି, ଔପନ୍ୟାସିକ, ପ୍ରାବନ୍ଧିକ, ନାଟ୍ୟକାର ଏବଂ ସାମ୍ବାଦିକ ମଧ୍ୟ । ଓଡ଼ିଶାରେ ବହୁ କବି, ଔପନ୍ୟାସିକ ଓ ନାଟ୍ୟକାର ଅଛନ୍ତି; କିନ୍ତୁ ଏକାଧାରରେ ଜାତୀୟ ସାହିତ୍ୟର ବିଭିନ୍ନ ବିଭାଗରେ ଯଶସ୍ୱୀ ଲେଖକ ହିସାବ ବହୁମୁଖୀ ପ୍ରତିଭାର ଅଧିକାରୀ ଓଡ଼ିଶାରେ ବୋଧହୁଏ ଆମମାନଙ୍କର ପରମ ବନ୍ଧୁ କେବଳ ମାତ୍ର ଶ୍ରୀ ନାୟକ ।

ସେ ଆମର ନମସ୍ୟ ।

●

ଅଡିଟସ୍କେଟ
ସାକ୍‌ଚୀ,
ଜାମସେଦପୁର

# ସୁବର୍ଣ୍ଣ ଜୟନ୍ତୀ



କୃଷ୍ଣଚନ୍ଦ୍ର ମହାନ୍ତି

ସୁନାର ଫସଲ
ବିସ୍ତୃତ ହୋଇ ପଡ଼ିଥିଲା
ଦୂର ଦିଗ୍‌ବଳୟ ତଳେ
ବୁଢ଼ା ଅବୁଢ଼ା ଶତ ସହସ୍ର ଅନ୍ତରରେ
ସବୁଜ ଘାସ ପଡ଼ିଆରେ
ବଣ ପାହାଡ଼ର କୋଳରେ,
ଆଜି ପୁଣି ଝଟିକିଥାଏ
ଝୁମ୍ପୁଡ଼ି ବୃଳର ମଥାନ ଜହରେ
ବିରହିଣୀ ନାରୀର ଦରଘା କଣ୍ଠରେ
କୁହୁକୁହୁ ହୋଇ ବହି ଯାଉଥିବା
ବଣ ଝରଣାର୍ ପାଣି ସୁଅରେ ।

କେତେ ହସ କାନ୍ଦର
କେତେ ପୁଣି ଦୁଃଖ ଯାତନାର
ଆଶା ଓ ନିରାଶାର ଅଗଣିତ
ମଣି ମାଣିକର ଫୁଲ
ଫୁଟୁଥିଲା/ଝଡ଼ୁଥିଲା
ହସୁଥିଲା/ହସାଉଥିଲା
ସେ ସବୁକୁ ତୁମେ ଉଠାଇଲ
"ଲକ୍ଷ୍ମୀଧର"
ତୁମ ଲେଖନୀର ଚୁମ୍ବକ ସ୍ପର୍ଶରେ ।

ଦିନେ ନୁହେଁ/ଅଧେ ନୁହେଁ
ମାସେ ନୁହେଁ / ବର୍ଷେ ନୁହେଁ
ବର୍ଷ ବର୍ଷ ଧରି ପଚାଶଟି ବର୍ଷ
ମୋ ଦେଶର ସାରସ୍ୱତ କ୍ଷେତକୁ
ତୁମେ ପୂର୍ଣ୍ଣ କଲ,ଭଲ ଭଲକା ସୁନା ଫସଲରେ
କାବ୍ୟ / ଉପନ୍ୟାସ / ନାଟକ / ପ୍ରବନ୍ଧରେ ।

ତୁମ ଲେଖଣୀର ସୁବର୍ଣ୍ଣ ଜୟନ୍ତୀ
ତୁମ ସାଧନା ପାଇଁ ଅମର
ନିଷ୍କପଟ ମନ୍ତ୍ର
ତୁମ ନିରଳସ ସୃଷ୍ଟି
ଏ ଜାତିର ଭବିଷ୍ୟତ ପାଇଁ
ଅନ୍ୟ କିଛି ନୁହେଁ
ଖାଲି ଅମୃତର ବୃଷ୍ଟି ।



ବାଙ୍ଗି ସାହୁ
କଟକ—୧

# ଏକ ମୁହୂର୍ତ୍ତର ସ୍ମୃତି

ଶତ୍ରୁ କାନୁନ୍‌ଗୋ

ମୁଁ ତାଙ୍କୁ ପ୍ରଥମେ କେବେ ଦେଖିଥିଲି ଠିକ୍ ମନେ ନାହିଁ । ତେବେ ୧୯୪୭ ମସିହାରେ । ମୋ ବାପା ଗୋପାଳ କାନୁନ୍‌ଗୋଙ୍କର ସେ ଜଣେ ରସଗ୍ରାହୀ ବନ୍ଧୁ, ତାଙ୍କର ଏକାନ୍ତ ଆତ୍ମୀୟ । ତାଙ୍କର ବହୁ ଉପନ୍ୟାସର ପ୍ରଚ୍ଛଦପଟ ଗୁଡ଼ିକ ସେ ଆଙ୍କିଥିଲେ ।

+ + +

୧୯୪୯ ମସିହାରେ ମୁଁ ତାଙ୍କୁ ପୁଣି ଦେଖିଥିଲି । ତାଙ୍କର କେତେକ ବହି ମୁଁ ବହୁବାର ପଢ଼ିଛି । ଅପ୍ରକାଶିତ କେତୋଟି ଲେଖା ମଧ୍ୟ ପଢ଼ିଛି । ପ୍ରତ୍ୟେକ ଥର ତାଙ୍କର ଗୋଟିଏ ଉପନ୍ୟାସର ନାୟକର ସ୍ତ୍ରୀ ଚରିତ୍ରକୁ ଗମ୍ଭୀର ଭାବରେ ବୁଝିବାକୁ ଖୁଣ୍ଟିଲେ ବୁଝି ହୁଏନ । ଲେଖକ ନିଜ ଚରିତ୍ରର ନିଜେ ନାୟକ । ଏକଥା ଓଡ଼ିଶାରେ ଆଉ କୋଉ ଲେଖକଙ୍କର ବାସ୍ତବଧର୍ମ ବୋଲି ମୁଁ ଜାଣିନି । କାଳେ ଥାଇ ପାରନ୍ତି । ତେବେ !

+ + +

ପୁଣି ୪ ବର୍ଷ ପରେ ଯେବେ ସେ ରାଉରକେଲାରୁ ଫେରି ମୋ ପାଖକୁ ଆସିଲେ ସିଧା ସଳଖ । ମୋତେ ଅଭିନନ୍ଦନ ସୂଚକ ଭଙ୍ଗୀରେ କହିଲେ—ଶୁଣିଲି ତୁମେ ଚଳଚ୍ଚିତ୍ରରେ ମୋ ବହିଟିକୁ ଧରୁଛ ? କେତେକ ଦିନର ଇମିତ ସିମିତ ଘଟଣା । ସମୟର ସୁଅରେ ମୁଁ ବହୁବାର ତାଙ୍କ ସଂସ୍ପର୍ଶରେ ଆସିଛି । ବହୁଥର ସେ ମୋତେ ଥିଏଟର ଦେଖାଇବାକୁ ଡାକି ନେଇଛନ୍ତି ।

ଶେଷଥର ମୁଁ ତାଙ୍କ ସହିତ ଏକାଡ଼େମୀ ହଲରେ 'ଜଗନ୍ନାଥ' ନାଟକ ଦେଖିଥିଲି । ଶେଷଥର ପାଇଁ । କଲିକତାରେ ।

× × × ×

ସମାଜର ବହୁ ଲେଖକ ଲେଖିକା ମାନଙ୍କ ସମ୍ପର୍ଶରେ ଆସିଛି । ମାତ୍ର ଲକ୍ଷ୍ମୀଧର ବାବୁ ସେମାନଙ୍କ ମଧ୍ୟରେ ଏକ ବ୍ୟତିକ୍ରମ ନିଶ୍ଚୟ । ତାଙ୍କ ଉପନ୍ୟାସରେ ଚରିତ୍ରଗୁଡ଼ିକ ପକ୍କା ଓଡ଼ିଶା ମାଟିର ଓଡ଼ିଆ । ଘଟଣା ଗୁଡ଼ିକ ଯେ ପଢ଼ିଛି ସେ ନିଶ୍ଚୟ ବୁଝି ଥିବ ଯେ ପ୍ରତ୍ୟେକଟି ଘଟଣା ଠିକ୍ ନିଜ ଘରର, ନିଜ ଆତ୍ମୀୟର କିମ୍ବା ନିଜ ଗାଁର । ତାଙ୍କର ଅନୁଭୂତିର ସାଗର ମନ୍ଥନ କରିବାକୁ ବା ତାଙ୍କର ପ୍ରାଣକୁ ବୁଝିବାକୁ ବହୁ କମ୍ ଲୋକ ପାରିବେ । ଏଡ଼େ ବଡ଼ ବ୍ୟକ୍ତିତ୍ୱକୁ ଅନୁଶୀଳନ କରିବାକୁ ମୁଁ ନିଜକୁ ହୀନ ଦରିଦ୍ର ନିଃସହାୟ ମନେ କରେ ।

ତାଙ୍କର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଦେଶ ପକ୍ଷରେ ଏକ ମହାନ କାର୍ଯ୍ୟକ୍ରମ । ତାଙ୍କ ପ୍ରତିଭାର ପୂଜା କରିବା ପାଇଁ ଯେଉଁମାନେ ଆଗ୍ରସର, ସେମାନଙ୍କୁ ମୋର କୋଟି କୋଟି ପ୍ରଣାମ ।

●

ନାଗେଶ୍ୱର ଝାଙ୍କୀ
ଭୁବନେଶ୍ୱର—୨

# ଜାତୀୟତାର ପ୍ରତୀକ ଶ୍ରୀନାୟକ



ଅପୂର୍ବ ରଂଜନ ରାୟ

ଇତିହାସ ସାହିତ୍ୟ । ଇତିହାସର ଭିତ୍ତି ଭୂମିରେ ସୁନ୍ଦର ସାହିତ୍ୟ ସୃଷ୍ଟି କରିହୁଏ । ଲେଖକ କେବଳ କଳ୍ପନାବିଳାସୀ ନୁହେଁ । ସେ ମଧ୍ୟ ବାସ୍ତବବାଦୀ ।

ଲେଖକ ଶ୍ରୀ ନାୟକ ଦୀର୍ଘ ଦିନର ସାଧକ । ବହି ବହି କବିତା, ଗଳ୍ପ ଓ ଉପନ୍ୟାସ ରଚନା କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସେ ସବୁ ରଚନାରେ ଜାତୀୟତାର ଚିତ୍ର କେତେ ପରିମାଣରେ ଅଛି, ବାସ୍ତବତାର ପ୍ରତିଧ୍ୱନି କେତେ ଭାବରେ ମୁଖରିତ, ତାହା ପରୀକ୍ଷାର ଇତିହାସ ହିଁ ସୂଚନା ଦେବ । ମାତ୍ର ଲେଖକଙ୍କ 'ସିନ୍ଧୁ-ଭୂମିର ଗୋପବନ୍ଧୁ' ଏକ ଐତିହାସିକ ଦଲିଲ ।

ପ୍ରାକ୍-ସ୍ୱାଧୀନତା କାଳରେ ଶ୍ରୀ ନାୟକ ସାହିତ୍ୟ ସାଧନା ଆରମ୍ଭ କରନ୍ତି, ଏବଂ ସ୍ୱାଧୀନତା ପରବର୍ତ୍ତୀ କାଳରେ ତାଙ୍କର ସାଧନା ଅଧିକ ବିକଶିତ ହୁଏ । ପ୍ରାକ୍-ସ୍ୱାଧୀନତା କାଳରେ ସେ ଯେତେବେଳେ ସାହିତ୍ୟ ବିଜୟକୁ ଆପଣାର କରି ନଥନ୍ତି, ସେତେବେଳେ ପରାଧୀନ ଭାରତର ବାସ୍ତବ ଚିତ୍ର ସ୍ୱଚକ୍ଷୁରେ ଦର୍ଶନ କରିଛନ୍ତି । ଏ ଦେଶର ସ୍ୱାଧୀନତା କପରି ଭାବରେ ଅନ୍ୟ ହାତରେ ବନ୍ଦୀ ହୋଇଛି, ତାହା ସେ ନିଜେ ହୃଦୟଙ୍ଗମ କରିଥିଲେ । ମୁକ୍ତ ଭାରତ ଦର୍ଶନ ଲାଗି ଯେଉଁମାନେ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ, ସେହି କର୍ମଯୋଗୀମାନଙ୍କୁ ସ୍ୱାଧୀନତା ପ୍ରେମୀ ଶ୍ରୀ ନାୟକ ଭଲ ଭାବେ ଚିହ୍ନିଛନ୍ତି । ଓଡ଼ିଶାରୁ ଯେଉଁ କେତେଜଣ ସ୍ୱାଧୀନତା ଯଜ୍ଞରେ ନିଜକୁ ଆହୂତି ଦେଇଛନ୍ତି, ସେମାନଙ୍କ ଭିତରୁ ଉତ୍କଳମଣି ଗୋପବନ୍ଧୁଙ୍କର ଅବଦାନ ଖୁବ୍ ଊର୍ଦ୍ଧ୍ୱରେ ।

ସ୍ୱାଧୀନଚେତା ଲକ୍ଷ୍ମୀଧର ଉତ୍କଳମଣିଙ୍କର କର୍ମଧାରା ଓ ଆଦର୍ଶ ବାଦକୁ ନିଷ୍ଠାପୂର୍ବକ ଅନୁଧ୍ୟାନ କରିଛନ୍ତି । ସେଥିଁପାଇଁ, ତାହାପାଇଁ ଯଥାର୍ଥ କ୍ଷେତ୍ରରେ ଗୋପବନ୍ଧୁଙ୍କର ଅନ୍ତଃପ୍ରଷ୍ଠାପାଏ ଗଢ଼ ପଡ଼ିଛି, ତାକୁ ସେ ନିରୀକ୍ଷଣ କରିଥିଲେ । ସେହି ନିରୀକ୍ଷଣ ହେତୁ ସାହିତ୍ୟିକ ଶ୍ରୀ ନାୟକ ସୃଷ୍ଟି କରି ପାରିଛନ୍ତି 'ସିଂହଭୂମିର ଗୋପବନ୍ଧୁ' ପୁସ୍ତକ । ଏତେରେ ଏହା ଏକ ଭିନ୍ନ ସ୍ୱାଦର ରଚନା । ଐତିହାସିକ, ଗାଳ୍ପିକ ଓ କବିର ଶମ୍ଭ୍ରାଧାର ଏଠି ନାହିଁ । କପୋଳ-କଳ୍ପିତ ବର୍ଣ୍ଣନାରେ ଏହାକୁ ରସପ୍ଳବ କରାଯାଇ ନାହିଁ । ଶବ୍ଦାଡ଼ମ୍ବର ଓ ଚରିତ୍ରର ବର୍ଣ୍ଣନା ବାହୁଲ୍ୟ ପୁସ୍ତକଟିକୁ ଭାରାକ୍ରାନ୍ତ କରିନାହିଁ । ବରଂ ଏଥିରେ ବାସ୍ତବତାର ମାତ୍ରା ଅଧିକ । ଜଣେ କର୍ମଯୋଗୀ ଓ ନିସ୍ପୃହ ସେବକର କାହାଣୀରେ ଏହା ହୋଇଛି ଶ୍ରୀମଣ୍ଡିତ । ବସ୍ତୁନିଷ୍ଠ ତଥ୍ୟକୁ ଉପସ୍ଥାପନ କରିବା ଦିଗରେ ସେ ତାଙ୍କର ଗବେଷକ ଓ ସମ୍ପାଦକ ପ୍ରାଣଟିକୁ ଏଠାରେ ଅଧିକ ମୂର୍ତ୍ତିମନ୍ତ କରିଛନ୍ତି ।

ଗୋପବନ୍ଧୁ ସିଂହଭୂମି ପରି ସମସ୍ତ ବିଚ୍ଛିନ୍ନାଞ୍ଚଳକୁ ଏକତ୍ର କରିବାର ସ୍ୱପ୍ନ ଦେଖିଥିଲେ । ଏହିସବୁ ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶା ସହିତ ମିଶ୍ରଣ କରିବାକୁ ହେବ, ଏସମସ୍ତ ଉପରେ ଅଧିକାର ରହିଛି ଓଡ଼ିଶାର । ତେଣୁ ଯେପରି ହେଉ, ଯେତେ ବାଧା-ବନ୍ଧନ ଆସୁନା କାହିଁକି, ବିଚ୍ଛିନ୍ନାଞ୍ଚଳକୁ ଖଣ୍ଡିତ ଉତ୍କଳ ସହ ମିଶାଇବାକୁ ପଡ଼ିବ, ଏହି ଦୃଢ଼ ମନୋଭାବ ସେ ପୋଷଣ କରିଥିଲେ । ସେଥିପାଇଁ ବିନା ଆହ୍ୱାନରେ ଧାଇଁ ଯାଇଥିଲେ ସିଂହଭୂମିକୁ ।

କର୍ମୀ ଗୋପବନ୍ଧୁ ସେଠାରେ ଦଶଟି ବର୍ଷ ବହୁ ଉତ୍ସାହ ଓ ଉଦ୍ଦୀପନା ଭିତରେ ବିତାଇ ଦେଇଥିଲେ । ତାଙ୍କ କର୍ମବହୁଳ ଜୀବନରେ ସିଂହଭୂମିରେ ଅବସ୍ଥାନ ଏକ ନୂତନ ଦୃଷ୍ଟି ଉନ୍ମୋଚନ କରିଛି । ସେଠାରେ ସେ ଓଡ଼ିଆତ୍ୱର ଗର୍ବ ଓ ଗୌରବରେ ଉଚ୍ଛ୍ୱଳିତ ହୁଅନ୍ତି । ସେ ଜୀବନର ସେହି ଘଟଣାବଳୀ ସହ ଲେଖକ ଲକ୍ଷ୍ମୀଧର ଓତଃପ୍ରୋତଃ ଭାବେ ଜଡ଼ିତ । ଗୋପବନ୍ଧୁଙ୍କ ପ୍ରାଣର ଆବେଗକୁ ସେ ପ୍ରକାଶ କରି

କହିଛନ୍ତି – "ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବଢ଼ି, ମରୁଡ଼ି, ମହାମାରୀରେ ଦୁସ୍ଥ ଲୋକଙ୍କୁ ସେବା କରିବାରେ, ଚୁଡ଼ା, କମ୍ବଳ, ଗୁଡ଼ ବାଣ୍ଟିବାରେ ଗୋପବନ୍ଧୁଙ୍କ ପରିଚୟ ସମାଜସେବୀ ହୋଇପାରେ, 'ଧର୍ମପଦ', 'କାରା-କବିତା' 'ବନ୍ଦୀର ଆତ୍ମକଥା' ଲେଖିବାରେ ତାଙ୍କର ପରିଚୟ 'କବି' ହୋଇପାରେ, ସତ୍ୟବାଦୀ ବନ ବିଦ୍ୟାଳୟ ଆରମ୍ଭ କରିଥିବା ଯୋଗୁ ଜଣେ 'ଶିକ୍ଷାବିତ୍' ଭାବରେ ସେ ପୂଜ୍ୟ ହୋଇପାରନ୍ତି, କିନ୍ତୁ ବିଚ୍ଛିନ୍ନାଞ୍ଚଳ ସିଂହଭୂମିକୁ ଓଡ଼ିଶା ସହିତ ମିଶାଇ ଛିନ୍ନମସ୍ତା ଉତ୍କଳ ଜନନୀଙ୍କୁ ପୂର୍ଣ୍ଣାଙ୍ଗିନୀ କରିବା ପାଇଁ ଜାଗରଣର ଯେଉଁ ପ୍ରଥମ ଆହ୍ୱାନ ସେ ଦେଇଥିଲେ ସିଂହଭୂମି ମାଟିରେ, ସେଠି ସେ ଥିଲେ ଜଣେ ଦୁର୍ଦ୍ଦାନ୍ତ ବିପ୍ଳବୀ। ମାତୃଭାଷା କହିବା, ମାତୃଭାଷା ପଢ଼ିବା ପାଇଁ ନିସ୍ୱ, ମୂକ, ଅନଗ୍ରସର ଜନତା ପ୍ରାଣରେ ସେ ଯେଉଁ ଉଦ୍ଦାମ ଭାବପ୍ରବଣତା ସୃଷ୍ଟି କରିଥିଲେ, ଜାତୀୟ କଂଗ୍ରେସର ଅସହଯୋଗ ବାର୍ତ୍ତା ସମଗ୍ର ଓଡ଼ିଆ ଜାତି ଉଦ୍ଦେଶ୍ୟରେ ସର୍ବ ପ୍ରଥମେ ସିଂହଭୂମିରୁ ପ୍ରଚାର କରି କଳିଙ୍ଗର ଐତିହାସିକ ବୈଭବକୁ ଦେଦୀପ୍ୟମାନ ସ୍ତରରେ ଦେଖାଇ ଦେବାରେ ଯେଉଁ ସଂଗ୍ରାମୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ, ସେଇଟି ଥିଲା ତାଙ୍କ ଅନନ୍ୟସାଧାରଣ ବ୍ୟକ୍ତିତ୍ୱର ଏକ ଉଜ୍ଜ୍ୱଳ ଦିଗ।"

ସାହିତ୍ୟିକ ଲକ୍ଷ୍ମୀଧର ଉପାନ୍ତ ଅଞ୍ଚଳ ସିଂହଭୂମିରେ କିପରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରସାର ଘଟିବ ସେଦିଗରେ ଉଦ୍ୟମ କରିଥିଲେ। ତାଙ୍କ ସକ୍ରିୟ ସଂପାଦନାରେ ମାସିକ ସାହିତ୍ୟ ପତ୍ରିକା 'ବିଚ୍ଛିନ୍ନା' ପ୍ରକାଶ ପାଇଥିଲା। ସେଠାରୁ ମଧ୍ୟ ତାଙ୍କର ସଂପାଦନାରେ ଉପନ୍ୟାସ ସିରିଜ୍ 'ସାଥୀ' ପ୍ରକାଶ ପାଇ ଓଡ଼ିଆ ସାହିତ୍ୟର ପ୍ରସାର ଦିଗରେ ସହାୟତା କରିଥିଲା।

ଉତ୍କଳମଣି ୧୯୧୩ ଠାରୁ ୧୯୨୪ ପର୍ଯ୍ୟନ୍ତ ଧାରାବାହିକ ଏହି ଦଶଟି ବର୍ଷ ସିଂହଭୂମିରେ ବିତାଇଛନ୍ତି। ସିଂହଭୂମିର ସବୁ ଉତ୍ସବ ଓ ଉପାଦାନ ସହ ପରିଚିତ ହେବାକୁ ଚେଷ୍ଟା କରିଛନ୍ତି। ସର୍ବ ସ୍ତରେ ବୁଲି ବୁଲି ଯାଇଛନ୍ତି। କି ଉଦ୍ଦାମ ଉତ୍ସାହ ଓ ଉଜ୍ଜ୍ୱଳ ନେତୃତ୍ୱ ନେଇ ସେଠାରେ ସେ ଯେଉଁ ଓଡ଼ିଆ ଜାତି, ଭାଷା ଓ ସଂସ୍କୃତିକୁ ପ୍ରତିଷ୍ଠିତ କରିଛନ୍ତି ତାହା ଆଉ କାହା ପକ୍ଷେ ସମ୍ଭବ ନୁହେଁ।

ଶ୍ରୀ ନାୟକ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'ର ସଙ୍ଗଠନ ଭିତରେ କେବଳ ସିଂହଭୂମି ବିଷୟ ସମ୍ପୃକ୍ତ ନ ଥିଲେ, ସେଠାରେ ଏହି ସାହିତ୍ୟ ସମାଜ ମାଧ୍ୟମରେ ଓଡ଼ିଆ ସଂଗଠନ ଗଠନ କରିଛନ୍ତି । ସେହି ସଂଗଠନର ଏକମାତ୍ର କାର୍ଯ୍ୟ—ଓଡ଼ିଆ ଭାଷାର ମହତ୍ତ୍ୱ ପ୍ରଚାର । ଗୋପବନ୍ଧୁଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ବିଚ୍ଛିନ୍ନାଞ୍ଚଳରେ ଲକ୍ଷ୍ମୀଧର-ବାବୁ ଯେଉଁସବୁ କାର୍ଯ୍ୟ କରିଛନ୍ତି, ତାହା ଆଜି ଇତିହାସର ବିଷୟ ହୋଇଗଲାଣି । ମାତ୍ର ସେଠାରେ ଓଡ଼ିଆ ଭାଷାର ଗୌରବ ରକ୍ଷା ଦିଗରେ ଅନେକ ଦିନ ତଳେ ସେ ଯେଉଁ ଭୂମିକା ନେଇଥିଲେ, ତାହା ବିସ୍ତର ବିଶ୍ଳେଷଣ ସାପେକ୍ଷ । ଜାମସେଦପୁରରେ ଯେତେବେଳେ ଓଡ଼ିଆ ଶିକ୍ଷାରେ ବାଧା ଦିଆଯାଉଥାଏ ଏବଂ ଓଡ଼ିଆ ଭାଷାକୁ ହେୟ ଦୃଷ୍ଟିରେ ଦେଖା-ଯାଉଥାଏ, ଠିକ୍ ସେତିକିବେଳେ ଜାତିପ୍ରେମୀ ଲକ୍ଷ୍ମୀଧର ଓଡ଼ିଆ ଜାତି ପକ୍ଷରୁ ସଭା ଓ ଶୋଭାଯାତ୍ରାର ଆୟୋଜନ କରୁଥିଲେ । ଜାତିଗତ ବିଭେଦ ମାନବ ସମାଜ ପ୍ରଗତିର ଅନ୍ତରାୟ । ସେଥିପାଇଁ ମହାତ୍ମାଗାନ୍ଧୀଙ୍କ ଠାରୁ ଆରମ୍ଭ କରି ଆମ ଉତ୍କଳମଣି ଗୋପବନ୍ଧୁ ପର୍ଯ୍ୟନ୍ତ ସବୁ ଦେଶ-ସେବୀ ପ୍ରଥମେ ଏହି ଚିନ୍ତାଧାରା ଉପରେ ଆଘାତ ଦେଇଥିଲେ । ଏହା କେବଳ ଦେଶପାଇଁ ନୁହେଁ, ଦେଶ ଭିତରେ ଥିବା ବିଭିନ୍ନ ସମ୍ପ୍ରଦାୟ ଓ ଜାତିକୁ ଦୁର୍ବଳ କରିଦିଏ ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ ରହିଥିଲା । ସ୍ୱାଧୀନଚେତା ଲକ୍ଷ୍ମୀଧର ଏହି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ବିଶେଷତଃ ସିଂହଭୂମିକୁ ଯେତେବେଳେ ସେ ତାଙ୍କର କର୍ମସ୍ଥଳ ବୋଲି ଗ୍ରହଣ କରିନେଇଥିଲେ, ସେତେବେଳେ ଦେଖିଲେ, ଜାତିଗତ ବିଭେଦ ଦୂର ନହେଲେ ବିଚ୍ଛିନ୍ନାଞ୍ଚଳରେ ତାଙ୍କ ସ୍ୱପ୍ନ ସାର୍ଥକ ହେବ ନାହିଁ । ସେଥିଲାଗି ସେ ଏହାରି ଉପରେ ପ୍ରତିବାଦ କରିଥିଲେ । ତାଙ୍କର ମହନୀୟତା ବିଚ୍ଛିନ୍ନାଞ୍ଚଳରେ ଥିବା ବିଭିନ୍ନ ଜାତି ଓ ସମ୍ପ୍ରଦାୟ ଭିତରେ ନୂତନ ଚେତନା ଖେଳାଇ ଦେଇଥିଲା ।

ଏହିପରି ଜଣେ ସ୍ୱାଧୀନ ପ୍ରେମୀ ଓ ଜାତୀୟତାବାଦୀ ବ୍ୟକ୍ତିତ୍ୱ ହେଉଛି ଲକ୍ଷ୍ମୀଧରଙ୍କ ଜୀବନ । ସେଥିପାଇଁ ସେ ଗୋପବନ୍ଧୁଙ୍କର ବିଚ୍ଛିନ୍ନାଞ୍ଚଳର କାର୍ଯ୍ୟକ୍ଷମକୁ ସାଧାରଣ ବ୍ୟକ୍ତି ଭାବରେ ଅନୁଭବ ନକରି ଜଣେ

ଅନୁଭବୀ ରୂପେ ତା'ର ପୂର୍ଣ୍ଣାଙ୍ଗ ରୂପରେଖ ଉପସ୍ଥାପନ କରିପାରିଛନ୍ତି । ସତରେ, ଏହି ଅଧ୍ୟାୟଟି ଓଡ଼ିଶାବାସୀଙ୍କ ପାଖରେ ସେତେ ପ୍ରସ୍ଫୁଟିତ ହୋଇନାହିଁ । ସିଂହଭୂମି ପାଇଁ ତାଙ୍କର ଅବଦାନକୁ ବର୍ଣ୍ଣନା କରି ଲେଖକ ଲକ୍ଷ୍ମୀଧର କହନ୍ତି—"ଓଡ଼ିଶାରେ ଗୋପବନ୍ଧୁଙ୍କୁ ଖୋଜିବାକୁ ପଡ଼େ । ସିଂହଭୂମିରେ ସେ ନିଜେ ଧରା ଦିଅନ୍ତି । ତାଙ୍କର ଛାୟା ରୂପ ଏଠି ଯେମିତି ପରିକ୍ରମା କରୁଛି । ସେ ପରିକ୍ରମାର ଶେଷ ନାହିଁ ଯୁଗ ଯୁଗ ଧରି ।"

ଗୋପବନ୍ଧୁଙ୍କ ଜୀବନର ବହୁ ସମୟ ସତ୍ୟବାଦୀ ଓ ସାକ୍ଷୀ-ଗୋପାଳରେ ବିତିଥିଲା । ତାଙ୍କ ଆଦର୍ଶ କର୍ମମୟ ଜୀବନର ଆଲୋକରଶ୍ମି ସେଠାରୁ ଉଦ୍‌ଭାସିତ ହୋଇଥିଲା । ଏକଥା ସର୍ବସ୍ୱୀକୃତ । ମାତ୍ର ଲକ୍ଷ୍ମୀଧର ବାବୁ ସେ କଥାକୁ ଅସ୍ୱୀକାର କରିନାହାନ୍ତି । ସେ କହିବାକୁ ଚାହିଁଛନ୍ତି ଯେ, ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ତାଙ୍କ କର୍ମମୟ ଜୀବନ ଅତିବାହିତ ହୋଇନାହିଁ । ସତ୍ୟବାଦୀରୁ ସିଂହଭୂମି ବିଚ୍ଛିନ୍ନାଞ୍ଚଳ ପର୍ଯ୍ୟନ୍ତ ତାଙ୍କର କର୍ମମୟ ଜୀବନ ଲମ୍ବି ଯାଇଥିଲା । ବିଶେଷତଃ ସେ ସିଂହଭୂମିରେ ବହୁ ସମୟ ଅତିବାହିତ କରି, ସେଠାରେ ବାସିନ୍ଦା ପରି ନିଜକୁ ପରିଚିତ କରିଥିଲେ । ସେଥିପାଇଁ ସେ ସତ୍ୟବାଦୀର ଗୋପବନ୍ଧୁ ନୁହନ୍ତି । ତାଙ୍କୁ ସିଂହଭୂମିର ଗୋପବନ୍ଧୁ କହିବା ଯୁକ୍ତିଯୁକ୍ତ । ସେ ପୁଣି କହନ୍ତି—ଏହି-ଠାରୁ ତାଙ୍କର ରାଜନୈତିକ ଜୀବନର ଶୁଭାରମ୍ଭ ହୋଇଥିଲା । ଏହା ଅବଶ୍ୟ ବିବାଦମାନ ଉକ୍ତି । ତେବେ ଲକ୍ଷ୍ମୀଧର ବାବୁ ଜଣେ ସ୍ୱାଧୀନତା-ପ୍ରେମୀ କର୍ମୀ ଭାବେ, ଦେଶପ୍ରେମୀ ଗୋପବନ୍ଧୁଙ୍କ କର୍ମମୟ ଜୀବନକୁ ଅନୁଧ୍ୟାନଲାଗି ଯେଉଁ ପ୍ରଚେଷ୍ଟା କରିଛନ୍ତି, ସେଥିପାଇଁ ସେ ଅଭିନନ୍ଦନୀୟ ।

ଆଜି ଶେଷରେ ପଦଟିଏ । ଏ ହେଉଛି ଲକ୍ଷ୍ମୀଧର ବାବୁଙ୍କର ସ୍ୱତନ୍ତ୍ର ପରିଚୟ—ନୂତନ ଦିଗ । ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇଥିବାର ଏକ ପ୍ରାମାଣିକ ଚିହ୍ନ ହେଉଛି ଏ ପୁସ୍ତକଟି ।

●

ମାତୃଭୂମି ଅଫିସ୍
କଟକ

# ଏକ ଭିନ୍ନ ସ୍ୱାଦର ଉପନ୍ୟାସ



ଡଃ କୃଷ୍ଣଚରଣ ବେହେରା

କଥାକାର ଶ୍ରୀ ଲକ୍ଷ୍ମୀଧର ନାୟକଙ୍କର 'ରକ୍ତଝିବ ଢେଉ' ଏକ ଭିନ୍ନସ୍ୱାଦର ଉପନ୍ୟାସ । ଆଙ୍ଗିକ ତଥା ଅଙ୍ଗନ ଉଭୟ ଦିଗରୁ ଭିନ୍ନ ସ୍ୱାଦର । ଏହା ୧୯୮୦ ମସିହାରେ ପ୍ରକାଶିତ ହୋଇଥିଲା । ଏହାର ପ୍ରାୟ ବାରବର୍ଷ ପୂର୍ବରୁ ଭାରତରେ ଆରମ୍ଭ ହୋଇଥିବା ନକ୍ସାଲଇଟ୍ ଆନ୍ଦୋଳନ ଆମ ରାଜ୍ୟର କେତେକ ଅଞ୍ଚଳରେ ପ୍ରଭାବ ବିସ୍ତାର କରିଥିଲା । ଆମର ସାହିତ୍ୟ-ଦର୍ପଣରେ ତାହା ପ୍ରତିଫଳିତ ହେବାକୁ ବେଶି ସମୟ ଲାଗି ନଥିଲା । 'ଉଣେଇଶ ଶହ ପଞ୍ଚସ୍ତମ୍ଭ' 'ଶକୁନ୍ତଳା' ପ୍ରଭୃତି ଉପନ୍ୟାସ ତାହାର ଗୋଟିଏ ଗୋଟିଏ ଫଳଶ୍ରୁତି । 'ରକ୍ତଝିବ ଢେଉ' ସେହି ପଂକ୍ତିର ଏକ ଉପନ୍ୟାସ ।

ସାହିତ୍ୟର ବିଭିନ୍ନ ଶୈଳୀ ବା ଫର୍ମ ମଧ୍ୟରେ ଉପନ୍ୟାସ ହେଉଛି ସବୁଠାରୁ ବେଶୀ ମୁକ୍ତ, ନମନୀୟ ଓ ସମ୍ପ୍ରସାରଣକ୍ଷମ ଶୈଳୀ । ଏଥିରେ ତେଣୁ ସବୁପ୍ରକାର ସାଂସାରିକ ଘଟଣା ଓ ମାନବୀୟ ବ୍ୟାପାର ଅବତାରଣା କରିହୋଇ ପାରେ । ରାଜନୈତିକ ଆନ୍ଦୋଳନ ନେଇ ପୃଥିବୀର ବିଭିନ୍ନ ସାହିତ୍ୟରେ ଉଚ୍ଚକୋଟୀର ଉପନ୍ୟାସ ରଚିତ ହୋଇଥିବାର ଦେଖାଯାଏ । ଆମ ସାହିତ୍ୟରେମଧ୍ୟ ତାହାର ବ୍ୟତିକ୍ରମ ହୋଇ ନାହିଁ । ଆମ ରାଜନୈତିକ ଉପନ୍ୟାସର ପରମ୍ପରା ଦୀର୍ଘ ନ ହେଲେ ହେଁ ବର୍ତ୍ତମାନ୍ । 'ପ୍ରଜାର ବନ୍ଧ'ଠାରୁ ଆରମ୍ଭ କରି 'ରକ୍ତଝିବ ଢେଉ' ପର୍ଯ୍ୟନ୍ତ ଏ କ୍ଷେତ୍ରରେ କେତେକ ସାର୍ଥକ ସୃଷ୍ଟି ପ୍ରାୟ ତିରିଶ ବର୍ଷ ସମୟ-ସୀମା ମଧ୍ୟରେ ଆମେ ପାଇ ପାରିଛୁ ।

କଥାକାର ଶ୍ରୀ ନାୟକ ରାଜନୈତିକ ଉପନ୍ୟାସ ରଚନାରେ ଢ଼ାଚପାକଲ କରିଛନ୍ତି । ଏଯାବତ୍ ପ୍ରକାଶିତ ତାଙ୍କର ପ୍ରାୟ ପଚିଶ ଖଣ୍ଡ ଉପନ୍ୟାସ ମଧ୍ୟରେ 'ସେ ମରି ନାହିଁ', 'ହାରେ ଦୁର୍ଗ ଦେଶ' ପ୍ରଭୃତି ଉପନ୍ୟାସ ରାଜନୈତିକ ପୃଷ୍ଠଭୂମିରେ ରଚିତ ତଥା ରାଜନୈତିକ ଚିନ୍ତାରେ ପରିପୁଷ୍ଟ । ରାଜନୈତିକ ଉପନ୍ୟାସ ରଚନା ପାଇଁ ଲେଖା ସଚେତନତା ସହିତ କାଳ ସଚେତନତା ଲୋଡ଼ା । ଲେଖା ଓ କାଳ ମଧ୍ୟରେ ସାର୍ଥକ ସମବାୟ ରକ୍ଷା କରିପାଇଥିଲେ ତଥା ପାରମ୍ପର୍ଯ୍ୟ ବିଧାନ କରିପାଇଥିଲେ, ରାଜନୈତିକ ଉପନ୍ୟାସ ସଫଳତାରେ ଉତ୍ତୀର୍ଣ୍ଣ ହୋଇ-ଥାଏ । 'ରକ୍ତଝଡ଼ର ଢେଉ' କ୍ଷେତ୍ରରେ ଆମେ ତାହାହିଁ ଲକ୍ଷ୍ୟ କରିବା ।

କାଳ—୧୯୬୭ ମସିହା । ଭାରତର ଏକ ଅଜ୍ଞାତନାମା କୋଣରେ ଯେତେବେଳେ ନକ୍ସାଲାଇଟ୍ ଆନ୍ଦୋଳନ ଆରମ୍ଭ ହେଲା, ଜୁନ୍ ୨୮ ତାରିଖରେ ପିକିଂ ରେଡ଼ିଓ ଘୋଷଣା କରିଥିଲା—ମାଓସେ-ତୁଙ୍ଗଙ୍କ ଶିକ୍ଷାର ନିର୍ଦ୍ଦେଶ ଅନୁଯାୟୀ ଏଥିରେ କୃଷକସମାଜଦ୍ୱାରା ଆରମ୍ଭ କରାଯାଇଥିବା ବୈପ୍ଳବିକ ସଶସ୍ତ୍ର ସଂଗ୍ରାମରେ ଏହା ହେଉଛି ଘଡ଼ଘଡ଼ି ଥାବା ! ବାସ୍ତବିକ, ଏହା ଘଡ଼ଘଡ଼ି ଥାବା ହିଁ ଥିଲା । ଏହି ଥାବା ବହୁ ରକ୍ତ-ପାତ କଲା—ଅନେକ ଜୀବନ ନେଲା—କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ଜର୍ଜରିତ କଲା—କେତେ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପ୍ରତିକୃତିକୁ ଧ୍ୱଂସ କଲା । ସୃଷ୍ଟି ବା ସ୍ଥିତି ଅପେକ୍ଷା ପ୍ରଳୟ କାଣ୍ଡ ପ୍ରତି ଏହି ଆନ୍ଦୋଳନର ପ୍ରବଣତା ବେଶି ପ୍ରକାଶ ପାଇଲା । ବୋଧହୁଏ ସେଥିପାଇଁ ଭାରତରେ ଏ ଦେଶ-ମାଟିରେ ଆନ୍ଦୋଳନଟି ଚେର ଧରି ପାରିଲା ନାହିଁ । ଲେଖକଙ୍କର ଏହି କାଳ ସଚେତନତା ପ୍ରକାଶ ପାଇଛି ଉପନ୍ୟାସର ମୁଖ୍ୟ ଚରିତ୍ରମାନଙ୍କ ଭୁଣ୍ଡର ଭାଷାରେ । ଉଦାହରଣ ସ୍ୱରୂପ—"ସର୍ବସାଧାରଣରେ ମତ ପ୍ରକାଶ ପାଇଲା, ଶ୍ରେଣୀଶତ୍ରୁ ର ବିଲୋପସାଧନ କଥା କହୁଥିଲେ ବି ବୁର୍ଜୁଆ ସମାଜର ମଧ୍ୟସ୍ତରର ଲୋକମାନଙ୍କ ଉପରେ ଚଡ଼ାଉ କରୁଛନ୍ତି ଏମାନେ ।

—(ପୃଷ୍ଠା ୫୮-୫୯)

କୌଣସି ଗଠନମୂଳକ କାର୍ଯ୍ୟ ସାଧନ କରି ନ ପାରିବାରୁ ନକ୍ସାଲାଇଟ୍ ଆନ୍ଦୋଳନ ଆମର ଭୂମିହୀନ କୃଷକ ସମାଜକୁ ବା କର୍ମ-

ହୀନ ବର୍ଗର ଜନତାକୁ ସଂଗ୍ରାମ ପାଇଁ ପ୍ରସ୍ତୁତ କରିପାରିନାହାନ୍ତି । ଆନ୍ଦୋଳନ ଲକ୍ଷ୍ୟଭ୍ରଷ୍ଟ ହେବାରୁ ପାର୍ଟିର ସଚ୍ଚା କର୍ମୀମାନେ ନୀରବ ରହିଗଲେ, କିମ୍ବା ପାର୍ଟିଠାରୁ ପ୍ରତ୍ୟକ୍ଷ ସମ୍ପର୍କ ଛିନ୍ନ କରିଦେଲେ । ଉପ-ନ୍ୟାସର ମୁଖ୍ୟ ଚରିତ୍ର ମୀନାକ୍ଷି ହିଁ ଏହାର ପ୍ରତୀକ ।

ଉପନ୍ୟାସରେ କଳାପକ୍ଷ ବିଷୟ ବିଚାର କଲେ, ସଚେତନ ପାଠକ ନିରାଶ ବୋଧ କରିବେ ନାହିଁ । କାହାଣୀଟି ଜଟିଳ ନୁହେଁ ବା ବିଶେଷ ଗ୍ରନ୍ଥିତ ନୁହେଁ । ମୁଖ୍ୟତଃ ଦୁଇଟି ପରିବାରକୁ ନେଇ କାହାଣୀ ଗଢ଼ି ଉଠିଛି । ଗୋଟିଏ ପଟେ ଅବିନାଶ ବାବୁ—ଅପର୍ଣ୍ଣାଙ୍କ ନିମ୍ନ ମଧ୍ୟବିତ୍ତ ପରିବାର; ତାଙ୍କରି ବାହାରିଛନ୍ତି ମୀନାକ୍ଷି— ଜଣେ ଅଙ୍ଗୀକାରବଦ୍ଧ ବିପ୍ଳବିନୀ ହିସାବରେ । ଘଟଣା ଚକ୍ରରେ ସେ ଷ୍ଟେଟ୍ କାରବାରୀ ସଞ୍ଜୟଙ୍କୁ ବିବାହ କରି, ଆସିଛନ୍ତି ବିଶ୍ୱଜିତ୍ ବାବୁ—ସ୍ୱର୍ଣ୍ଣପ୍ରଭାଙ୍କ ପରିବାରକୁ । ଏ ପଟର ପରିବାରଟି ଶିଳ୍ପପତି ବୁର୍ଜୋଆ ବା ବିତ୍ତଶାଳୀ । ମୀନାକ୍ଷି-ସଞ୍ଜୟଙ୍କ ବିବାହ ତେଣୁ ବେଖାପ ବୋଧ ହୋଇପାରେ । କିନ୍ତୁ ମୀନାକ୍ଷି ଭଳି ଜଣେ ନକ୍ସାଲାଇଟ୍ ଯୁବତୀ ପକ୍ଷରେ ଏପରି ବିବାହ କରିବାର ନିର୍ଦ୍ଦିଷ୍ଟ କାରଣ ଥିଲା । ଅଶୋକ ସମକ୍ଷରେ ସେ ତାହା ସ୍ପଷ୍ଟ କରି ଦେଇଛନ୍ତି— "ଓଡ଼ିଶାର ପ୍ରାଣକେନ୍ଦ୍ର ଏଇ କଟକରେ, ଜଣେ ସମ୍ଭ୍ରାନ୍ତ ବୁର୍ଜୋଆ ପରିବାର ଭିତରେ ଚୁପ୍‌ଚାପ୍ ରହି ଆମ ପାର୍ଟି ଆନ୍ଦୋଳନକୁ କାର୍ଯ୍ୟ-କାରୀ କରିବାକୁ ଚେଷ୍ଟା କରିବି । ବିଶ୍ୱଜିତଙ୍କ ବଣ୍ଡଲେକ ସଂସାରର ଭିତ୍ତିଭୂମିକୁ ମୁଁ ଯଦି ଦୋହଲାଇ ଦେଇପାରେ, ପାର୍ଟିର ଜଣେ କାଡର୍ ହିସାବରେ ମୋର କର୍ତ୍ତବ୍ୟ ନିଷ୍ଠା କରିପାରିଛି ବୋଲି ଆତ୍ମସନ୍ତୋଷ ପାଇବି ।"—(ପୃଷ୍ଠା-୭୩) । ଆପଣା କଥା ଅନୁଯାୟୀ ମୀନାକ୍ଷି କାର୍ଯ୍ୟ କରିଛି । ତାହାର କଥାବାର୍ତ୍ତା, ଚାଲିଚଳଣିରୁ ଶାଶୂଶ୍ୱଶୁର ଜାଣି ପାରିଛନ୍ତି —'ମୀନାକ୍ଷି ଏକ ନିଆଁ ଝୁଲ' । ସେହି ନିଆଁ ଝୁଲ ବିଶ୍ୱଜିତଙ୍କ ସଂସାରକୁ ପୋଡ଼ିଦେଇଛି—ସୁଚରିତା-ରସାନନ୍ଦଙ୍କୁ ମାରିଦେଇଛି—ସଞ୍ଜୟଙ୍କୁ ଠେଲିଦେଇଛି —ଏପରିକି ବିକ୍ରମ, ସୁନା ମା', ଲୁଚିପାଇ, ଚହଟି ଆଦି ପରିବାରର ନୌକର ନୌକରାଣୀଙ୍କୁ ମଣିଷ ପରି ବଞ୍ଚିବାର ବାଟ ବତେଇଛନ୍ତି ।

ମଦତ ମୀନାକ୍ଷି, ବଙ୍କଚନ୍ଦ୍ର ପ୍ରଭୃତି ଅନ୍ୟ କେତୋଟି ଚରିତ୍ରଙ୍କୁ ସନ୍ତୋଷଜନକ ଭାବରେ ଚିତ୍ରଣ କରାଯାଇଛି, ତଥାପି ଉପନ୍ୟାସଟିକୁ ଚରିତ୍ରପ୍ରଧାନ ବୋଲି କହିହେବ ନାହିଁ । କାରଣ ଉପନ୍ୟାସର ମୂଳରୁ ଚୂଳଯାଏ ଘଟିଥିବା ଘଟଣାବଳୀ ଦ୍ୱାରା ହିଁ ଚିତ୍ତ ଚମତ୍କୃତ ହୋଇଥାଏ । ପୁଣି ରାଜନୈତିକ ଉପନ୍ୟାସ ବା 'ଅକଳ୍ପନାମୂଳକ ଉପନ୍ୟାସ' (Non-fiction Novel) ବହୁ ପରିମାଣରେ ଘଟଣାପ୍ରଧାନ ହେବା ଅବଶ୍ୟମ୍ଭାବୀ । 'ରକ୍ତଝିଅର ନେଉର' ରାଜନୈତିକ ଉପନ୍ୟାସ ହେତୁ ଶୈଳୀ ଦିଗରୁ କରି ଏହାକୁ ଅକଳ୍ପନାମୂଳକ ଉପନ୍ୟାସ ବୋଲିବା ଯୁକ୍ତିଯୁକ୍ତ ହେବ । ଚମତ୍କାର ଆଖ୍ୟାନମୂଳକ ଆଙ୍ଗିକରେ ସମକାଳୀନ ସତ୍ୟ ଘଟଣା-ବଳୀ ଦେଇ ସୃଷ୍ଟି ହେଉଥିବା କଥା ସାହିତ୍ୟକୁ ଅକଳ୍ପନାମୂଳକ ଗଳ୍ପ-ଉପନ୍ୟାସ ବୋଲିଯାଇ ପାରେ । ପ୍ରକୃତ ସାମାଜିକ ବା ରାଜନୈତିକ ବ୍ୟାପାରକୁ କଳ୍ପନାର ପତଳା ପୁଟ ଦେଇ ଏହା ସାଧାରଣତଃ ରଚିତ ହେଉଛି । ସାମ୍ବାଦିକତା ଓ ଆଖ୍ୟାନମୂଳକତାର ଏହା ଏକ ମିଶ୍ର ବା ସଙ୍କର ଶୈଳୀ । ଏଇ ଷଷ୍ଠମ ଦଶକରେ ଉକ୍ତ ଶୈଳୀଟି ପ୍ରଥମେ ମାର୍କିନ୍ ସାହିତ୍ୟରେ ଟ୍ରୁମାନ୍ କାପୋଟେ, ନର୍ମାନ୍ ମେଲର୍ ପ୍ରମୁଖ କଥାକାର-ମାନେ ପ୍ରୟୋଗ କରିଥିଲେ । ବର୍ତ୍ତମାନ ବିଭିନ୍ନ ସାହିତ୍ୟରେ ଏହି ଉପନ୍ୟାସ ଶୈଳୀଟି କ୍ରମଶଃ ଜନପ୍ରିୟତା ଲାଭ କରୁଥିବାର ଦେଖାଯାଉଛି । (ଏ ସଂପର୍କରେ ୧୯୭୭ ମସିହାରେ ପ୍ରକାଶିତ Fact and Fiction by John Hollowell, Published by the university of North Carolina Press, Chapel Hill, U. S. A ପୁସ୍ତକଟି ଦ୍ରଷ୍ଟବ୍ୟ । ) 'ରକ୍ତଝିଅର ନେଉର' ଉପନ୍ୟାସର ଘଟଣାସ୍ଥଳ କଟକ ସହର ଏବଂ ତାହାର ଆଖପାଖ ଅଞ୍ଚଳ । କଟକର ପ୍ରଫେସର ପଡ଼ା, ଚାନ୍ଦିନୀଚୌକ, ଭୁଲଣୀପୁର, ବାରବାଟୀ ଷ୍ଟାଡିୟମ୍, ରେଭେନ୍ସା କଲେଜ, ଶୈଳବାଳା ମହିଳା କଲେଜ ପ୍ରଭୃତି ପରିଚିତ ସ୍ଥାନର ଉଲ୍ଲେଖ ବା ବର୍ଣ୍ଣନା ଏଥିରେ ରହିଛି । ଓଡ଼ିଶା ତଥା ଭାରତର କେତେକ ନିର୍ଦ୍ଦିଷ୍ଟ ରାଜନୈତିକ ଘଟଣାର ଯଥାଯଥ ଚିତ୍ର ମଧ୍ୟ ସ୍ଥାନ ଲାଭ କରିଛି । ସମଗ୍ର ଉପନ୍ୟାସଟିରେ ଯେପରି ସତ୍ୟ ଓ କଳ୍ପନାର ମଧୁର ଲୁଚକାଳି ଖେଳ ଚାଲିଛି ! ସାମ୍ବାଦିକ —ସୁଲଭ ଢଙ୍ଗରେ ଗୋଟିକ ପରେ ଗୋଟିଏ ଘଟଣା ପାଠକ ସମାଜ

ତନ୍ତ୍ରରେ ଆଗ୍ରହ ଓ କୌତୂହଳ ସୃଷ୍ଟିପୂର୍ବକ ବର୍ଣ୍ଣିତ ହେବାରେ ଲାଗିଛି । ତେଣୁ 'କୃଷ୍ଣପକ୍ଷ ପର୍ବ', 'ଜେନେରେଶ ଟେଁପ୍ରେସ' ପ୍ରଭୃତି ଉପନ୍ୟାସ ଭଳି 'ରକ୍ତଝଡ଼ ଭେଉଁର' ଏକ ସାର୍ଥକ ଅକଳ୍ପନାମୂଳକ ଉପନ୍ୟାସ ହୋଇ ପାରିଛି ।

ତାଙ୍କର ଅନ୍ୟାନ୍ୟ ଉପନ୍ୟାସରେ କଥାକାର ଶ୍ରୀ ନାୟକ ଯେଉଁ କଳାତ୍ମକ ପ୍ରକାଶଭଙ୍ଗୀ ଅନୁସରଣ କରିଥିଲେ, 'ରକ୍ତଝଡ଼ ଭେଉଁର'ରେ ତାହା ପୂର୍ବପରି ବଜାୟ ରଖିଥିବାର ଦେଖାଯାଏ । ବୈଜ୍ଞାନିକ ବା ଅକଳ୍ପନାମୂଳକ ଉପନ୍ୟାସ ସାଧାରଣତଃ ପ୍ରଚାରଧର୍ମୀ ହୋଇଥାଏ, ଫଳରେ ତାହାର କଳାତ୍ମକତାର ହାନି ଘଟିଥାଏ —ପ୍ରଚଳିତ ଥିବା ଏପରି ମନ୍ତବ୍ୟ 'ରକ୍ତଝଡ଼ ଭେଉଁର' ପ୍ରତି ପ୍ରଯୋଜ୍ୟ ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ ଉପନ୍ୟାସର ବହୁଳ ଅଂଶବିଶେଷ ଉଦ୍ଧାର କରାଯାଇ ପାରେ । ସ୍ୱାମୀ-ସ୍ତ୍ରୀ ସଞ୍ଜୟ-ମୀନାକ୍ଷିଙ୍କର ଶୟନକକ୍ଷର ଏକ ଘଟଣା:—"ଝଟ୍ କରି ଧରି ପକାଇଲା ମୀନାକ୍ଷିର ହାତ ସଞ୍ଜୟ । କହିଲା; ଯାଉଛ କୁଆଡ଼େ ?

—ଆର ଘରକୁ ।

—କାହିଁକି ?

—ଏ ଘରଟା ବଡ଼ ଅନ୍ଧାର !

—ଅନ୍ଧାର ? ସଞ୍ଜୟ ଉଠି ବସିଲା ଶେଯ ଉପରେ ! ଏତେ ଆଲୁଅ, ତ' ଘରଟା ଟ୍ୟୁବ୍ ଲାଇଟ୍ ଜଳୁଛି ଦପ୍ ଦପ୍ ହୋଇ ··

—ଦପ୍ ଦପ୍ ହୋଇ ଜଳୁଛି ଠିକ୍ । କିନ୍ତୁ ସେ ଦପ୍ ଦପ୍ଟା ତୁମ ବଡ଼ଲୋକ ଅହଂକାରର ଦର୍ପ ଭିତରେ କଳା ବୃକ୍ଷସ ପରି ଦାନ୍ତ ନକୁଟି ଖତେଇ ହେଲପରି ଲାଗୁଛି ମତେ ।

—ରାକ୍ଷସ ?

—ହଁ ରାକ୍ଷସ ' ତମେ ଦେଖି ପାରିବନି ସେ ରାକ୍ଷସକୁ । ବଡ଼ ଅନ୍ଧାର ।

—ଅନ୍ଧାର ?

ହଁ ଅନ୍ଧାର ଭିତରେ ତମେ । ମୋର ଆଲୁଅ ଦରକାର । ମୁଁ ଦେଖେଁ ଯାଇ ସେତ ପାହ୍ୱଲଣ୍ଡ କ ନାଇଁ ।

—ସେତ ପାହ୍ୱଲଣ୍ଡ ? ସଞ୍ଜୟ କାନ୍ଥ ଘଣ୍ଟା ଆଡ଼କୁ ଚାହିଁଲା । ଠଙ୍ ଠଙ୍ କରି ଘଣ୍ଟା ବାଜିଲା ।

ସଞ୍ଜୟ ହାତମୁଠାରୁ ନିଜକୁ ଝିଙ୍କି ନେଲା ପରେ ଆଉ ଘରକୁ ଚାଲିଗଲା ମୀନାକ୍ଷି । ଝରକାଗୁଡ଼ିକୁ ଖୋଲିଦେଲା ଗୋଟିକ ପରେ ଗୋଟିଏ । ସ୍ତବ୍ଧ ହୋଇ ଆକାଶ ଆଡ଼େ ଚାହିଁଲା । ହଁ, ଭୋର୍ ହୋଇ ଆସୁଛି । ଲାଲ୍ ଆଲୁଅର ଭୋର । ଏଇ ଭୋର୍‌ର ଅପେକ୍ଷାରେ ସେ ବହୁତ ଦିନୁ ଅନେଇ ରହିଛି । ଝରକାର ପର୍ଦ୍ଦାଗୁଡ଼ିକୁ ଆଡ଼େଇଦେଲା ସେ ହାତରେ ।"—(ପୃଷ୍ଠା ୧୦୫-୬)

ବାପ-ଝିଅ ଅବିନାଶ ବାବୁ-ମୀନାକ୍ଷିଙ୍କ ମଧ୍ୟରେ ଆଳାପ :—
"ମୋତେ ଏ ଘରେ ବିବାହ ଦେଇ ଯୋଉ ଭୁଲ୍ ତମେ କରିଚ ବୋଲି ଆଜି ଭାବୁଚ, ସେ ଭୁଲ୍ ତୁମର ଭୁଲ୍ ନୁହେଁ, ଫୁଲ ! ଫୁଲ ଫୁଟିବାର ପ୍ରକ୍ରିୟା ପରି ବିକାଶଧର୍ମୀ ବିପ୍ଳବ । ଦାଶରଥିର ହୀନମନ୍ୟତାରୁ ନିଜକୁ ମୁକ୍ତ କରି ଥିଲାବାଲାଙ୍କୁ ଚ୍ୟାଲେଞ୍ଜ୍ ଦେବାପାଇଁ ଲଢ଼େଇର ହୁଙ୍କାର ।

ଚମକି ଉଠିଲେ ଅବିନାଶ । ମୀନାକ୍ଷି ମୁହଁରୁ ସେ ଏ କଣ ଶୁଣୁଛନ୍ତି ? କେବଳ ଆଘାତ ନୁହେଁ, ତାଙ୍କ ନିଷ୍କ୍ରିୟତାକୁ, ତାଙ୍କ ଅକର୍ମଣ୍ୟତାକୁ ଚାବୁକ୍ ମାରି ଜାଗ୍ରତ କରାଇବାର ଅଗ୍ନିମନ୍ତ୍ର ।"—(ପୃଷ୍ଠା ୧୨୨-୨୩)

ରମାନନ୍ଦ-ସୁଚରିତାଙ୍କ ବୈପ୍ଳବିକ ମନୋବୃତ୍ତିର ବର୍ଣ୍ଣନା :—
"ଘରଭିତରକୁ ଫେରିଆସି ମୀନାକ୍ଷି ଚୁପ୍‌ଚାପ୍ ବସି ରହିଲା କିଛି ସମୟ । ତା' ମନ ଭିତରେ ରମାନନ୍ଦ ଆଉ ସୁଚରିତାର ଦୁଃସାହସିକ ପଦକ୍ଷେପର ଧ୍ୱନି, ଯେପରି ଏକ ଯୁଦ୍ଧବୀଣାର ଝଙ୍କାର ପରି ବାଜି ଉଠିଲା !

ପ୍ରେମ ! ହଁ, ପ୍ରେମହିଁ ବୋଧହୁଏ ଆତ୍ମବିଶ୍ୱାସର ପ୍ରତୀକ । ପରିବର୍ତ୍ତନ ଆଣିବାର ଅଙ୍ଗୀକାର । ଗତାନୁଗତିକତାର ଚକ୍ରଜାଲକୁ ଛିନ୍ନ-

ଜର ଏକ ନୂଆ ସକାଳ ଆଣିବା ପାଇଁ ଆଟେଇ ଦିବାର ଅଗ୍ନିଜ ଆନନ୍ଦ ।

କୋଡ଼ିଏ ବର୍ଷର ଝିଅ ସୁଚରିତା । ସେ ଯେମିତି ରକ୍ତିଗର ଏକ ଶିଖାସ୍ନିତ ଝଲକ ! ଏବଂ ରସାନନ୍ଦ ! ସେଇ ଝଲକର ତରଙ୍ଗରେ ଆଲୋକର ସମ୍ଭବ ଦଦନ୍ତ ପର, ତାର ଧଡ଼ଅ-ପାତଳ। ଅସ୍ଥିକଙ୍କାଳସାର ଦେହର ତେଜ ଆଉ ସାମର୍ଥ୍ୟ ଉପରେ ଅନ୍ୟାୟ ଆଉ ଅବିଚାରର ଅନ୍ଧ ଦୁର୍ଗକୁ ଭାଙ୍ଗି ଚୂର୍ମାର୍ କରିଦେବା ପାଇଁ ଏକ ଦୁର୍ଦ୍ଦମନୀୟ ହୁଙ୍କାର !" (ପୃଷ୍ଠା ୨୪୭-୪୮)

ଅଳମତି ବିସ୍ତାରେଣ । ମୋଟାମୋଟି ଆଲୋଚନାର ମୂଳ ବକ୍ତବ୍ୟ—ଆର୍ଥିକ ତଥା ଆଙ୍ଗିକ ଉଭୟ ଦିଗରୁ ଏକ ଭିନ୍ନ ସ୍ବାଦର ଉପନ୍ୟାସ ଭାବରେ 'ରକ୍ତଝଡ଼ର ଭୋର' ଯେ ସାଫଲ୍ୟମଣ୍ଡିତ ହୋଇଛି, ଏହା ବିନା ଦ୍ୱିଧାରେ ବୋଲିଯାଇ ପାରେ ।



ମୁଖ୍ୟ ଓଡ଼ିଆ ଅଧ୍ୟାପକ
ମରକାଷ୍ଟ କଲେଜ, ଫୁଲବାଣୀ

# ବନ୍ଦନା-ଗୀତି ଗାଏ

ସଚ୍ଚିଦାନଂଦ କର

କଟକରେ 'ଲେଖନୀ' ଏକ ସାହିତ୍ୟ-ସଂସ୍କୃତି-ଅନୁଷ୍ଠାନ । ଲକ୍ଷ୍ମୀଧର ବାବୁ ଥାଆନ୍ତି ଏହାର ମୁଖ୍ୟକର୍ତ୍ତା । ଏହି ଅନୁଷ୍ଠାନର ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା ରୂପେ ସେ ମୋତେ ଡାକିଲେ । ଗଲି । ଭାଷଣ ଦେଲି । ଭଲ କହିଲି କି ମନ୍ଦ କହିଲି ଜାଣେ ନାହିଁ । କିନ୍ତୁ ସାହିତ୍ୟିକ ଲକ୍ଷ୍ମୀଧର ବାବୁ ଖୁବ୍ ପସନ୍ଦ କଲେ । ଆସିଲା ବେଳକୁ ମୋ ହାତରେ ଲଫାପାଟିଏ ଧରାଇ ଦେଲେ । ଖୋଲି ଦେଖିଲି ପଚାଶ ଟଙ୍କା । ମୋ ଭାଷଣ ପାଇଁ ପାରିଶ୍ରମିକ । ସଭାସମିତିରେ ଭାଷଣ ଦେଇ ପାରିଶ୍ରମିକ ପାଇବା ମୋ ଜୀବନରେ ଏହା ପ୍ରଥମ । ଆଶ୍ଚର୍ଯ୍ୟ ହେଲି ଏବଂ ତାରିଫ୍ କଲି ଲକ୍ଷ୍ମୀଧର ବାବୁଙ୍କ ଉଦାର ବିବେଚନାକୁ । ମନେ ପଡ଼ିଲା, ତାଙ୍କର କଥା । ସେ କହନ୍ତି, ତାଙ୍କର ପ୍ରଥମ ଉପନ୍ୟାସ ୧୯୩୫ରେ (ଆଜକୁ ପଚାଶ ବର୍ଷ ତଳେ) ମୋ ପିତା ସ୍ୱର୍ଗତ ବାଳକୃଷ୍ଣ କର ଛପାଇଥିଲେ ଏବଂ ବହି ପାଇଁ କିଛି ପାରିଶ୍ରମିକ ପାଇଥିଲେ ଲକ୍ଷ୍ମୀଧର ବାବୁ । ବହି ଛପି ପାରିଶ୍ରମିକ ପାଇବା ଏହା ତାଙ୍କ ଜୀବନରେ ପ୍ରଥମ ।

ମନେ ମନେ ଭାବିଲି—ଲୋକଙ୍କ ଭଲ ବକ୍ତା ମଧ୍ୟ ଭାଷଣପାଇଁ ପରିଶ୍ରମ ତ କରନ୍ତି ! ତେଣୁ ସାମାନ୍ୟ ପାରିଶ୍ରମିକ ପାଇଲେ କ୍ଷତି କଣ ?

ଏକ ଶୀତୁଆ ଅପରାହ୍ଣ । ଘରେ ବସି ବହି ପଢ଼ୁଥାଏ । ଲକ୍ଷ୍ମୀଧର ବାବୁ ପଶି ଆସିଲେ—ହାତରେ ତାଙ୍କର ବହି—ସିଂହଭୂମିର ଗୋପବନ୍ଧୁ—ସଦ୍ୟ ପ୍ରକାଶିତ । ବହି ଖଣ୍ଡିଏ ମୋତେ ଉପହାର ଦେଇ ପଢ଼ିବାକୁ ଅନୁରୋଧ କରିଗଲେ । ବହି ଖଣ୍ଡିକ ପଢ଼ି ମୁଗ୍ଧ ହେଲି । ଅନେକ ଅଜଣା କଥା ଜାଣିଲି । ଲକ୍ଷ୍ମୀଧର ବାବୁଙ୍କର ଅନୁଭୂତି, ଅନୁଭବ ଅଛି ଯେହେତୁ ସେ ସିଂହଭୂମିରେ ବହୁବର୍ଷ ଅତିବାହିତ

କରିଥିଲେ ଓ ସଙ୍ଗଠନ କରୁଥିଲେ । ସେ ଅଞ୍ଚଳରେ ଉତ୍କଳମଣି ଗୋପବନ୍ଧୁଙ୍କ କାର୍ଯ୍ୟକଳାପ ଓ ତାଙ୍କର ମିଳାମିଶା, ଆଗ୍ରହ-ଉତ୍ସାହ ସେ ଦେଖିଛନ୍ତି ଓ ଜାଣିଛନ୍ତି । ତେଣୁ ଅନେକ ନୂଆ ଘଟଣାଗୁଡ଼ିକ ନେଇ ଜୀବନ୍ତ ହୋଇ ରହିଛି ଲେଖା ଭିତରେ । ଅନେକ ଲୁକ୍କାୟିତ ଘଟଣା ଉନ୍ମୋଚିତ ହୋଇଛି ଏଥିରେ । କଣ୍ଟାଦାନ ପରେ ଏହି ବହିର ଉନ୍ମୋଚନ ଉତ୍ସବ ହୋଇଥିଲା ଶ୍ରୀରାମଚନ୍ଦ୍ର ଭବନରେ । ଯେଉଁମାନେ ପଢ଼ିଛନ୍ତି, ସେମାନେ ବହିଟିର ବହୁତ ପ୍ରଶଂସା କରିଛନ୍ତି । ତାହା ଇତିହାସ ନୁହେଁ, କିମ୍ବା ଜଣଙ୍କ ଜୀବନୀ ନୁହେଁ, ଉପନ୍ୟାସ ଭଳି ମନେ ହେଲା । ଭାଷା ଓ ଶୈଳୀ ଚମତ୍କାର । କ୍ଷୋଭ, ଖେଦୋକ୍ତି, ବକ୍ରୋକ୍ତି ଓ ସାହାଯ୍ୟର ଭରପୂର । ଉପସ୍ଥାପନା ଯେପରି ଅଭିନବ, ସେହିପରି ଆଚମ୍ବିତ । ଲେଖକର ଅନୁଭୂତି, ଅନୁଭବ ଓ ଅନୁଧ୍ୟାନ ବିନା ଏଭଳି ଲେଖିହୁଏନା । ଏହା ଜୀବନ-ଚରିତ ନୁହେଁ, ଉପନ୍ୟାସ ଢଙ୍ଗରେ ଲିଖିତ ଏକ ଅଭିନବ ଇତିହାସ-ସାହିତ୍ୟ ।

ମୋର ଏକ ଦୁର୍ଯୋଗ ସମୟ । ଚିନ୍ତାଗ୍ରସ୍ତ ମନ ମୋର ଭାରାକ୍ରାନ୍ତ । ହଠାତ୍ ଉପସ୍ଥିତ ହେଲେ ଲକ୍ଷ୍ମୀଧର ବାବୁ । ଖଣ୍ଡିଏ ପତ୍ରିକା ପ୍ରକାଶ କରିବାର ବଳବତ୍ତର ଇଚ୍ଛା, ଶୀଘ୍ରମତ ଗୋଟାଏ ଖିଆଲ୍, ଝୁଙ୍କ । ପତ୍ରିକାର ନାଁ କଣ ହେବ ସେଥିପାଇଁ ଆଲୋଚନା କରିବାକୁ ଆସିଥାନ୍ତି ସେ । ବହୁ ନାଁ ବଛା ହେଲା । କିନ୍ତୁ କୌଣସିଟି ପସନ୍ଦ ହେଲା ନାହିଁ ପତ୍ରିକା-ସମ୍ପାଦକଙ୍କୁ । ଶେଷରେ ସ୍ଥିର ହେଲା ଯେ 'ଆଜିର ଡାକ' ନାମକ ଯେଉଁ ପତ୍ରିକାଟି ବହୁବର୍ଷ ତଳେ ସେ ପ୍ରକାଶ କରୁଥିଲେ, ଏବେ ପ୍ରକାଶ କରିବାକୁ ଯାଉଥିବା ପତ୍ରିକାର ନାଁ ହେଉ ତାହା । ତାହାହିଁ ହେଲା । 'ଆଜିର ଡାକ' ପ୍ରକାଶ ପାଇଲା । (କେତୋଟି ସଂଖ୍ୟା ମଧ୍ୟ ପ୍ରକାଶ ପାଇଛି) । ଲକ୍ଷ୍ମୀଧର ବାବୁ ଖୁବ ଖୁସି ହେଲେ । ସନ୍ତାନର ଜନ୍ମରେ ଜନକ ଖୁସି ନ ହୁଅନ୍ତେ କିପରି ?

ସିଂହଭୂମିର ଗୋପବନ୍ଧୁ ବହି ସମ୍ପର୍କରେ ଏବଂ 'ଆଜିର ଡାକ' ପତ୍ରିକା ସଂପର୍କରେ ମୁଁ ମୋର ମତ ଦେଇ ତାଙ୍କ ପାଖକୁ ଲେଖିଥିବା

ଏଠି ଦୁଇଖଣ୍ଡ ମଧ୍ୟ ସେ ପ୍ରକାଶ କରିଦେଲେ ବହିର ୨ୟ ସଂସ୍କରଣରେ ଓ ପତ୍ରିକାରେ । କେଡ଼େ ଉଦାରବାଦୀ ସେ !

ସମସ୍ତ-ଅସମସ୍ତଙ୍କୁ ସେ ମାନନ୍ତି ନାହିଁ । ଭବଚନ୍ଦ୍ର ଘିରଙ୍କର ଆଗରୁ ଏଠି ଲେଖିବା ତାଙ୍କର ଦରକାର ପଡ଼େ ନାହିଁ । ଝଡ଼ଭଳି ଅପ୍ରତ୍ୟାଶିତ ଭାବରେ ପଶି ଆସନ୍ତି । କିଛି ସମୟ ଗପ କରି ପୁଣି ଚାଲି-ଯାନ୍ତି, ଯେମିତ ଆସିଥିଲେ ।

— ପାନ ସିଗ୍ରେଟ ଦରକାର ?

—ନା ।

ସାମାନ୍ୟ ଜଳଖିଆ ?

—ନା ।

ଲେଖା ଓ ସାହିତ୍ୟ-ସଂସ୍କୃତି ବିଷୟରେ କିଛି ଆଲୋଚନା, ଝାଡ଼ଖଣ୍ଡାଞ୍ଚଳ ସିଂହଭୂମିରେ ଓଡ଼ିଆମାନଙ୍କ ଦୁର୍ଦ୍ଦଶା-କାହାଣୀରେ ଦୁଃଖ ଓ ସମବେଦନା, ପତ୍ରିକାର ସୌଷ୍ଠବ ବୃଦ୍ଧି ବିଷୟ ଇତ୍ୟାଦି ଆଲୋଚନାର ବିଷୟ ବସ୍ତୁ । ତା'ପରେ ଲକ୍ଷ୍ମୀଧର ବାବୁ ଯାଇ ଆଉ କେଉଁଠି—ଜଟଣିରେ ନ ହେଲେ ଜାମସେଦପୁରରେ, କିମ୍ବା କଲିକତାରେ ।

ଥରେ ନିମନ୍ତ୍ରଣ ପତ୍ରଟିଏ ପାଇଲି । ଲକ୍ଷ୍ମୀଧରବାବୁ ତାଙ୍କ କବିତାର ଆବୃତ୍ତି କରି ରେକର୍ଡ଼ିଂ କରାଇଛନ୍ତି । କଲିକତାର 'ଗାଥାଙ୍ଗ' କମ୍ପାନୀ ରେକର୍ଡ଼ କରିଛି । ଏହି ରେକର୍ଡ଼ର ଉନ୍ମୋଚନ ଉତ୍ସବ ଶ୍ରୀରାମ ଚନ୍ଦ୍ର ଭବନରେ । ଗଲି । ବହୁ ବିଶିଷ୍ଟ କବି, ଲେଖକ ସାହିତ୍ୟିକ ଉପସ୍ଥିତ । ରେକର୍ଡ଼ ବାଜିଲା । ଲକ୍ଷ୍ମୀଧର ବାବୁଙ୍କ ଆବୃତ୍ତି-ଶୈଳୀ ଖୁବ ଚମତ୍କାର । କବି ଲେଖେ, କିନ୍ତୁ ଭଲଭାବେ ଆବୃତ୍ତି କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ହୋଇ ନଥାଏ । ମାତ୍ର ଲକ୍ଷ୍ମୀଧରବାବୁ ଏକ ବ୍ୟତିକ୍ରମ । ଓଡ଼ିଆ ସଙ୍ଗୀତ ଅନେକ ରେକର୍ଡ଼ିଂ ହୋଇଛି ଓ ହେଉଛି, କିନ୍ତୁ ଓଡ଼ିଆ କବିତା କବି କଣ୍ଠରେ ଆବୃତ୍ତି ହେବା ରେକର୍ଡ଼ ଏହା ପ୍ରଥମ । ଏହି ଅଭିନବ ଉଦ୍ୟମକୁ ସମସ୍ତେ ସେଦିନ ସମର୍ଥନ କରିଥିଲେ ।

ଲକ୍ଷ୍ମୀଧର ବାବୁ କବି । କବିତା ତାଙ୍କର ମାନସିକ ହୃଦୟସ୍ପର୍ଶୀ । ସୌନ୍ଦର୍ଯ୍ୟ ଓ ଲାଳିତ୍ୟରେ ତାହା ଭରପୂର । ଖୋଲା ଝର୍ଣ୍ଣା ତାଙ୍କର

ଏକ ଶ୍ରେଷ୍ଠ କବିତା ଗ୍ରନ୍ଥ । 'ପ୍ରେ' 'ବିରହିଣୀ' କ୍ୱଚିତ ଜ୍ୟୋସ୍ନା, ଇତ୍ୟାଦି କବିତା ଗ୍ରନ୍ଥର କବି ସେ । ରସିକ ପାଠକର ମନ ଓ ଧୈର୍ଯ୍ୟକ ଦୃଷ୍ଟି ନେଇ ପାଠ କଲେ, କବିତାର ରସ ଉପଭୋଗ୍ୟ ହୋଇଥାଏ ।

ଲକ୍ଷ୍ମୀଧର ବାବୁ ଔପନ୍ୟାସିକ । ଜଣେ ସଫଳ ଓ ସାର୍ଥକ କଥାକାର । ଭାଷାରେ ତାଙ୍କର ମାଧୁର୍ଯ୍ୟ ଅଛି, ଚମକ ଅଛି । ପାଠକର ମନଛୁଆଁ ଲେଖା । ସମାଜର ବିଭିନ୍ନ ଚରିତ୍ର ଓ ଚିତ୍ର ତାଙ୍କ ଉପନ୍ୟାସରେ ଫୁଟି ଉଠିଥାଏ । ଉଦ୍‌ଭ୍ରାନ୍ତ, ସନ୍ଧ୍ୟାତାରା, ବର୍ଷାର ଶେଷ, ସୁନା ପ୍ରତିମା, ମୋ ସ୍ୱପ୍ନର ସହର, ଚରିତ୍ର ଘାଟାର ଛବି, ହାତରେ ଦୁର୍ଭାଗ୍ୟ ଦେଶ, ଦେବ ଭୂମିର ଅନୁରାଧା, ଭୁଲିଲ ପଥେ ସଖି ଇତ୍ୟାଦି ପଚିଶ ଖଣ୍ଡ ଉପନ୍ୟାସର ସ୍ରଷ୍ଟା ସେ । କେତେଖଣ୍ଡ ଉପନ୍ୟାସର ବହୁସଂସ୍କରଣ ହେଲାଣି କିନ୍ତୁ ରେକର୍ଡ଼ ସୃଷ୍ଟି କରିଛି 'ଭୁଲିଲ ପଥେ ସଖି'— ଏକୋଇଶଟି ସଂସ୍କରଣ ହେଲାଣି । ସଖିକୁ ଭୁଲି ହେଉ ନାହିଁ, ଖୋଜା ପଡ଼ୁଛି—ତେଣୁ ସଂସ୍କରଣ ପରେ ସଂସ୍କରଣ ଚାଲିଛି । ଏହା ହିଁ ସ୍ରଷ୍ଟାର ଗର୍ବ ଓ ଗୌରବ । ଆର୍ଥିକ ଦିଗରୁ ଖୁବ୍ ଲାଭବାନ୍ ନ ହେଲେ ବି, ଏ ଗୌରବ କମ୍ ମିଳେ ।

ଲକ୍ଷ୍ମୀଧର ବାବୁ ନାଟ୍ୟକାର । ଧର୍ମଦ୍ରୋହୀ, ଲାଲ ଗୁଣ୍ଡୁକ, ଜମିଦାର ଇତ୍ୟାଦି ନାଟକ ତାଙ୍କର ଏକ ଏକ ଅନବଦ୍ୟ ସୃଷ୍ଟି । ରଙ୍ଗମଞ୍ଚରେ ଅଭିନୀତ ହୋଇଥିବା ତାଙ୍କର ନାଟକ ଦର୍ଶକମଣ୍ଡଳୀର ମନରେ ରେଖାପାତ କରିଛି, ଉଚ୍ଚାଙ୍ଗ ନାଟକର ଆସନ ପାଇଛି ।

ଲକ୍ଷ୍ମୀଧର ବାବୁ ଗଳ୍ପ ଲେଖକ ଓ ପ୍ରବନ୍ଧକାର । 'କଙ୍କାଳ' ଓ 'ଗୋଟିଏ ରାତିର ସାଥି' ତାଙ୍କର ଦୁଇଟି ଗଳ୍ପ ସଂକଳନ । କିନ୍ତୁ 'ସିଂହ ଭୂମିର ଗୋପବନ୍ଧୁ'ର ପ୍ରବନ୍ଧ ଲେଖକ ଭାବରେ ଲକ୍ଷ୍ମୀଧର ନାମ୍ନୀକ ନମସ୍ୟ ।

ଲକ୍ଷ୍ମୀଧରବାବୁ ଜଣେ ଝାଣୁଆ ସଂଗଠକ, ଏବଂ ସୌଖିନ ପତ୍ରିକା ସମ୍ପାଦକ । ଜାମସେଦପୁରରେ ଓଡ଼ିଆ ସଂଗଠନ, ରାଉରକେଲାରେ କଳିଙ୍ଗ ଶଳ

ଏକାଡେମୀ, କଟକିରେ 'ଲେଖଣୀ' ଇତ୍ୟାଦି ବହୁ ଅନୁଷ୍ଠାନ ଓ ସଙ୍ଗଠନର ସୂତ୍ରଧର ସେ । ସାହିତ୍ୟ ପତ୍ରିକା 'ନବପତ୍ର' ଓ ସମାଲୋଚନା ପତ୍ରିକା 'ଆଜର ଡ଼ାକ'ରେ ତାଙ୍କ ସଂପାଦନାର ସଫଳ ସ୍ୱାକ୍ଷର ନିହିତ ।

ଏ ସମସ୍ତ ଉପରେ ଲକ୍ଷ୍ମୀଧର ବାବୁ ଜଣେ ଶ୍ରେଷ୍ଠ ଓ କଳାକୃ ଔପନ୍ୟାସିକ । ଜଣେ ପ୍ରତିଷ୍ଠିତ ଓ ପ୍ରଖ୍ୟାତ ସାହିତ୍ୟିକ । ବହୁମୁଖୀ ପ୍ରତିଭା-ସଂପନ୍ନ ଏକ ବ୍ୟକ୍ତିତ୍ୱ । ସେ କେବଳ ବ୍ୟକ୍ତି ନୁହନ୍ତି, ଏକ ଅନୁଷ୍ଠାନ ଏବଂ ଯାହାକ ମୋର ଓ ଅନ୍ୟମାନଙ୍କର ଅତି ପ୍ରିୟ-ପରିଚିତ ।

ତାଙ୍କ ନିଜର ନୁହେଁ, ତାଙ୍କ ଲେଖଣୀର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ସ୍ୱାଗତଯୋଗ୍ୟ, ଅଭିନନ୍ଦନୀୟ ।

ହେ ବରେଣ୍ୟ କବି ନାଟ୍ୟକାର ଔପନ୍ୟାସିକ ସାହିତ୍ୟିକ ! ତୁମକୁ ନମସ୍କାର !

ବାଲକୃଷ୍ଣ ମାର୍ଗ
କଟକ—୧

# ଓଡ଼ିଆ କଥା-ସାହିତ୍ୟରେ ଅସାମାନ୍ୟା ନାୟିକା 'ସଲୀଳା'



ଶ୍ରୀମତୀ ଦୁର୍ଗା ମିଶ୍ର

'ଭୁଲିଗଲ' ?

ସାମାଜିକ ଜୀବନରେ ଏଇ ପଦକ ଲେଖି ବା ପ୍ରଶ୍ନ କରି ଆତ୍ମୀୟସ୍ୱଚାର ଘନିଷ୍ଠତା ସମ୍ପର୍କରେ ଆକ୍ଷେପ କରାଯାଇଥାଏ ସାଧାରଣତଃ । ପୁଣି ଚାରିଟି ଅକ୍ଷରର ଏଇ ଶବ୍ଦଟି ଅବିବାହିତ ତରୁଣ ତରୁଣୀଙ୍କ ବନ୍ଧୁତା କ୍ଷେତ୍ରରେ ଏପରି ଏକ ମାର୍ମିକ ପ୍ରଶ୍ନ, ଯାହାର ସାହିତ୍ୟିକ ମୂଲ୍ୟ ସୃଷ୍ଟିର ଆବହମାନ କାଳରୁ ଏକ ଶାଶ୍ୱତ ଅଭିବ୍ୟକ୍ତି ହିବେ ରହି ଆସିଛି ତମିସ୍ରାଚ୍ଛନ୍ନ ଆକାଶରେ ଉଜ୍ଜ୍ୱଳ ନକ୍ଷତ୍ର ପରି ।

ପ୍ରଖ୍ୟାତ ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କର 'ଭୁଲିଲି ସତେ ସଖି' ଉପନ୍ୟାସର ନାୟକ 'ସାଗର' ତା ମନର ତରୁଣୀକୁ ପଚାରିଥିଲା ଏଇ ପ୍ରଶ୍ନଟି : ସତେ ଭୁଲିଗଲ ?

ପଚାରିଥିଲା ଏପରି ଏକ କରୁଣ ପରିବେଶ ଭିତରେ, ଅଶ୍ରୁ ଛଳ ଛଳ କଣ୍ଠରେ, ଯାହା ଏହି ଉପନ୍ୟାସର ଯେ କୌଣସି ପାଠକକୁ ବ୍ୟଥିତ କରି ତୋଳେ । ମନର ସବୁ ଦୃଢ଼ତା ସତ୍ତ୍ୱେ ନାୟିକା 'ସଲୀଳା'ର ହୃଦୟହୀନତା ପାଇଁ ଯେତିକି ଘୃଣା ଆସେ, ନିଷ୍ଠୁର, ନିଷ୍ଠୁରତା ନାୟକ 'ସାଗର' ପାଇଁ ଆସେ ସେତିକି ଦୁଃଖର ଦାହ ।

ବହିଟିର ୨୧ ତମ ଶୋଭନ ସଂସ୍କରଣ ଦେଖିଲି ମାତ୍ରେ ଏକ ନିଶ୍ୱାସରେ ପଢ଼ିଗଲି ଆମୂଳଚୂଳ । ଶେଷକଥାଶେଷ ଭୁଲିଗଲି । ଏପରିକି, ମୋ ଗୃହ ସ୍ୱାମୀ, କୋଉଠି ଦିନ ପରେ ବାହାରୁ ଫେରି ଆସି, ଉପନ୍ୟାସ ପଢ଼ାରେ ତନ୍ମୟତା ଦେଖି ଏକ ହାସ୍ୟରେ ଆକ୍ଷେପ କରି ବସିଲେ— ଏତେ ଦିନ ପରେ ଘରକୁ ଫେରିଲି, ମୋର ଭଲମନ୍ଦ କଥା ବୁଝିବ କଣ, ବହି ଧରି ବସିଚ ... ରାତି ? ଆଶ୍ଚର୍ଯ୍ୟ ! !

ହଁ ଆଶ୍ଚର୍ଯ୍ୟ ! ' କିନ୍ତୁ କାହିଁକି ବସିଥିଲି ମୌଖିକତାର ଉତ୍ତର ନ ଦେଇ ବହିଟି ବଢ଼େଇ ଦେଲି ତାଙ୍କର ଅଡ଼କୁ ଥରେ ପଢ଼ି ଦେଖିବା ପାଇଁ ।

ଦୁ'ଦିନ ପରେ ବହିଟି ପଢ଼ି ସାରି ସେ ଏ ମନ୍ତବ୍ୟ ଦେଲେ : ଭାବିଥିଲି ତୁମ ଅପେକ୍ଷା ମୋ ପାଇଁ ଏଥିରେ ବେଶୀ ଆକର୍ଷଣର କଥା-ଥିବ । ବହିଟିର ନାଁ ଯେପରି ରୋମାଣ୍ଟିକ, ମନେ ହେଉଥିଲା ଉଦ୍‌ଭ୍ରାନ୍ତ ପାଠକ ପାଇଁ ନଗ୍ନ ପ୍ରେମର ରସାଳାପ ଭରି ରହିଥିବ ଛତେ ଛତେ । ଅଥଚ ୩୫୦ ପୃଷ୍ଠା ବ୍ୟାପୀ ବିରାଟ ଉପନ୍ୟାସର କୌଣସି ଗୋଟିଏ ଯାଗାରେ ବି 'ପ୍ରେମ'ର 'ପ' ଅକ୍ଷରଟିଏ ବି ନାହିଁ ।"

ଯଥାର୍ଥରେ ହେଇଆ ।

ବରଂ ନାୟିକା ମୁହଁରେ ତା'ମନର ଚିନ୍ତନକୁ ଭଲ ପାଇବାର ଭାଷା ସଂପୂର୍ଣ୍ଣ ଅଭିନବ ଧରଣରେ । ଏ ତରୁଣୀ ତା ପ୍ରେମିକର ଶଯ୍ୟାସଙ୍ଗିନୀ ହେବାକୁ ଚାହେଁନା, ଚାହେଁନା ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ବା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଭଳି ରସ କଳ୍ପନାର ନାୟିକା ହେବ । ସେ ଚାହେଁ ତା ମନର ତରୁଣକୁ ଦେବ ଅଗ୍ନିଳ ପ୍ରେରଣା, ଏକ ଦୁରନ୍ତ ବିପ୍ଳବୀ ହେବା ପାଇଁ ।

ବହିଟିର ଛତେ ଛତେ ନାୟକ ନାୟିକାର କଥୋପକଥନ ଭିତରେ ଦେଶାତ୍ମବୋଧର ସ୍ଫୁଲିଙ୍ଗ ଏପରି ଦାଉ ଦାଉ ହୋଇ ଜଳୁଛି, ପଢ଼ିଲେ ଔପନ୍ୟାସିକ ଶ୍ରୀ ନାୟକଙ୍କ ଜାତୀୟତାବାଦୀ ଲେଖନୀ ଉଦ୍ଦେ-ଶ୍ୟରେ ସମ୍ମାନ ନଜଣାଇ ରହି ହୁଏ ନାହିଁ ।

ଏହି ଉପନ୍ୟାସର ପ୍ରଥମ ମୁଦ୍ରଣ ପ୍ରକାଶ ପାଏ ୧୯୩୪ରେ । ୫୦ ବର୍ଷ ଭିତରେ ତାର ୨୧ ଟି ସଂସ୍କରଣ ହୋଇ ସାରିଛି । ଓଡ଼ିଆ ଉପନ୍ୟାସରେ ବୋଧହୁଏ କୌଣସି ବହିର ଏ ପର୍ଯ୍ୟନ୍ତ ଏତେ ଗୁଡ଼ିଏ ସଂସ୍କରଣ ହୋଇ ନାହିଁ । ଏଇଥିରୁ ବହିଟି କେତେର ରସ-ସ୍ନିଗ୍ଧ ତା' ସହଜରେ ଅନୁମାନ କରିହୁଏ ।

କାହାଣୀଟି ଛୋଟ । କିନ୍ତୁ ଲେଖା ଏତେ କାବ୍ୟିକ ଏବଂ ଚରିତ୍ର ଚିତ୍ରଣ ଏତେ ଜୀବନ୍ତ ମନେହୁଏ ଯେପରି ଘଟଣାଟି ଦୁଇଟି ପ୍ରେମାସକ୍ତ ତରୁଣ ତରୁଣୀଙ୍କ ବାସ୍ତବ ଜୀବନର କାହାଣୀ ।

କେବଳ ସେଇ ଦୃଷ୍ଟିରୁ ନୁହେଁ, ଆଜିର ସମାଜରେ ଭଲପାଇବା କ୍ଷେତ୍ରରେ ଯୁବକ ଯୁବତୀଙ୍କ ପାଖରେ ଯେପରି ଖାମଖିଆଲି ଭାବ ଦେଖାଯାଉଛି, ରୋମାଣ୍ଟିକ ଉଚ୍ଛ୍ୱାସ ଭିତରେ ବହୁ ଦୂରକୁ ଆଗେଇ ଯାଇ, ଶେଷରେ ପରସ୍ପର ପ୍ରତି ବିଶ୍ୱାସଘାତକତା କରାଯାଉଛି, ପ୍ରଥମ ଦିନର ପ୍ରତିଶ୍ରୁତିକୁ ଭୁଲିଯାଇ ଅନ୍ୟଯାଗାରେ ବିବାହ କରିବା ଏକ ସାଧାରଣ କଥା ବୋଲି ଦେଖାଯାଉଛି—ସେ ଦୃଷ୍ଟିରୁ ପଚିଶ ବର୍ଷ ତଳେ ଲିଖିତ ଏ ବହିର ନାୟିକାକୁ ଆମ ଆଗରେ ଆଣି ଠିଆ କରାଇବାରେ ଔପ-ନାସିକଙ୍କର ଯେ ଅସାଧାରଣ ଦୂରଦୃଷ୍ଟି ଥିଲା, ସେକଥା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ।

ଓଡ଼ିଆ କଥା ସାହିତ୍ୟରେ ଅସାମାନ୍ୟା ନାୟିକା 'ହଲ୍ଲା'ର ଚରିତ୍ର ଚିତ୍ରଣ ଶ୍ରୀ ନାୟକଙ୍କର ଯେ ଏକ ଅସାଧାରଣ କୃତିତ୍ୱ, ଏଥିରେ ସନ୍ଦେହ ନାହିଁ ।

୧/୯ ସତ୍ରସ୍ ରୋଡ଼
ସାକ୍‌ଚୀ
ଜାମସେଦ୍‌ପୁର

# ଜନପ୍ରିୟ ଔପନ୍ୟାସିକ ଲକ୍ଷ୍ମୀଧର ନାୟକ

ଶୁକଦେବ ସାହୁ

ଆଜି ଓଡ଼ିଶାର ଔପନ୍ୟାସିକ ମଣ୍ଡଳରେ ଶ୍ରୀ ଲକ୍ଷ୍ମୀଧର ନାୟକ ସୁ-ପ୍ରତିଷ୍ଠିତ । ୧୯୩୪ ମସିହାରେ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ସମ୍ପାଦିତ 'ଆନନ୍ଦ ଲହରୀ' ଉପନ୍ୟାସ ମାଳାରେ ଉଦ୍‌ଭ୍ରାନ୍ତ ଓ ଭୁଲିଲି ପରେ ସଖି ଦୁଇଟି ଉପନ୍ୟାସ ପ୍ରକାଶିତ ହୋଇ ତାଙ୍କୁ ପାଠକ ମଣ୍ଡଳରେ ବେଶ୍ ସୁପରିଚିତ କରାଇଥିଲା । 'ଭୁଲିଲି ପରେ ସଖି' ଏକ ନିଃଶ୍ୱାସରେ ପଢ଼ିବା ଭଳି ଏକ ପ୍ରୀତିପ୍ରଦ ମନୋଜ୍ଞ ଉପନ୍ୟାସ । ଏହାର ରଚନା ଶୈଳୀ ପାଠକର ହୃଦୟ ଓ ମନକୁ ସ୍ପର୍ଶ କରେ । ଉପନ୍ୟାସର ପ୍ରତ୍ୟେକ ଚରିତ୍ରକୁ ଲକ୍ଷ୍ମୀଧର ବାବୁ ନିଖୁଣ୍ ଭାବେ ଚିତ୍ରଣ କରି ପାଠକର ମନଛୁଆଁ କରିଛନ୍ତି । ଏହା ତାଙ୍କ ଲେଖନୀ କୃତିତ୍ୱର ବାସ୍ତବ ପରିଚୟ ।

୧୯୪୭ ମସିହାରେ ଆମେ କେତେଜଣ ବନ୍ଧୁ କଲିକତାରେ କର୍ମମୟ ଜୀବନ ଆରମ୍ଭ ଅବକାଶରେ ପ୍ରଥମେ ଲେଖାଲେଖି ଆରମ୍ଭ କରିଥିଲୁ । ସେତେବେଳେ କଲିକତାରେ ମନମୋହନ ପୁସ୍ତକାଳୟ ଓ ଚନ୍ଦ୍ରଶେଖର ପୁସ୍ତକାଳୟ ଓଡ଼ିଆ ପୁସ୍ତକ ପ୍ରକାଶନ ଓ ପ୍ରସାର କ୍ଷେତ୍ରରେ ବେଶ ସୁନାମ ଅର୍ଜନ କରିଥିଲା । 'ଭୁଲିଲି ପରେ ସଖି'ର ପରବର୍ତ୍ତୀ ସଂସ୍କରଣ 'ଚନ୍ଦ୍ର ଶେଖର ପୁସ୍ତକାଳୟ' ଦ୍ୱାରା ଛପା ହୋଇଥିଲା । ପୁସ୍ତକାଳୟର ପ୍ରତିଷ୍ଠାତା ଶ୍ରୀ ଆକୁଳ ମିଶ୍ରଙ୍କ ସହିତ ପରିଚୟ ହେଲା । 'ଆଲୁଅ' ନାମକ ଏକ ମାସିକ ପତ୍ରିକା ତାଙ୍କ ସମ୍ପାଦନାରେ କଲିକତାରୁ ପ୍ରକାଶ ପାଉଥିଲା । ନୂତନ ଲେଖକମାନଙ୍କୁ ପରିଚୟ କରିବାରେ ସେତେବେଳର ପରିସ୍ଥିତିରେ 'ଆଲୁଅ'ର ଅବଦାନ ଯଥେଷ୍ଟ ଥିଲା ।

'ଭୁଲିଲି ପଚେ ସଖି' ପ୍ରଥମେ ପଢ଼ିବାର ସୁଯୋଗ ମୋତେ କଲିକତାରେ ମିଳିଥିଲା । ମୋର ଯୌବନର ସ୍ୱପ୍ନ-ବିଳାସୀ ମନ ଉପରେ ଏହି ଉପନ୍ୟାସ ଯଥେଷ୍ଟ ପ୍ରଭାବ ପକାଇଥିଲା । ଉପନ୍ୟାସକୁ ମୁଁ ବାର-ବାର ପାଠ କରିଛି । ଏହା ଆନନ୍ଦ ଦେବା ସଙ୍ଗେ ସଙ୍ଗେ ହୃଦୟରେ ଛନ୍ଦ-ମଧୁରତା ସୃଷ୍ଟି କରିଛି । ଉପନ୍ୟାସର ସାଗର ଓ ମଲ୍ଲିକାର ଚରିତ୍ର ଆଜି ବି ମନ ଉପରେ ସଜୀବ ହୋଇ ରହିଛି । 'ଭୁଲିଲି ପଚେ ସଖି' ପଢ଼ିବା ପରେ ଲେଖକଙ୍କର ଅନ୍ୟାନ୍ୟ ଉପନ୍ୟାସ ପଢ଼ିବା ପାଇଁ ଉତ୍ସାହ ସୃଷ୍ଟି ହୋଇଛି । ସେତେବେଳେ କଲିକତାରେ ବ୍ରଜବନ୍ଧୁ ନୈଶ ବିଦ୍ୟାଳୟ ଓ ଓଡ଼ିଶା ପ୍ରଗତି ସଂଘ ଦ୍ୱାରା ସ୍ଥାପିତ ପାଠାଗାର, ଦୁଇଟି ପ୍ରବାସୀ ଓଡ଼ିଆ ପାଠକ ମହଲରେ ବେଶ୍ ସୁପରିଚିତ ଥିଲା । ଏହି ପାଠାଗାର ଦୁଇଟି ଆନୁକୂଲ୍ୟରେ ପୁରାତନ ଓ ନବୀନ ଲେଖକମାନଙ୍କର ବହି ପଢ଼ିବାର ସୁଯୋଗ ମିଳୁଥିଲା ।

୧୯୫୦ ମସିହାରେ କଲିକତାରୁ କଟକକୁ ମୋର କର୍ମମୟ ଜୀବନ ପରିବର୍ତ୍ତିତ ହୋଇଗଲା । ଆଜି ୧୯୮୩ ମସିହାର ଏହି ଦୀର୍ଘ ବ୍ୟବଧାନ ଭିତରେ ପ୍ରକାଶନ ସଂସ୍ଥା ମାଧ୍ୟମରେ ରହି ବହୁ କବି ଲେଖକଙ୍କର ସାନିଧ୍ୟ ଲାଭ କରିବାର ସୁଯୋଗ ମିଳିଛି । ବଣୀହାଟରେ ଲକ୍ଷ୍ମୀଧର ବାବୁ 'ଉପନ୍ୟାସ ମହଲ' ପ୍ରତିଷ୍ଠା କରିଥିଲେ । 'ଜନ ସାହିତ୍ୟ'ର ସମ୍ପାଦକ ଶ୍ରୀ ବଂଶୀଧର ଭୂୟାଁ ସେତେବେଳେ ଏହାର ପରିଚାଳନା ଦାୟିତ୍ୱରେ ଥିଲେ । 'ଉପନ୍ୟାସ ମହଲ' ମାଧ୍ୟମରେ ଲକ୍ଷ୍ମୀଧର ବାବୁଙ୍କ ସହିତ ପରିଚୟ ଓ ସାନିଧ୍ୟ ମିଳିଛି । କବି ରାଧାମୋହନ ଗଡ଼ନାୟକ ଲକ୍ଷ୍ମୀଧର ବାବୁଙ୍କ ଘନିଷ୍ଠ ବନ୍ଧୁ । ୧୯୭୧ ମସିହାରେ ରାଧାମୋହନ ଗଡ଼ନାୟକଙ୍କ ଷଷ୍ଟିପୂର୍ତ୍ତି ଉତ୍ସବ ଅବକାଶରେ ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ଅଭିନନ୍ଦନ ଗ୍ରନ୍ଥରେ ଲକ୍ଷ୍ମୀଧର ବାବୁଙ୍କର 'ନମସ୍କାର' ଶୀର୍ଷକ ଏକ କବିତା ପ୍ରକାଶ ପାଇଛି । ଏପରି ଏକ ଛନ୍ଦ-ମଧୁର ସୌନ୍ଦର୍ଯ୍ୟମୟ ଚମତ୍କାର କବିତା ଓଡ଼ିଆ ସାହିତ୍ୟରେ ବିରଳ । ବନ୍ଧୁ ପ୍ରତି ଅନାବିଳ ସ୍ନେହ ମମତାର ଏହା ଉଜ୍ଜ୍ୱଳିତ ପରିପ୍ରକାଶ । ବନ୍ଧୁ ରାଧାମୋହନଙ୍କ ପ୍ରତି ଜଣେ ଦରଦୀ ବନ୍ଧୁର ହୃଦୟର ଦ୍ୱାର ଉନ୍ମୁକ୍ତ ହୋଇ ଯାଇଛି । ଲକ୍ଷ୍ମୀଧର ବାବୁ ତାଙ୍କ କବିତାରେ ଲେଖିଛନ୍ତି—

ମୋହର ପାଖରେ 'ମୋହନ'ର ପରିଚୟ—
କାବ୍ୟ କବିତା ଛନ୍ଦରେ ନୁହେ
ଲୋକ ଦେଖାଣିଆ ମିଳନରେ ନୁହେ
ଲୁହ ଓ ଲହୁରେ ମନର ତଣ୍ଟିରେ
କେତେ ଅନୁଭୂତ ମୟ
ମୋ ପାଖେ ସେ ଏକ ସଂଖ୍ୟ ସଫଳ
ସଚକିତ ବିସ୍ମୟ ।

ଖୋଲଖର୍ଦ୍ଦା, ସେ, ବିରହଣୀ ପ୍ରଭୃତି କବିତା ଚୟନରେ କବି ଲକ୍ଷ୍ମୀଧର ନାୟକଙ୍କର ପ୍ରତିଭା ପରିସ୍ଫୁଟିତ ।

୧୯୫୦ ମସିହାରେ 'ରୂପଶ୍ରୀ' ନାମରେ ଏକ ବ୍ୟବସାୟୀ ଥିଏଟର ଦଳ ଗଠିତ ହୋଇଥିଲା । ଧର୍ମଦ୍ରୋହୀ, ଲଲିତବୁକ ରୂପଶ୍ରୀ ଥିଏଟରଦ୍ୱାରା କଟକରେ ଅଭିନୀତ ହୋଇଥିଲା । ଏହି ନାଟକ ଦୁଇଟି ଦେଖିବାର ସୁଯୋଗ ମିଳିଥିଲା । ସେ ସମୟରେ ଜଣେ ଉଦୀୟମାନ ନାଟ୍ୟକାର ଭାବେ ଲକ୍ଷ୍ମୀଧର ବାବୁ ଓଡ଼ିଶା ରଙ୍ଗମଞ୍ଚର ଉନ୍ନତି ପାଇଁ ବହୁତ ଶ୍ରମ ଓ ସମୟ ବିନିଯୋଗ କରିଛନ୍ତି । ସାମାନ୍ୟ କେତେବର୍ଷ 'ରୂପଶ୍ରୀ' ଥିଏଟରର ସେ ପରିଚାଳନା ଦାୟିତ୍ୱ ମଧ୍ୟ ତୁଲାଇଥିଲେ ।

ଲକ୍ଷ୍ମୀଧର ବାବୁ ସଫଳ ଔପନ୍ୟାସିକ, ପୁଣି ସଫଳ କବି ଓ ନାଟ୍ୟକାର । ତାଙ୍କ କବିତା ଗୁଡ଼ିକ ଶାନ୍ତ-ମଧୁର ଚନ୍ଦ୍ରିକାର ଚଳଚଞ୍ଚଳ ଧାରା ପରି ପ୍ରାଣକୁ ସ୍ପର୍ଶ କରିଯାଏ । ଓଡ଼ିଆ ଭାଷା ସାହିତ୍ୟର ପ୍ରସାର ଓ ପ୍ରଚାର ପାଇଁ ସେ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ଗଢ଼ି ଜାମସେଦପୁରରେ ଗଠନ କାର୍ଯ୍ୟ କରିଛନ୍ତି । ନିରବଚ୍ଛିନ୍ନ ସାହିତ୍ୟ ସାଧନା ତଥା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ଗୌରବ ବୃଦ୍ଧି ପାଇଁ ତାଙ୍କର କର୍ମମୟ ଜୀବନ ସବୁବେଳେ ମୁଖରିତ ହୋଇଛି । ତାଙ୍କର ବିକଶିତ ଜୀବନର ସୌରଭ ଆଜି ଭବିଷ୍ୟତ ବଂଶଧର ମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି । ୧୯୩୪ରୁ ୧୯୮୩—ଅର୍ଦ୍ଧ ଶତ ବର୍ଷ ଧରି ତାଙ୍କ ଲେଖନୀର ବିରାମ ନାହିଁ । ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ପାଇଁ ତାଙ୍କର ପ୍ରାଣ

ଅ.ଜ ତ ଆବେଗରେ ପରିପୂର୍ଣ୍ଣ । ପରିଣତ ବୟସରେ ଆଜି ଲକ୍ଷ୍ମୀଧର ବାବୁ ତାଙ୍କର ପରିପୂର୍ଣ୍ଣ ଜୀବନର ସଫଳ ରୂପାୟନ ଆମ ଆଗରେ ଥୋଇଛନ୍ତି । ଜଣେ ସାହିତ୍ୟିକ ଭାବେ, ଶିଳ୍ପାଞ୍ଚଳର ସଙ୍ଗଠକ ଭାବେ ଓ ଦେଶପ୍ରେମୀ ଭାବେ ସେ ଆମର ଅଗ୍ରଜ ଓ ନମସ୍ୟ । ପ୍ରତିଷ୍ଠା ପୂଜା ପଞ୍ଚଶତ ତାଙ୍କ ଲେଖନୀର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରୁଛନ୍ତି । ଏହା ସେଥିରେ ଅଭିନବ—ଦେଶ୍ୱପର ଏକ ସାର୍ଥକ ଜୀବନ ପ୍ରତି ସମ୍ମାନ, ଶ୍ରଦ୍ଧା ଓ ପ୍ରୀତି ନିବେଦନ ଜଣାଇବା ପାଇଁ ଅପୂର୍ବ ସୁଯୋଗ ସୃଷ୍ଟି କରିଛି ।

ବରେଣ୍ୟ କବି, ଔପନ୍ୟାସିକ ଓ ନାଟ୍ୟକାର ଲକ୍ଷ୍ମୀଧର ବାବୁ ଆହୁରି ବହୁବର୍ଷ ଆମମାନଙ୍କ ଭିତରେ ରହି ସାହିତ୍ୟିକ ଜୀବନର ନୂତନ ମୂଲ୍ୟବୋଧ ଜାଗ୍ରତ କରନ୍ତୁ । ଲେଖନୀର ସୁବର୍ଣ୍ଣ ଜୟନ୍ତୀ ସମାରୋହ ଅବକାଶରେ ଜନପ୍ରିୟ ଔପନ୍ୟାସିକଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ନିବେଦନ ଜଣାଉଛୁ ।

କବିତା ଭବନ
ଯୋବ୍ରା, କଟକ—୩

# ମଣିଷତ୍ୱର ଜୟ-ଜୟକାର



ଶିଖା ଦେବୀ

ବହୁ ଲେଖକ, ପ୍ରାବନ୍ଧିକ ତାଙ୍କ ଉପନ୍ୟାସ, ନାଟକ ଅନୁଭୂତି କଳାର ଆଲୋଚନା କରିଥିବେ । ବହୁ ବନ୍ଧୁ ପ୍ରଶଂସା କରିଥିବେ ବହୁତ ବହୁତ ।

ବିରହିଣୀ କବିତା ଯାହାକୁ ସ୍ୱର୍ଣ୍ଣ ପଦକ ମଣ୍ଡିତ କରିଥିଲା, ସେ କବି ଲକ୍ଷ୍ମୀଧର କାହିଁ ହଜି ଗଲେ ସଉରଟକଲର କୋଳାହଳ ଭିତରେ ।

ମୋର ମନେପଡ଼େ, ଆମ କିଶୋରୀ ବୟସର କଥା । ସେ ଯୁଗରେ ଗୁରୁଜନ ମାନଙ୍କର କଡ଼ା କଟକଣା ଥାଏ, ରୋମାଣ୍ଟିକ ସାହିତ୍ୟ, ବିଶେଷକରି ଉପନ୍ୟାସ ଉପରେ । ସେ ସବୁ ଥାଏ ଆମପାଇଁ ନିଷିଦ୍ଧ ଫଳ । କିନ୍ତୁ ଆମ କିଶୋରୀ ମନକୁ ପାଗଳ କରିଥାଏ ଲକ୍ଷ୍ମୀଧର ନାୟକଙ୍କ ଉପନ୍ୟାସ । ଦଶ ପାଞ୍ଚଜଣ ଦେଉଦାକର କିଣିଆଣୁ ବହି । ତା' ବୁଲି ଆସେ ହାତରୁ ହାତ ଗୋପନ ଭାବରେ । ଆମ ମନକୁ ଉତ୍ତଳା କରୁଥାଏ । ରାତି ଉଜାଗର ରହି ପଢ଼େ । ପଢ଼ା ବହି ଭିତରେ ଥାଏ ସେହି ବହି । କ୍ଲାସରେ ଟିକେ ଛୁଟି ପାଇଲେ ସେଇ ବହି କଥା ପଡ଼େ ।

କାଲିପରି ମନେ ଅଛି, ମୋର ଜଣେ ସାଙ୍ଗ କହୁଥାଏ, ଜାଣିଲୁ — 'ହଜିଲା ଯଦି ସଖୀ' ପଢ଼ୁଛି, ଝର ଝର କାନ୍ଦୁଛି, ମୋର ଶୁଖିଲା ନାହିଁ । ସେଦିନ ବେଳକାଲେ ଲୁହ ରୋକି ପାରୁ ନାହିଁ । ପାଖରେ ବୁଢ଼ୀମା ଥିଲେ । କହିଲେ—ଆଲୋ, ବହି ପଢ଼ୁଛୁ, କେତେ କାନ୍ଦୁଛୁ କିଆଁ ? ଲଜ୍ଜିତ ହୋଇ କହିଲି, ଆଖିରେ ଟିକିଏ ପଡ଼ିଲା । ଏମିତିରି ଆମେ ବହୁ ଯାକ ପଢ଼ୁଥିଲୁ ତାଙ୍କ ଉପନ୍ୟାସ, ଯାହା ଆମ କିଶୋରୀ ମନକୁ ଯୁବତୀ କରି ଗଢ଼ୁଥିଲା ।

ଧର୍ମ ଚଟ୍ଟୀ, ଲଲ୍ ସ୍ୱବୁକ ନାଟକ ରଙ୍ଗମଞ୍ଚରେ ଦେଖିସାରିଲା ପରେ—ମନ ବଳିଥିଲା ଦେଖିବାକୁ କିଏ ସେଇ ଲକ୍ଷ୍ମୀଧର ନାୟକ । ଟିକିଏ ଦେଖନ୍ତି କି ?

ବହୁଦିନ ପରେ ମୋର ଚରମ ବିପତ୍ତି କାଳରେ ଶ୍ରୀ ନାୟକଙ୍କୁ ଚିହ୍ନିଥିଲି । ମୋ ମନରେ ନୁହେଁ, ଆଉ ଜଣଙ୍କ ମନରେ । ଦେଖିଥିଲି, ମୋ ଆଖିରେ ନୁହେଁ, ଆଉ ଜଣଙ୍କ ଆଖିରେ ।

କରୁଣାଧାରା ହୋଇ ମୋ ଊଷର ମରୁପ୍ରାନ୍ତରରେ ଅଜାଡ଼ି ହୋଇ ପଡ଼ିଥିଲେ ସ୍ନେହରେ, ସୌହାର୍ଦ୍ଦ୍ୟରେ । ଶୁଣିଛି, ଏଇଭଳି ଜଳଭରା ମେଘଭଳି ବହୁସ୍ଥାନରେ ପାତ୍ର ଅପାତ୍ରରେ କରୁଣାଧାରା ଅଜାଡ଼ି ଦେଇ ନିଜକୁ ନିଃଶେଷ କରିଛନ୍ତି ସେ ।

ମୋ ଜୀବନରେ ମୁଁ ତାଙ୍କ ଭଳି ଆଉଜଣେ ଦରଦୀ ବନ୍ଧୁ ଦେଖି ନାହିଁ, ଯେ କେବଳ ଦେଇ ଜାଣନ୍ତି । କିଛି ନ ପାଇଲେ ମଧ୍ୟ ଦେଉଥାଆନ୍ତି ହସି ହସି ।

ସମସ୍ତେ ତାଙ୍କ ସାହିତ୍ୟର ଜୟ-ଜୟକାର କରୁଛନ୍ତି । ମୁଁ କରୁଛି ତାଙ୍କ ମଣିଷତ୍ୱର ଜୟ-ଜୟକାର । ଆଉ ଭଗବାନଙ୍କ ପାଦପଦ୍ମରେ ମଥାନତ କରି ମାଗୁଛି—ଶରତ ଆକାଶର ସ୍ୱଚ୍ଛ ମେଘଭଳି ତାଙ୍କ ଜୀବନ ଆକାଶରେ ଭାସି ବୁଲୁଥାଆନ୍ତୁ ବହୁଦିନ ଯାଏ ।

ମୋ' ପରି ଅନେକେ ମୁଗ୍ଧ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଥାଆନ୍ତୁ ।......



କଳ୍ପନା ନଗର,
ଜାମସେଦପୁର

## 'ଆଶାର ଇନ୍ଦ୍ରଧନୁ ଶ୍ରୀ ନାୟକ



ପ୍ରସନ୍ନ କୁମାର ମହାପାତ୍ର

ମୋର ବହୁଦିନର ସ୍ୱପ୍ନ ଏପରି ଏକ ଆକସ୍ମିକ ଓ ଅନାହୂତ ଭାବରେ ଯେ ବାସ୍ତବରେ ପରିଣତ ହୋଇ ଉଠିବ, ଏ କଳ୍ପନା କେବେହେଁ ମୋ ମନକୁ ଆସି ନଥିଲା । କିନ୍ତୁ ଯେତେବେଳେ ତାଙ୍କ ପରିଚୟ ପାଇଲି, ମୋ ହୃଦୟ ଯେ କି ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠିଲା, ସେକଥା ମୁଁ ଭାଷାରେ ବ୍ୟକ୍ତକରି ପାରିବ ନାହିଁ । ମଣିଷ କ'ଣ ତାର ସବୁ ଅନୁଭବକୁ ଭାଷାର ସୂତ୍ରଦେଇ ପ୍ରକାଶ କରିପାରେ ?

ଲକ୍ଷ୍ମୀଧର ବାବୁ ଏକଦା ମୋର ମାନସ-ଆକାଶରେ କେବଳ-ମାତ୍ର ଜ୍ୟୋତିଷ୍କ ରୂପେ ଦୀପ୍ତ ଦୀପ୍ତ ହୋଇ ଜଳୁଥିଲେ । ଅତି ପିଲା ବୟସରୁ, ଅର୍ଥାତ୍ ବାଲ୍ୟ ଓ ଯୌବନର ସନ୍ଧି କ୍ଷଣରୁ ହିଁ ତାଙ୍କ ସହିତ ମୋର କଳ୍ପନାର-ପରିଚୟ । ବୋଧହୁଏ ଯେତେବେଳେ ମୁଁ ସପ୍ତମ ବା ଅଷ୍ଟମ ଶ୍ରେଣୀରେ ପଢ଼ୁଥାଏ । କ୍ଲାସ୍‌ରେ ପଛ ବେଞ୍ଚ୍‌ରେ ବସି ପାଠ୍ୟ ପୁସ୍ତକ ଭିତରେ ତାଙ୍କର 'ଭୁଲିଲି ସତେ ସଖୀ'କୁ ରଖି ପଢୁଥିବା ବେଳେ କେତେଥର ଯେ ଶ୍ରେଣୀ ଶିକ୍ଷକଙ୍କ ଦୃଷ୍ଟିକୁ ଆସି 'Stand up on the bench' ହୋଇଛି ତାର କଳନା ନାହିଁ । ତଥାପି ତାଙ୍କ ଭାଷାର ସ୍ୱାଦ, ଭାବର ମଧୁରତା ଓ ବିଷୟବସ୍ତୁର ମାଦକତା ମୋତେ ସେତେ-ବେଳେ ଏପରି ସମ୍ମୋହିତ କରି ରଖିଥିଲା ଯେ ଶିକ୍ଷକ ତଥା ଗୁରୁଜନ-ମାନଙ୍କ କଟୂମନ୍ତବ୍ୟ ସତ୍ତ୍ୱେ ମୁଁ ସେଥିରୁ ନିଜକୁ ବିଯୁକ୍ତ କରି ପାରୁନଥିଲି । 'ଚିରସହଚରୀ ଶତ', 'ବର୍ଷାର ଶେଷ' ଇତ୍ୟାଦି ତାଙ୍କର କେତେଗୁଡ଼ିଏ ଲେଖା ସେତେବେଳେ ମୋର ପ୍ରାୟ ମୁଖସ୍ଥ ହୋଇ ଯାଇଥିଲା ।

ନଟେଲ ମୂହୂର୍ତ୍ତରେ ବଛଣାରେ ଶୋଇ ଶୋଇ ମୁଁ ଭାବେ ଯାହାର ଗଳ୍ପ, ଭାଷା ମୋ ମନକୁ ସମ୍ପୂର୍ଣ୍ଣ କବଳିତ କରି ରଖିଛି, ସେ ଲେଖକ କିମିତ ହୋଇ ନଥିବେ ! ତାଙ୍କର ରୂପ କେତେ ମଧୁର ହୋଇ ନଥିବ ! ଥରେ ତାଙ୍କ ସହିତ ସାକ୍ଷାତ ପାଇଁ ମନ ବ୍ୟାକୁଳ ହୋଇ ଉଠେ । ହେଲେ ଏତେ ଚଞ୍ଚଳ ଜଣେ ମଣିଷ ସବୁ ସୌନ୍ଦର୍ଯ୍ୟର ଅଧିକାରୀ ହୋଇପାରେ ? ମନରେ ଅପୂର୍ଣ୍ଣତା ନ ଥିଲେ ପିପାସାର ଜ୍ୱାଳା ସେ ବୁଝିବା କିମିତ ?

ବାଣୀ ପାଇ ଯୌବନ ଆସିଲା । ଯୌବନର-ରଙ୍ଗ-ରେଣୁରେ ଧୀରେ ଧୀରେ ଅଳତା ମାଡ଼ିବାକୁ ଆରମ୍ଭ କଲା । ତାଙ୍କର ନାଟକ 'ଧର୍ମଦ୍ରୋହୀ' ଦେଖିଲି, 'ଲାଲଗୋଲାପ' ଦେଖିଲି—ତନ୍ମୟ ହେଲି, ବିଭୋର ହେଲି, ତଥାପି ସ୍ରଷ୍ଟାଙ୍କର ସୌଭାଗ୍ୟ ମିଳିଲାନି ମୋତେ । ଆଶାର ଇନ୍ଦ୍ରଧନୁ ମୋ ଭିତରେ କେତେ ସବୁଦିନ ବାଉ ବାଉ ହୋଇ ଜଳି ଲିଭିଯାଏ ।...

ଆଜି ମୁଁ ପ୍ରୌଢ଼ । ଯୌବନର ଚପଳତା ଆଉ ନାହିଁ—ନାହିଁ ଆଉ ସେ କୈଶୋରର ଉଦ୍ଦାମତା । ତଥାପି କି ଆଶ୍ଚର୍ଯ୍ୟ ! ଏ ବୟସରେ ବି ତାଙ୍କ ସହିତ ମୋର ଯେତେବେଳେ ସାକ୍ଷାତ ହୋଇଗଲା, ମୋ ଭିତରେ ଏତେ ରୋମାଞ୍ଚ ଭରି ଉଠିଲା ଯେ, ମୁଁ ଥରଥର ହୋଇ କେତୋଟି ମୁହୂର୍ତ୍ତପାଇଁ ମୂହ୍ୟମାନ ହୋଇ ଉଠିଲି । କେବଳ ଅନିମେଷ ଦୃଷ୍ଟିରେ ତାଙ୍କର ଭବମୂର୍ତ୍ତିକୁ ବୁଝିବାକୁ ମୁଁ ଚାହୁଁଥାଏ, ଅଗସ୍ତି ଋଷିଙ୍କର ସମୁଦ୍ର ଶୋଷଣ ପରି ଯେପରି ଏକ ନିଃଶ୍ୱାସରେ ଲକ୍ଷ୍ମୀଧର ବାବୁଙ୍କର ଯାବତ ସତ୍ତାକୁ ଶୋଷଣ କରିନେଇ ପାରନ୍ତି... । ମଣିଷ ତାର କାମ୍ୟ ବସ୍ତୁକୁ ଜୀବନ ବ୍ୟାପୀ କେବଳ ପ୍ରତୀକ୍ଷା କରି କରି ଯେବେ ଆକସ୍ମିକ ପ୍ରାପ୍ତିର ସୌଭାଗ୍ୟ ଲାଭ କରେ, ତେବେ ତା ଅନ୍ତରର ଉଦ୍‌ବେଳନ ସେ କେଉଁ ସ୍ତରରେ ପହଞ୍ଚେ ସେକଥା କେବଳ ଅନୁଭବୀ ହିଁ ବୁଝିବ ।

ମ୍ବର ବାବୁଙ୍କସହ ସେ ଆସିଥିଲେ । ମୁରଲିବାବୁ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ତଥା ସମାଲୋଚକ । କେତୋ କାଳ ଭିତରେ ସେ ସାହିତ୍ୟିକ ମହଲରେ ବେଶ୍ ନିଜର ଆସନକୁ ଦୃଢ଼ କରି ପାରିଛନ୍ତି ।

ସେ ମୋର ପୂର୍ବ ପରିଚିତ । କିନ୍ତୁ ଏ ଯେଉଁ ନୂତନ ଭଦ୍ରଲୋକଟି ତାଙ୍କ ସହିତ ଆସିଥିଲେ, ତାଙ୍କୁ ତ କେବେ କେଉଁଠି ଦେଖିଲି ବୋଲି ମନେ ହୁଏନା ?

ମୁରଲି ବାବୁ ପରିଚୟ କରାଇ ଦେଲେ—ଏ ହେଉଛନ୍ତି ଓଡ଼ିଶାର ପ୍ରତିଷ୍ଠିତ କବି, ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ । ତାଙ୍କ ସାହିତ୍ୟ ସାଧନାର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଆମେ ତାଙ୍କୁ ସମ୍ମାନିତ କରିବାପାଇଁ ତାଙ୍କ ଲେଖାର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁ ଯାଉଛୁ । ଆପଣ ତ ତାଙ୍କ ଲେଖା ବୋଧ ହୁଏ ପଢ଼ିଥିବେ ?

ମୁରଲି ବାବୁଙ୍କ ପ୍ରଶ୍ନ ହୁଏତ ଅବାନ୍ତର ହୋଇ ନ ପାରେ, କିନ୍ତୁ କେଜାଣି କାହିଁକି ତାଙ୍କର "ବୋଧହୁଏ ପଢ଼ିଥିବେ" ପ୍ରଶ୍ନରେ ମୋର ସମଗ୍ର ଶରୀର ପ୍ରଚଣ୍ଡ କ୍ରୋଧରେ ଆରକ୍ତ ହୋଇ ଉଠିଲା । ମୁଁ ଯେ ଲକ୍ଷ୍ମୀଧର ବାବୁଙ୍କ ଲେଖାର ଜଣେ ନୀରବ ପୂଜାରୀ, ତାଙ୍କ ପ୍ରତିଭାର ଜଣେ ମୁଗ୍ଧ ସ୍ତାବକ—ଏକଥା ବା ମୁରଲିବାବୁ ବୁଝନ୍ତେ କମିତି ?

ଲକ୍ଷ୍ମୀଧର ବାବୁଙ୍କ ସହିତ ଆଳାପ ହେଲା । ମୋର ଆଶାର ଚନ୍ଦ୍ରଧନୁକୁ ହାତମୁଠାରେ ପାଇ ମୁଁ ବିହ୍ୱଳ ହୋଇ ଉଠିଛି । ସତେ ଅବା ତାଙ୍କ ଭାଷାରୁ ଅମୃତ ଝରି ପଡ଼ୁଛି । କି ସ୍ନେହ, କି ଅନ୍ତରଙ୍ଗତା-ଭରା ତାଙ୍କର ପ୍ରକାଶଭଙ୍ଗୀ । ମଣିଷର ଉପର ଉଠାଇ ଦେବାକୁ ଏପରିକି ତାର ନିଜ ଆଡ଼କୁ ଆକର୍ଷିବାରେ କି ପ୍ରଚଣ୍ଡ ଶକ୍ତି ତାଙ୍କର ! ଏଇଆକୁ ତ କୁହନ୍ତି ସମ୍ମୋହନ । ହେଲେ ସବୁ ସୃଜନଶୀଳ ବ୍ୟକ୍ତିଙ୍କର ସମ୍ମୋହନ ଶକ୍ତି ନଥାଏ । ଲକ୍ଷ୍ମୀଧର ବାବୁ ଏହାର ଏକ ବ୍ୟତିକ୍ରମ ।

ବାକ୍ୟାଳାପ ଭିତରେ ଲକ୍ଷ୍ମୀଧର ବାବୁଙ୍କ ମୁହଁରୁ ତାଙ୍କର ବର୍ତ୍ତମାନର ବୟସ ଶୁଣି ମୁଁ ପ୍ରଥମେ ବିଶ୍ୱାସ କରିପାରିଲି ନାହିଁ । ସତେ କଣ ସେ ପଚାଶ ବର୍ଷରେ ପଦାର୍ପଣ କଲେଣି ?

କି ଶାନ୍ତ, ସୌମ୍ୟ, ହସ ହସ ସେ ରୂପ-ଲାବଣ୍ୟ । ଏବେ ବି ତାଙ୍କ ତନୁରେ ଅତନୁର ଶେଷ ଚରଣ ଚିହ୍ନ ରହିଥିବା ପରି ମନେ-

ହୁଏ । ଅଥଚ ସେ କହନ୍ତି ତାଙ୍କୁ ସତୁରି ବର୍ଷ ବୋଲି । ଏକଥା ମୁଁ ବିଶ୍ବାସ କରିବି ନା ? ଶୁଣିଛି ସ୍ବାମୀ ନିଗମାନନ୍ଦଙ୍କର ସାଧନା ବର୍ଷ ଦିନଗୁଡ଼ିକରେ ସମୟ ତାଙ୍କ ଉପରେ ପ୍ରଭାବ ବିସ୍ତାର କରିପାରି ନ ଥିଲା । ହେଲେ ଲକ୍ଷ୍ମୀଧର ବାବୁ ! ସେ ତ ସାହିତ୍ୟର ସାଧକ । ପ୍ରେମର ସାଧକ । ଦେଶ-ମାତୃକାର ସାଧକ । ସେଥିପାଇଁ ବୋଧହୁଏ ଚଳମାନ ସମୟ ଧାଇଁ ଧାଇଁ ତାଙ୍କ ପାଖରେ କ୍ଳାନ୍ତ, ଶ୍ରାନ୍ତ ହୋଇ ଅଟକି ଯାଇଛି—ଟିକିଏ ବିଶ୍ରାମ ଆଶାରେ । ପ୍ରେମର ସାଧକକୁ ବାର୍ଦ୍ଧକ୍ୟ କେବେ ସ୍ପର୍ଶ କରି ପାରେନା ।

ସେମାନେ ଯିବାପାଇଁ ଉଠିଲେ । ଯିବାବେଳେ ଲକ୍ଷ୍ମୀଧର ବାବୁ କହିଗଲେ—ଆପଣ ମୋ ବିଷୟରେ (ଦୁର୍ଗୁଣ ହେଉ ବା ସୁଗୁଣ ହେଉ) କିଛି ଲେଖନ୍ତୁ ।

ଇସ୍ ; କି ଆନନ୍ଦ ସେତେବେଳେ ମୋ ମନରେ ! ମୁଁ ଲକ୍ଷ୍ମୀଧର ବାବୁଙ୍କ ସମ୍ପର୍କରେ ଲେଖିବି··· ମୋ ଆଶାର ଇନ୍ଦ୍ରଧନୁ ସମ୍ପର୍କରେ ଲେଖିବି···ଯାହାଙ୍କୁ ଥରେ ଦେଖିବାପାଇଁ ଏକପ୍ରକାର ପାଗଳ ହୋଇ ପଡ଼ିଥିଲି, ତାଙ୍କ ସମ୍ପର୍କରେ ଲେଖିବି—ଏହାଠାରୁ ବଳି ସୌଭାଗ୍ୟ ମୋ ପାଇଁ କଣ ବା ଥାଇପାରେ ?

···ସେମାନେ ବିଦାୟ ନେଇ ଚାଲିଲେଣି । ମୁଁ ଏତେ ବିହ୍ବଳ ହୋଇ ଉଠିଥିଲି ଯେ ସଙ୍ଗେ ସଙ୍ଗେ କାଗଜ ଓ କଲମ ଧରି ଲେଖିବା-ପାଇଁ ବସିଗଲି ।

ହେଲେ କଣ ଲେଖିବି ? କେମିତି ଆରମ୍ଭ କରିବି ? ତାଙ୍କ ସମ୍ପର୍କରେ କିଛି ଲେଖିବା ପାଇଁ ମୋର ଭାଷା ଯେ ଯୁଟୁନାହିଁ ! ପିଲାବୟସରୁ ମୋ ଭିତରେ ତାଙ୍କ ପାଇଁ ଏତେ ଶ୍ରଦ୍ଧା ଆଉ ଭକ୍ତି ପୁଞ୍ଜୀଭୂତ ହୋଇ ରହିଛି ଯେ ଏବେ ତାଙ୍କ ବିଷୟରେ କିଛି ଲେଖିଲାବେଳକୁ ମୁଁ ଅଦ୍ବୈତ ଭାବରେ ବୁଡ଼ି ଯାଉଛି । ସେ ଯେ ମୋର ପ୍ରାଣ ! ମୁଁ ଯେ ତାଙ୍କର ଏକ ଅଂଶ ! ତାଙ୍କ ମୋ ଭିତରେ କୌଣସି ପାର୍ଥକ୍ୟ ଥିବାର ମୁଁ ଲକ୍ଷ୍ୟ କରି ପାରୁନ ।

ପୁଣି ମନକୁ ଆସୁଛନ୍ତି ଅଣି ତାଙ୍କ ମୋ ଭିତରେ ଦୈତ ଭାବର ସମ୍ଭାବନା ଉଦ୍ରେକ କରାଇବା ମୁହୂର୍ତ୍ତରେ ମୁଁ ସ୍ପଷ୍ଟ ଦେଖି ପାରୁଛି, ସେ ଉତ୍ତୁଙ୍ଗ ହିମାଳୟ ପରି ମଥା ଟେକି ଆକାଶରେ ମିଶି ଯାଉଛନ୍ତି । ତଳେ ଥାଇ ମୁଁ ବା ତାଙ୍କ ସାଧନାର କଳନା କରିବ କିମିତି ? ତାଙ୍କର ବିରାଟ ବ୍ୟକ୍ତିତ୍ୱକୁ ମୁଁ କଣ ବୁଝିପାରିବ ? ପୃଥିବୀ ହୁଏତ ଆକାଶକୁ ଅନୁଭବ କରି ପାରେ, ତାର ଦିଗନ୍ତପ୍ରସାରୀ ସୌନ୍ଦର୍ଯ୍ୟରେ ବିଭୋର ହୋଇ ଉଠି-ପାରେ, ତାର ନୀଳିମାରେ ନିଜକୁ ହଜାଇ ମଜାଇ ଦେଇପାରେ—ହେଲେ ତାର ସେ ଅନୁଭବକୁ, ବିହ୍ୱଳତାକୁ ବ୍ୟକ୍ତ କରି ପାରେନା । ସେ ଯେ ଅବ୍ୟକ୍ତ, ଅନିର୍ବଚନୀୟ !

ନାଁ, ମୁଁ ପାରିବ ନାହିଁ । ମୋର ଅଂଶ'ର ଇନ୍ଦ୍ରଧନୁକୁ ହାତରେ ପାଇ ମୁଁ ମୁଗ୍ଧ ହେଇପାରେ, ତନ୍ମୟ ହୋଇ ପାରେ, ମୋହିତ ହୋଇପାରେ—ହେଲେ ମୋର ଏତେ ସାଧନାର ସିଦ୍ଧିକୁ କେବେ ସାଧାରଣରେ ବ୍ୟକ୍ତ କରି ପାରିବ ନାହିଁ···ମୋର ଗୋପନୀୟ ସମ୍ପଦକୁ ମୁଁ ଅନ୍ୟ ନିକଟରେ ସମର୍ପଣ କରି ପାରିବ ନାହିଁ ! ସେ ଯେ ମୋର ଏକାନ୍ତ ନିଜସ୍ୱ···ଏକାନ୍ତ ବ୍ୟକ୍ତିଗତ···ଏକାନ୍ତଭାବେ ଆପଣାର !!!

●

ବୈଷ୍ଣବସାହି (ନିଜ ବଜାର)
କଟକ-୧

# ତାଙ୍କ 'କଲମ'
# ଶତବାର୍ଷିକୀ ପାଳନ କରୁ



ଅଧ୍ୟାପକ ଲକ୍ଷ୍ମୀନାରାୟଣ ରାୟସିଂହ

ସାହିତ୍ୟ-ସାଧନାର 'ସୁବର୍ଣ୍ଣ ଜୟନ୍ତୀ' ପାଳିତ ହେବା ଆମ ସାହିତ୍ୟ କ୍ଷେତ୍ରରେ ଅଭିନବ । କାରଣ ଗତ କିଛି ବର୍ଷ ହେଲା ଆମ ରାଜ୍ୟରେ ସାହିତ୍ୟିକମାନେ ସ୍ବର୍ଗାରୋହଣ କରିବା ପରେ ପ୍ରଶଂସା ବା ନିନ୍ଦା କରାଯାଉଥିଲା । ଜୀଇଁଥିଲାବେଳେ ନିନ୍ଦା ଓ ଶତ୍ରୁତା—ମରିଗଲା ପରେ ପୁରସ୍କାର ଓ ପ୍ରଶଂସା ।

ଏଇ ଘଟଣାର ଏକ ବିପୁଳ ବ୍ୟତିକ୍ରମ । ଏଥିପାଇଁ ଆଗ 'ପ୍ରତିଭା ପୂଜା ପରିଷଦ'ର ମୁଖ୍ୟ ବ୍ୟବସ୍ଥାପକ ମୁରାରି ଜେନାଙ୍କୁ ବଧାଇ ଜଣାଉଛି ।

ଆଜି ଲକ୍ଷ୍ମୀଧର ବାବୁଙ୍କ କଥା କିଏ ଲେଖିବ ? ଅତି ସାଧାରଣ ମଣିଷରୁ ତାଙ୍କର ଅସାଧାରଣ ଆଡ଼କୁ ଉତ୍ତରଣ ହୋଇଛି । ନାଟକ/ଉପନ୍ୟାସ ଆଲୋଚନା ବେଳେ ଓଡ଼ିଆ ସାହିତ୍ୟରେ ଆଉ ଲକ୍ଷ୍ମୀଧର ନାୟକଙ୍କୁ ବାଦ୍ ଦେଇ ଆଲୋଚନା କେହି କରୁ ନାହାନ୍ତି । ଏତିକ ଅର୍ଜନ ଲକ୍ଷ୍ମୀଧର ବାବୁ କରିଛନ୍ତି । ନିନ୍ଦା ବା ପ୍ରଶଂସାର ଊର୍ଦ୍ଧ୍ବରେ ସେ ଅଛନ୍ତି ।

ଅମାୟିକ, ଅତି ସାଧାରଣ ଓ ଘରେ ଭେଟିଲେ ଆପଣାର କରି ନେବାର କମିଆ ତାଙ୍କଠାରେ ଅଛି । ଓଡ଼ିଆ ସାହିତ୍ୟର ବହୁଳ ବଗିଚରେ ପ୍ରବହଣଶୀଳ ଧାରାର ଧାରେ ଧାରେ ସେ ଫୁଟିଛନ୍ତି । ଆଗାମୀ ଯୁଗର ସାହିତ୍ୟିକ ମାନଙ୍କ ପାଇଁ ତାଙ୍କ ସାହିତ୍ୟିକ ନିଷ୍ଠା ପଥପ୍ରଦର୍ଶକ ହେବ । ତାଙ୍କ 'କଲମ' ଶତବାର୍ଷିକୀ ପାଳନ କରୁ, ଏଇ ଶ୍ରଦ୍ଧାଞ୍ଜଳି ଦେଇ ଅତି ଆପଣାର ପ୍ରତିଷ୍ଠାଦାନ ଲେଖକ ମହାଶୟଙ୍କୁ ।



ପ୍ରାଣନାଥ ମହାବିଦ୍ୟାଳୟ,
ଖୋର୍ଦ୍ଧା

# 'ପ୍ରତିବାଦ' ଓ ଲକ୍ଷ୍ମୀଧର ନାୟକ



ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

ସାମାଜିକ ପ୍ରତିବାଦ ଓଡ଼ିଆ ସାହିତ୍ୟର ଏକ ଦୁର୍ବଳ ଦିଗ । ସାମାଜିକ ଚେତନାର ଉନ୍ମେଷ ସହିତ ମାନବିକତା ଏବଂ ଅନ୍ୟାନ୍ୟ ଆଧାରିତ ଗୁଣାବଳୀର ପରିପ୍ରକାଶ ସାଧାରଣତଃ ହ୍ରାସ ପାଇଥାଏ । ସଚେତନ ସାହିତ୍ୟିକ ଏହି ଅବମୂଲ୍ୟାୟନ ବିରୁଦ୍ଧରେ ସାଧାରଣତଃ ସ୍ୱର ଉତ୍ତୋଳନ କରିଥାଏ । ଓଡ଼ିଆ ସାହିତ୍ୟରେ ଅର୍ଥନୈତିକ ଜାଗରଣ ଜନିତ ନୈତିକ ଅବକ୍ଷୟ ବିରୁଦ୍ଧରେ ସାହିତ୍ୟିକ ସ୍ୱରରେ ବଳିଷ୍ଠ ପ୍ରତିବାଦ ଲକ୍ଷ୍ମୀଧର ନାୟକଙ୍କ ଉପନ୍ୟାସରେ ଅନେକ ସମୟରେ ଦେଖା ଦେଇଥାଏ, ଯାହା ଅନ୍ୟତ୍ର ପରିଲକ୍ଷିତ ହୁଏନାହିଁ ।

ସ୍ୱାଧୀନତା ପ୍ରାପ୍ତି ପରେ ପରେ ଓଡ଼ିଶାରେ ଅର୍ଥନୈତିକ ଏବଂ ସାମାଜିକ ପ୍ରସାରଣ ଯେତେବେଳେ ସ୍ୱାଭାବିକ ଭାବେ ଦେଖା ଦେଇଥିଲା, ଯେତେବେଳେ ଗୋଟିଏ ବୈପ୍ଳବିକ ସଙ୍କଟ ଲକ୍ଷ୍ୟ କରାଯାଇଥିଲା ଶିକ୍ଷିତ ଯୁବକ ଏବଂ ଜାଗ୍ରତ ବୁଦ୍ଧିଜୀବିମାନଙ୍କ ପାଖରେ । କୃଷି-ଭିତ୍ତିକ ସଭ୍ୟତା ଏବଂ ତଜ୍ଜନିତ ନୈତିକତା ଆକ୍ରମିତ ହୋଇଥିଲା ଶିଳ୍ପ ସଭ୍ୟତାର ମୂଲ୍ୟ-ବୋଧ-ମୁକ୍ତ ପରିବେଶଦ୍ୱାରା । ଏକ ପକ୍ଷରେ ଜାଗରଣର ଆହ୍ୱାନ ଏବଂ ଅନ୍ୟ ପକ୍ଷରେ ସ୍ଥିତିର ସଂରକ୍ଷଣ, ସାମ୍ପ୍ରତିକ ଚେତନାକୁ ବ୍ୟାହତ କରୁ-ଥିଲେ । ବୈଜ୍ଞାନିକ ଚିନ୍ତାଧାରାର ପ୍ରଭାବ, କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ଉପରେ ଯେଉଁ ପ୍ରଭାବ ବିସ୍ତାର କରୁଥିଲା ତାକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ବୁଦ୍ଧିଜୀବିମାନେ ବିଚଳିତ ହୋଇ ପଡ଼ିଥିଲେ ଲୋଭ ଏବଂ ଅର୍ଥାନ୍ୱେଷଣର ଉଗ୍ରତା ଦେଖି । ମାନବିକତାର ମୂଲ୍ୟବୋଧ ଯେତେବେଳେ ସାଧାରଣ ବଂଚିବାର କାରୁଣ୍ୟ ଭିତରେ ବଳି ପଡ଼ୁଥିଲା, ସେତେବେଳେ

ସାହିତ୍ୟିକରେ ଦ୍ୱନ୍ଦ୍ୱ ବଢ଼ି ଯାଉଥିଲା ବହୁତ ବେଶୀ । ତାଛଡ଼ା ଅର୍ଥନୀତି କ୍ଷେତ୍ରରେ ଓଡ଼ିଶାର ସୀମିତ ଭୂମିକା ଚଚଳିତ କରିବା ସଙ୍ଗେ ସଙ୍ଗେ ଅର୍ଥଲିପ୍ସାର ଅନିବାର୍ଯ୍ୟ ସ୍ଖଳନ ଅନେକଙ୍କୁ ଉଦାସୀନ ମଧ୍ୟ କରିଥିଲା ଜୀବନ ପ୍ରତି । କିନ୍ତୁ ଯେଉଁ ଲେଖକ ସାମ୍ପ୍ରତ୍ୟିକ ଏବଂ ନୈତିକ ଦ୍ୱନ୍ଦ୍ୱରୁ ଉତ୍ତରଣ ଖୋଜିଥିଲେ, ସେମାନେ କ୍ରମବର୍ଦ୍ଧିଷ୍ଣୁ ସମାଜର ସୁରକ୍ଷା ଲାଗି ପ୍ରତିବାଦ କରିଥିଲେ । ଲକ୍ଷ୍ମୀଧର ନାୟକଙ୍କ ଉପନ୍ୟାସରେ ଏହି ନୈତିକ ପ୍ରତିବାଦର ସ୍ୱରହିଁ ଏକ ବଳିଷ୍ଠ ଲକ୍ଷଣ ।

ଲକ୍ଷ୍ମୀଧର ନାୟକଙ୍କ ଉପନ୍ୟାସରେ ସାଧାରଣତଃ ଦୁଇଟି ଆପାତ ବିରୋଧୀ ସ୍ୱର ଲକ୍ଷ୍ୟ କରାଯାଇଥାଏ । ପ୍ରଥମେ ପ୍ରେମ ଏବଂ ନୈତିକ ଆନୁଗତ୍ୟର ସଂଘାତ ଗୋଟିଏ ସଭ୍ୟତାର ଜାଗରଣ ପର୍ବରେ ଅନୁଦାର ସତ୍ୟମାନଙ୍କୁ ଅସ୍ୱୀକାର କରେ ଏବଂ ଦ୍ୱିତୀୟରେ ମାନବବାଦର ଜୟ ଯାହା ଭିତରେ ବ୍ୟକ୍ତିର ସାମାଜିକ ଅସଫଳତା ଏବଂ କାରୁଣ୍ୟ, ନୀତିବୋଧର ସାମାଜିକ ଆଙ୍ଗିକକୁ ବିଚ୍ଛିନ୍ନ କରେ । ତେଣୁ ଶ୍ରୀ ନାୟକଙ୍କ ନାୟକ ନାୟିକା ଏକ ପକ୍ଷରେ ପୁରୁଣା ସଭ୍ୟତାରୁ ଉତ୍ତରଣ ଖୋଜନ୍ତି ଏବଂ ଅପର ପକ୍ଷରେ ପୁରୁଣା ସଭ୍ୟତାର ମୂଲ୍ୟବୋଧ ଗୁଡ଼ିକୁ ସମ୍ପ୍ରତିକ ଶିଳ୍ପ ଜାଗରଣ ମଧ୍ୟରେ ଖୋଜିବସନ୍ତି ।

କିନ୍ତୁ ଏକଥା ସ୍ୱୀକାର୍ଯ୍ୟ ଯେ ଶ୍ରୀ ନାୟକଙ୍କ ନାୟକ ନାୟିକା ପ୍ରଥମ କରି ଏକ ରୁଚିପୂର୍ଣ୍ଣ ଅଭ୍ୟନ୍ତରୀଣ ଜୀବନର ପରିଚୟ ଦିଅନ୍ତି, 'ସର୍ବହରା', 'ହାରେ ଦୁର୍ଭଗା ଦେଶ', 'ମୋ ସ୍ୱପ୍ନର ସହର' ପ୍ରଭୃତି ବିଶିଷ୍ଟ ଉପନ୍ୟାସରେ । ଚରିତ୍ରମାନେ ଏକ ତୀବ୍ର ଅଭିମାନର ଆବେଗରେ ଲକ୍ଷ୍ୟ ସନ୍ଧାନରେ ବ୍ୟସ୍ତ ରହନ୍ତି । ଏକଥା ସ୍ପଷ୍ଟ କରିଦେବା ଉଚିତ ଯେ, ଲକ୍ଷ୍ମୀଧରଙ୍କ ନାୟକ ତା'ର କଳ୍ପିତ ପୃଥିବୀର ସମ୍ପୂର୍ଣ୍ଣ ରୂପରେଖ ପ୍ରାପ୍ତ ପାଇ ନଥାଏ । 'ହାରେ ଦୁର୍ଭଗା ଦେଶ'ର ଉପେନ "ସର୍ବହରା"ର ବିଜୟ ଏବଂ "ମୋ ସ୍ୱପ୍ନର ସହର"ର ସୁବ୍ରତ ଯେଉଁ ମନସ୍ତତ୍ତ୍ୱର ପ୍ରସାରିତ ହୁଅନ୍ତି, ଦୃଷ୍ଟି କେନ୍ଦ୍ର ଚାଳିତରେ ଲକ୍ଷ୍ୟ ଅନ୍ୱେଷଣ ବେଶି ମାତ୍ରାରେ ସତ୍ୟ । ବାମପନ୍ଥୀ ଚିନ୍ତାଧାରା ଦ୍ୱାରା ତଥାକଥିତ ଭାବେ ପ୍ରଭାବିତ ହୋଇଥିଲେ ମଧ୍ୟ ଏହି ନାୟକମାନେ ସମ୍ପୂର୍ଣ୍ଣ ଭାବେ ବିଦେଶା-

ଗତ ଅଙ୍ଗୀକାରବଦ୍ଧ ନାୟକ ନୁହନ୍ତି । ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ସେମାନଙ୍କର ବଳିଷ୍ଠ ପ୍ରତିବାଦ, ରୋମାଞ୍ଚ ଓ ଆବେଗ ଭିତରେ ଚିତ କରେ । ଶିକ୍ଷିତ ଯୁବକ ଉପେନ୍ ନିଜ ପରିବାର ଭିତରେ ଅର୍ଥ ଲୋଳଧାର ତୁଚ୍ଛ ବିସ୍ତାର ଦେଖି ବିଦ୍ରୋହ କରେ । କିନ୍ତୁ ବିଦ୍ରୋହ ପରିଣତ ହୁଏ ଏକ ଅଭିମାନୀର ଦାମ୍ଭିକତାରେ । ସମାଜ ଗଠନ କିମ୍ବା ଆତ୍ମ-ନିୟନ୍ତ୍ରଣ ଅପେକ୍ଷା ମାନବବାଦର ଅବତାରଣା ଉପେନ୍ ପାଖରେ ବେଶୀ । ଗ୍ରାମ୍ୟ ଜୀବନର ଘୃଣ୍ୟ ପରିବେଶ, ସେଠିକାର କୁସଂସ୍କାର ଓ ଅନ୍ଧ ବିଶ୍ୱାସ ବିରୁଦ୍ଧରେ ଲଢ଼େ ଉପେନ କିନ୍ତୁ ବିଫଳ ହୁଏ । ସହରର ଅର୍ଥ ଲିପ୍‌ସା, ଜାତିଭେଦ ଏବଂ ଅନ୍ୟାନ୍ୟ ଅବକ୍ଷୟୀ ଚେତନା ବିରୁଦ୍ଧରେ ହାତମୁଠା ଟାଣ କରେ ଉପେନ । କିନ୍ତୁ ମାର୍କ୍ସ୍ ଏବଂ ଗାନ୍ଧୀ ମଧ୍ୟରେ ଚିନ୍ତାଗତ ଭାରସାମ୍ୟ ଆଣି ନ ପାରି କେବଳ ପ୍ରତିବାଦର ଶବ୍ଦ ତରଂଗ ସୃଷ୍ଟି କରେ ନାୟକ । ଉପେନର ଭଲ ପାଇବା ମଧ୍ୟ ସେହି ସ୍ତରର । ଏକ ପକ୍ଷରେ ପ୍ରେମର ରୋମାଞ୍ଚ ବିଳାସ ଏବଂ ଅପର ପକ୍ଷରେ ଭଲ-ପାଇବାର କର୍ମବିମୁଖୀ ଆତ୍ମମୁଖ୍ୟ ବ୍ୟକ୍ତ କରେ ଉପେନର ଆତ୍ମା । ସାମାଜିକ ଦୁର୍ଗତିରେ ବିଗଳିତ ଆତ୍ମା ଉପେନ, ନା ଭାଙ୍ଗି ପାରେ ଅପସଂ-ସ୍କୃତିର ନିଗୂଢ଼ ବନ୍ଧନ, ନା ଗଢ଼ି ପାରେ ପ୍ରେମ ଏବଂ ପାରମାର୍ଥିକ ନୈତିକତାର ସାମ୍ରାଜ୍ୟ । ଶେଷରେ ନିଜର ପରିକଳ୍ପକୁ ଅନ୍ଧାରର ଜୟମାଳା ମନେକରି ବୁଲିଯାଏ ଉପେନ୍ । ଶ୍ରୀନାୟକଙ୍କ ଶ୍ରେଷ୍ଠ ଉପନ୍ୟାସ 'ମୋ ସ୍ୱପ୍ନର ସହର'ରେ ମଧ୍ୟ ଏହି ଆତ୍ମଗୋପନର କାରୁଣ୍ୟ ଦେଖାଯାଏ । ଓଡ଼ିଆ ଉପନ୍ୟାସର ନାୟକ ମାନଙ୍କ ମଧ୍ୟରେ ସୁବ୍ରତ ଏକ ଭିନ୍ନ ବ୍ୟଥିତ ଆତ୍ମା । ଶିଳ୍ପ ସଭ୍ୟତାର କୋଣାର୍କ ଗଢ଼ି ଉଠୁଛି ବଣ ପାହାଡ଼ ଘେର ଧୂସର ପଲ୍ଲୀରେ । ନାୟକ ସ୍ୱପ୍ନ ଦେଖୁଛି ଯେ ଗୋଟିଏ ନୂତନ ସଭ୍ୟ-ତାର ମୂଳଦୁଆ ଉପରେ ହୁଏତ ଏକ ଅବହେଳିତ ଜାତି ଦୈବବାଣୀ ଶୁଣାଇବ ନିଜ ଉତ୍ତରଣର । ଅନେକ ସ୍ୱପ୍ନ ନେଇ, ଅନେକ ଆଶା ଓ ସମ୍ଭାବନାର ଆଲୋକ ନେଇ ସୁବ୍ରତ ଆସିଛି ଶିଳ୍ପ ସଭ୍ୟତାର କୋଣାର୍କ ଗଢ଼ା ପ୍ରକ୍ରିୟାକୁ ସ୍ୱାଗତ ଜଣାଇ । ନସଠ କିନ୍ତୁ ସେ ଲକ୍ଷ୍ୟ କରୁଛି ଯେ ଗୋଟାଏ ଜାତି କେମିତି ନିଜକୁ ବଳି ଦେଉଛି ସୀମିତ ବ୍ୟକ୍ତିଗତ ସ୍ୱାର୍ଥ ସାଧନ ଲାଗି, କେମିତି ପୌରୁଷର ଜଳାଞ୍ଜଳି ଦେଉଛି । ଏବଂ

ସ୍ୱପ୍ନକୁ ପଠେଇ ଦେଉଛନ୍ତି ଶେଷ ମେଘର ନକ୍ସଲ ଶିକାର ପରି । ସୁବ୍ରତ ଲକ୍ଷ୍ୟ କରୁଛନ୍ତି ସେ ବଞ୍ଚିବାର ସଂଘର୍ଷରେ ଧମାକ କ୍ଷତ-ବିକ୍ଷତ । ଜୀବନର ପ୍ରତ୍ୟୁତ୍ତର ନାହିଁ । ବଞ୍ଚିବା ଭିତରେ, ମଦ ମାଂସର ସାମୟିକ ଆନନ୍ଦ ଭିତରେ, ହଜି ଯାଇଛି ପାରମ୍ପରିକ ମୂଲ୍ୟବୋଧ, ପ୍ରଗତିର ଏକାଗ୍ର ଚେତନା ଏବଂ ପୌରୁଷର ଔଜ୍ଜ୍ୱଲ୍ୟ । ସୁବ୍ରତ ଛାଡ଼ି ଆସିଛି ତାର ସ୍ୱପ୍ନର ସହରକୁ । ସୁବ୍ରତ ପଳାଇ ଆସିଛି ନିଜ ପରଜନ୍ମର ଅଗ୍ନିରେ ଦରପୋଡ଼ା ହୋଇ ।

ଲକ୍ଷ୍ମୀଧରଙ୍କ ଉପନ୍ୟାସରେ ଯଦିଓ ପ୍ରତିବାଦର ସାଫଲ୍ୟ ନାହିଁ, ଏକ ବଳିଷ୍ଠ ଜୀବନବୋଧ ଏବଂ ସଦ୍‌ଆଚାର ମୂଲ୍ୟବୋଧ ପ୍ରତି ଆନୁଗତ୍ୟ ଅତି ସଫଳ ଭାବେ ଲକ୍ଷ୍ୟ କରାଯାଏ । ଦାରିଦ୍ର୍ୟ, ସାମାଜିକ ଆଙ୍କିକରେ ନୈତିକତାର ବିଜୟ ଟୀକା ନୁହେଁ—ଏହି ସତ୍ୟକୁ ବାରମ୍ବାର ଉପସ୍ଥାପିତ କରିଛନ୍ତି ଲକ୍ଷ୍ମୀଧର ନାୟକ । ସେହିପରି ପ୍ରାଚୁର୍ଯ୍ୟ ବଂଚିବାର ଏକମାତ୍ର ଲକ୍ଷ୍ୟ ନୁହେଁ, ଏକଥା ମଧ୍ୟ ସ୍ୱୀକାର କରିଛନ୍ତି ନାୟକ । ଅବଶ୍ୟ ତା' ପ୍ରତିବାଦର ଆବେଗ ଅନେକ ସମୟରେ ଜର୍ଜରିତ ହୋଇଛି ବିଫଳତାରେ । କିନ୍ତୁ ସେ ପ୍ରମାଣ କରିଛି ଯେ ଏ ବଞ୍ଚିବା ଜୀବନ ନୁହେଁ । ଶ୍ରୀ ନାୟକଙ୍କ "ରକ୍ତହିଁର ଭୋର" ଉପନ୍ୟାସରେ ପ୍ରତିବାଦ ଏବଂ ତାର ବୈପ୍ଳବିକ ସାଫଲ୍ୟ ଅନେକ ମାତ୍ରାରେ ପ୍ରକାଶିତ ହୋଇଥିଲେହେଁ ଆତ୍ମମୁଖ୍ୟ ସମଷ୍ଟି ଭାବେ ସ୍ପଷ୍ଟ ନୁହେଁ । ତଥାପି ଏହି ଉପନ୍ୟାସ ଶ୍ରୀ ନାୟକଙ୍କର ଏକ ବ୍ୟକ୍ତିଗତ ସାଫଲ୍ୟ । ନାୟକର ଦ୍ୱନ୍ଦ୍ୱମୁକ୍ତ ଆହ୍ୱାନ ଅପିନାହିଁ ବୋଲି ମୋର ମନେହୁଏ; କିନ୍ତୁ ସୁବ୍ରତ ପରି ନାୟକ ବର୍ତ୍ତମାନ ଏକ ବହ୍ନି ଦୃଷ୍ଟି ପାତରେ ଦଗ୍ଧ । ଗର୍ଜିବାର ଲକ୍ଷ୍ୟ ତାର ଆଉ ନାହିଁ । ଅସହାୟ ଭାବେ ସେ ଖାଲି ଦେଖୁଛି ଦୂରରୁ—ଅପସଂସ୍କୃତିର କୋଳାହଳ ।

ଶ୍ରୀ ନାୟକଙ୍କର ପ୍ରତିବାଦ କେବଳ ବାମପନ୍ଥୀ ଚିନ୍ତାଧାରା ଭିତରେ ସୀମିତ ନୁହେଁ । ଏହି ପ୍ରତିବାଦ ଅଧିଭୌତିକ ମଧ୍ୟ । ଗୋଟିଏ ସଂସ୍କୃତିର ନୈତିକ ସଙ୍କଟ ବେଳେ ଶ୍ରୀ ନାୟକ ଯେଉଁ ପ୍ରାଣପ୍ରାଚୁର୍ଯ୍ୟ ଓ ଜୀବନବୋଧର ପରିଚୟ ଦେଇଛନ୍ତି ତାହା ଓଡ଼ିଆ ଉପନ୍ୟାସକୁ ଯେ ଶ୍ରୀମନ୍ତ କରିଛି, ଏଥିରେ ସନ୍ଦେହ ନାହିଁ ।

ହେଡମାଷ୍ଟର—କାଉନସିଲ ଅଫ୍ ହାଇଅର ସେକେଣ୍ଡାରୀ ଏଜୁକେଶନ
ବିବେକାନନ୍ଦ ମାର୍ଗ, ଭୁବନେଶ୍ୱର

# ଏକ ପ୍ରଚଣ୍ଡ ପ୍ରତିଭା

ଯତୀନ୍ଦ୍ର କୁମାର ଦାସ

୧୯୪୯ ମସିହାର କଥା...

ସେତେବେଳକୁ ମୁଁ ରେଭେନ୍ସା କଲେଜର ଦ୍ୱିତୀୟ-ବାର୍ଷିକ ଛାତ୍ର । ଗ୍ରୀଷ୍ମ ଛୁଟିରେ ମୋର ଘର କାଣପୁରରେ ନିର୍ଜନରେ ବସି ଲେଖା ଲେଖି କରିବା ପାଇଁ ବେଶ ସୁବିଧା ହୁଏ । ସେଇବର୍ଷ ଗ୍ରୀଷ୍ମ ଛୁଟିରେ ବସି ବସି ଜନରବ ଉପନ୍ୟାସଟି ଲେଖି ପକାଇଲି ।

ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ ସେତେବେଳକୁ ଜାମସେଦପୁରର ୨୭ ଓ [illegible]ରୁ ସ୍ଫୂର୍ତ୍ତି ନାମକ ଏକ ଉପନ୍ୟାସ ସିରିଜ ପ୍ରକାଶ କରୁଥାଆନ୍ତି । 'ଜନରବ'ଟି ତାଙ୍କ ନିକଟକୁ ପଠାଇ ଦେଲି । ସେହି ସିରିଜରେ ଜନରବଟି ବାହାରି ଗଲା ।

ସେତେବେଳକୁ ଶ୍ରୀଯୁକ୍ତ ନାୟକଙ୍କ ସଙ୍ଗେ ମୋର ପରିଚୟ ନଥାଏ । ହେଲେ ତାଙ୍କ ଲିଖିତ ଉପନ୍ୟାସଗୁଡ଼ିକ ମୋତେ ପଢ଼ିବାପାଇଁ ଖୁବ୍ ଭଲ ଲାଗୁଥାଏ । ସେତେବେଳକୁ ତାଙ୍କର 'ଝୁଲିଲ ସତେ ସଖୀ', 'ଚରିତ୍ରହୀନାର ଶଠି', 'ଉଦ୍‌ଭ୍ରାନ୍ତ', 'ବର୍ଷାର ଶେଷ', 'ସର୍ବହର', 'ଅସିବ କେବେ ଗ୍ରୀଷ୍ମ', 'ଧାରେ ଦୁର୍ଗା ଦେଶ' ପ୍ରଭୃତି ପୁସ୍ତକ ପ୍ରକାଶ ପାଇ ସାରିଥାଏ । ସତ କହିବାକୁ ଗଲେ ସେ ହେଉଛନ୍ତି ମୋ ଲେଖକ ଜୀବନର ପଥ ପ୍ରଦର୍ଶକ । ତାଙ୍କ 'ଧାରେ ଦୁର୍ଗା ଦେଶ'ର ଦେଶାତ୍ମବୋଧ, 'ଉଦ୍‌ଭ୍ରାନ୍ତ' ଓ 'ଝୁଲିଲ ସତେ ସଖୀ'ର ରୋମାଣ୍ଟିସିଜମ୍ ମୋତେ ଖୁବ ପ୍ରଭାବିତ କରିଥିଲା । ଏମିତି ପ୍ରଚଣ୍ଡ ପ୍ରତିଭା-ସମ୍ପନ୍ନ ଶକ୍ତିଶାଳୀ ଲେଖକ ଓଡ଼ିଶାରେ ଖୁବ କମ ଦେଖା ଯାଆନ୍ତି । ତାଙ୍କର ଭାବ, ଭାଷା, ଶୈଳୀ ଓ ବିଷୟବସ୍ତୁର ନୂତନତ୍ୱ ତାଙ୍କ ଲେଖା ପ୍ରତି ଅନେକଙ୍କୁ ଆକର୍ଷିତ କରିବାର ପ୍ରଧାନ କାରଣ ।

ପରବର୍ତ୍ତୀ କାଳରେ 'ରକ୍ତସ୍ୱର ହେର' ପଢ଼ି ମୁଁ ଚମତ୍କୃତ ହୋଇ ଯାଇଥିଲି । ଥିଲା ଓ ନଥିଲାବାଲାଙ୍କ ମଧ୍ୟରେ ଆଦର୍ଶଗତ ସଂଘର୍ଷ ଅତି ତୀକ୍ଷ୍ଣ ଭାବରେ ସେଥିରେ ବର୍ଣ୍ଣିତ ହୋଇଅଛି । ପୁଣି ଆଶ୍ଚର୍ଯ୍ୟର ବିଷୟ, ଏହା ଯେ ଏବେ ମଧ୍ୟ ଲକ୍ଷ୍ମୀଧର ବାବୁଙ୍କର ପାଠକଙ୍କୁ ଉପାଇନେବା ଟେକ୍ନିକ୍ ଏବେ ଟିକିଏ ବି ମଳିନ ହୋଇ ନାହିଁ । ଲକ୍ଷ୍ମୀଧରବାବୁ କେବଳ ଯେ ଜଣେ ସଫଳ ଔପନ୍ୟାସିକ ତାହା ନୁହେଁ, ସେ ଜଣେ ସଫଳ ଗାଳ୍ପିକ, ନାଟ୍ୟକାର ଓ କବି ମଧ୍ୟ । ତାଙ୍କ 'ଲାଲ ଝୁଲୁକ' 'ଜମିଦାର' 'ପ୍ରହ୍ଲଦ ନାଟକ ସେତେବେଳେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୀତ ହୋଇ ଚହଳ ସୃଷ୍ଟି କରିଥାଏ । ସେଦିନର ଅନେକ ପ୍ରତିଷ୍ଠିତ ଲେଖକ ଆଜ କାଳର କରାଳ ଗ୍ରାସରେ ମ୍ଳାନ ହୋଇ ଯାଇଛନ୍ତି । କିନ୍ତୁ ଶ୍ରୀନାୟକଙ୍କପରି ବଳିଷ୍ଠ ଲେଖକ ଚିରଦିନ ସେମିତି ଅମ୍ଳାନ ହୋଇ ରହିବେ । ମହାକାଳ ତାଙ୍କୁ ସ୍ପର୍ଶ କରି ପାରିବ ନାହିଁ ।



ସମ୍ପାଦକ, 'ମଳୟ'
କଟକ—୯



# କଥାକୃତି ମୋ ସ୍ୱପ୍ନର ସହର ଓ କଥାକାର ଲକ୍ଷ୍ମୀଧର



**ଅଧ୍ୟାପକ ନବକିଶୋର ପୃଷ୍ଟି**

କଥାକାର ଲକ୍ଷ୍ମୀଧର ନାୟକ ଉତ୍କଳ ଗୌରବ ମଧୁସୂଦନ ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ ଉଗ୍ର ଜାତୀୟତାବାଦୀ ଚିନ୍ତା ଓ ଚେତନାର ଜଣେ ସଫଳ ରୂପକାର । ଉତ୍କଳର ଏହି ଦୁଇ ବରେଣ୍ୟ ବରପୁତ୍ରଙ୍କ ଆଦର୍ଶ ଓ ବାଣୀକୁ ସାରସ୍ୱତ ରୂପ ଦେବାରେ ସେ ଯେପରି ଆନ୍ତରିକ ଉଦ୍ୟମ କରିଛନ୍ତି, ଓଡ଼ିଆ ସାହିତ୍ୟରେ ତାର ତୁଳନା ନାହିଁ । ପଣ୍ଡିତ ଗୋଦାବରୀଶଙ୍କ ପରି କବିତା, ନାଟକ, ଉପନ୍ୟାସ ଓ ପ୍ରବନ୍ଧ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାବରେ ଲେଖନୀ ଚାଳନା କରି ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଓ ଶିଳ୍ପ ନଗରୀ ରାଉରକେଲାର ଶହ ଶହ ନିର୍ଯ୍ୟାତିତ ଓଡ଼ିଆ ପ୍ରାଣରେ ସ୍ୱାଭିମାନ ଓ ଆତ୍ମଗୌରବ ପ୍ରତିଷ୍ଠା ପାଇଁ ସ୍ୱାଭିମାନୀ ନାୟକ ତିନି ଦଶକରୁ ଊର୍ଦ୍ଧ୍ୱ କାଳ କେବଳ ଉଦ୍ୟମ କରି ନାହାନ୍ତି, ସମଗ୍ର ଓଡ଼ିଆ ଜାତିର ପ୍ରାଣରେ ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କରିବା ପାଇଁ ଦେଇଛନ୍ତି ଦୃପ୍ତ ଆହ୍ୱାନ । ସତ୍ୟବାଦୀ ସାହିତ୍ୟାଦର୍ଶର ସେ ଜଣେ ଏକନିଷ୍ଠ ପୂଜାରୀ ।

ଜାତୀୟ ଆନ୍ଦୋଳନର କର୍ଣ୍ଣଧାର ଉତ୍କଳମଣି ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଯୁବକ ଲକ୍ଷ୍ମୀଧର ୧୯୫୪ ମସିହାରେ ଜାମସେଦପୁରଠାରେ "ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ" ପ୍ରତିଷ୍ଠା କରି ବିଚ୍ଛିନ୍ନାଞ୍ଚଳ ସିଂହଭୂମିରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ସଂରକ୍ଷଣ ଓ ଜାଗରଣ ପାଇଁ ସାହିତ୍ୟ ପତ୍ରିକା 'ବିଚ୍ଛିନ୍ନା' ଓ 'ଦାଥ-ଉପନ୍ୟାସ ସିରିଜ୍' ପ୍ରକାଶ କରିଥିଲେ । ଦୁଇ ଦଶକରୁ ଅଧିକ କାଳ

ଜାମସେଦପୁରରେ ଅବସ୍ଥାନ କରି 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ତରଫରୁ ବିଭିନ୍ନ ସମୟରେ ଉତ୍କଳର ବହୁ ସାହିତ୍ୟିକ ଓ ଜନନାୟକଙ୍କୁ ସମ୍ବର୍ଦ୍ଧନା କରିବାର ଦାୟିତ୍ୱ ନେଇ ସେ ବହିର୍ଭାଗଞ୍ଚଳର ଓଡ଼ିଆପ୍ରାଣରେ ସ୍ୱାଭିମାନ ଜାଗ୍ରତ କରିପାରିଥିଲେ । ଜର୍ମାନ ସରକାରଙ୍କ ସାହାଯ୍ୟ ସହଯୋଗକୁ ସାପେକ୍ଷ କରି ୧୯୫୪ ମସିହାରେ ଭାରତ ସରକାରଙ୍କ ଉଦ୍ୟମରେ ଓଡ଼ିଶାର ରାଉରକେଲାରେ ଇସ୍ପାତ କାରଖାନା ପ୍ରତିଷ୍ଠିତ ହୁଏ । କେନ୍ଦ୍ର ସରକାରଙ୍କ କର୍ମଚାରୀ ନିଯୁକ୍ତି ନୀତି ଅନୁଯାୟୀ ଭାରତର ବିଭିନ୍ନ ପ୍ରଦେଶର ବୈଷୟିକ ଶିକ୍ଷାପ୍ରାପ୍ତ ଦ୍ରାବିଡ଼ ବ୍ୟକ୍ତିମାନେ ଏଠାରେ ନିଯୁକ୍ତି ପାଆନ୍ତି । ଏହି ଅବସରରେ ସର୍ବଭାରତୀୟ କ୍ଷେତ୍ରରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ମର୍ଯ୍ୟାଦା ପ୍ରତିଷ୍ଠା ଏବଂ ସ୍ଥାନୀୟ ଓଡ଼ିଆ ମାନଙ୍କ ମନରେ ସ୍ୱାଭିମାନ ଜାଗ୍ରତ ପାଇଁ ଜାମସେଦପୁର ପରିବର୍ତ୍ତେ ରାଉରକେଲାକୁ ଉପଯୁକ୍ତ କର୍ମଭୂମି ବୋଲି ବାଛିନେଲେ ଜାଣିଶୁଣି ଲେଖକ ଶ୍ରୀଯୁକ୍ତ ନାୟକ । ଏଠାରେ ଏକ ଦଶକରୁ ଅଧିକ କାଳ ନାମକୁ ମାତ୍ର ପ୍ରେସ ବ୍ୟବସାୟ କରି ସାତଜଣ ଯୁବସାହିତ୍ୟିକଙ୍କୁ ନେଇ ପ୍ରତିଷ୍ଠା କଲେ ରାଉରକେଲା କଲଚରାଲ ଏକାଡେମୀ । ଏହି ସାଂସ୍କୃତିକ ଅନୁଷ୍ଠାନର ସେ ଥିଲେ ପ୍ରଥମ ସଭାପତି ଏବଂ ତାଙ୍କର ସଂପାଦକତ୍ୱରେ ପ୍ରକାଶ ପାଇଥିଲା ଅନୁଷ୍ଠାନର ମୁଖପତ୍ର 'ନବଯୁଗ' । ଏଠାରେ ସେ ଓଡ଼ିଆ ସାପ୍ତାହିକ 'ଆଜର ଡାକ' ଓ ଇଂରାଜୀ ସାପ୍ତାହିକ 'ରାଉରକେଲା ପୋଷ୍ଟ' ମଧ୍ୟ ପ୍ରକାଶ କରିଥିଲେ । ଏହି ଅନୁଷ୍ଠାନ ଓ ପତ୍ରିକା ମାନଙ୍କ ମାଧ୍ୟମରେ ସେ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ପ୍ରଚାର ଓ ପ୍ରସାର ଦିଗରେ ବିଶେଷ ଉଦ୍ୟମ କରିଥିଲେ । ତିନି ଦଶକରୁ ଅଧିକ କାଳ ଜାମସେଦପୁର ଓ ରାଉରକେଲାରେ ପ୍ରେସ ବ୍ୟବସାୟ ଉପଲକ୍ଷେ ଅବସ୍ଥାନ, ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଗଠନ ଓ ପତ୍ର ପତ୍ରିକା ପ୍ରକାଶନ ପ୍ରଭୃତି ପ୍ରତି ଦୃଷ୍ଟି ନଦେଲେ କଳାକାର ଲକ୍ଷ୍ମୀଧରଙ୍କ ଧୃଷ୍ଟତାମୟ ଜୀବନର ସ୍ୱରୂପ ସଂପର୍କରେ ଧାରଣା କରାହେବ ନାହିଁ । ପ୍ରେସ ବ୍ୟବସାୟ ଥିଲା ତାଙ୍କର ଜୀବିକା । ସାହିତ୍ୟ ସୃଷ୍ଟି ଥିଲା ତାଙ୍କର ଜୀବନ ।

'ମୋ ସ୍ୱପ୍ନର ସହର' ଇସ୍ପାତ ନଗରୀ ରାଉରକେଲାର ସାମାଜିକ, ରାଜନୈତିକ, ବୈଷୟିକ ଓ ସାଂସ୍କୃତିକ ପୃଷ୍ଠଭୂମି ଉପରେ ରଚିତ ସର୍ବ ପ୍ରଥମ ଓଡ଼ିଆ ଉପନ୍ୟାସ । ଏହି ଉପନ୍ୟାସରେ ୧୯୫୪ ମସିହାରେ ଶିଳ୍ପ ନଗରୀ ରାଉରକେଲାର ପ୍ରତିଷ୍ଠା ପରଠାରୁ ୧୯୬୭ ମସିହାର ନିର୍ବାଚନ ପର୍ଯ୍ୟନ୍ତ ସହରର ସାମାଜିକ, ରାଜନୈତିକ ଓ ବୈଷୟିକ ବିବର୍ତ୍ତନର ରୂପ କିଛିଟା ବାସ୍ତବ ଅନୁଭୂତି ଓ କିଛିଟା କଳ୍ପନା ଆଶ୍ରୟରେ ପ୍ରକାଶ କରିଛନ୍ତି କଥାକାର ନାୟକ । ଅବଶ୍ୟ କଥାକାର ନାୟକ ପୁସ୍ତକର 'ସୂଚନା'ରେ ଘୋଷଣା କରିଛନ୍ତି ଯେ "ଏ ଉପନ୍ୟାସର ଘଟଣା ପ୍ରବାହ ସହିତ ସମ୍ପୃକ୍ତ ପ୍ରତ୍ୟେକଟି ଚରିତ୍ର ସମ୍ପୂର୍ଣ୍ଣ କାଳ୍ପନିକ । କେହି ଯେପରି ତା' ଭିତରେ ନିଜ ଜୀବନର ଛାୟା ନ ଦେଖନ୍ତି ।" ମାତ୍ର କଥାକୃତିର ନାୟକ ସୁବ୍ରତ ପଟ୍ଟନାୟକ ଯେ କଥାକାର ନାୟକଙ୍କ ଆତ୍ମପ୍ରକ୍ଷେପ ଏହା ସମାଲୋଚକର ଆଖି ଏଡ଼ାଇ ପାରିବ ନାହିଁ । 'ମୋ ସ୍ୱପ୍ନର ସହର' ଉପନ୍ୟାସର ନାୟକ ସୁବ୍ରତ ଚରିତ୍ର, ସାଥି ଉପନ୍ୟାସ ସିରିଜର ପ୍ରଥମ ଅର୍ଘ୍ୟ, ୧୯୪୯ରେ ପ୍ରକାଶିତ 'ସେ ମରିନାହିଁ' ଉପନ୍ୟାସର ପ୍ରଶାନ୍ତ ଚରିତ୍ର ଏବଂ 'ହା'ରେ ଦୁର୍ଭାଗା ଦେଶ' ଉପନ୍ୟାସର ଉପେନ୍ଦ୍ର ଚରିତ୍ରର କ୍ରମ ବିବର୍ତ୍ତିତ ରୂପ ମାତ୍ର । ଉତ୍କଳ ସମ୍ମିଳନୀର ଆଦର୍ଶ ହିଁ 'ସେ ମରିନାହିଁ' ଉପନ୍ୟାସର ମୂଳ ପ୍ରେରଣା । ଜର୍ମାନ ସରକାରଙ୍କ ସହଯୋଗରେ, କ୍ରୁପ୍ କମ୍ପାନି ସହାୟତାରେ କେନ୍ଦ୍ର ସରକାରଙ୍କ ଦ୍ୱାରା ରାଉରକେଲାରେ ପ୍ରତିଷ୍ଠିତ ଇସ୍ପାତ ନଗରୀକୁ କେନ୍ଦ୍ର କରି ଓଡ଼ିଶାବାସୀଙ୍କ ସୁଖ ସମୃଦ୍ଧି ଓ ଅର୍ଥନୈତିକ ବିପ୍ଳବର ସ୍ୱର୍ଣ୍ଣ ଯୁଗର ଯେଉଁ ସ୍ୱପ୍ନ ଦେଖିଥିଲେ ନାୟକ ସୁବ୍ରତ, ତାହା ନାନା କାରଣରୁ ବିଭ୍ରମିତ ହୋଇଛି । କଥାକାର ଲକ୍ଷ୍ମୀ-ଧର 'ମୋ ସ୍ୱପ୍ନର ସହର' ଉପନ୍ୟାସରେ ଶିଳ୍ପ ନଗରୀ ରାଉରକେଲାର ସେହି ବିଭ୍ରମିତ ରୂପକୁ ସାରସ୍ୱତ ରୂପ ଦେଇଛନ୍ତି ମାତ୍ର ।

ଉପନ୍ୟାସ ଆରମ୍ଭ ହୋଇଛି ନାୟକ ସୁବ୍ରତ ପଟ୍ଟନାୟକଙ୍କ ପ୍ରେସ୍ ସ୍ଥାପନ ପାଇଁ ଜାମସେଦପୁରରୁ ଆସି ରାଉରକେଲା ଜଙ୍କସନ ପ୍ଲାଟଫର୍ମରେ ପଦାର୍ପଣ କରିବାରେ ଏବଂ ଶେଷ ହୋଇଛି ପ୍ରେସ୍ ଗୃହ ଦାହ ପରେ ଅସୀମ୍ ଆତ୍ମଦହନରେ । ବିହାର, ବଙ୍ଗ ଓ ମଧ୍ୟପ୍ରଦେଶ

ସ୍ୱଚ୍ଛ ପ୍ରତିଯୋଗିତା କରି ଓଡ଼ିଶାର ପ୍ରକୃତ (ପ୍ରାକୃତିକ ସମ୍ପଦ) ସ୍ଥପତ୍ କମ୍ପାନୀର ବିଶେଷଜ୍ଞମାନଙ୍କୁ ଆକୃଷ୍ଟ କରିଥିଲା ସ୍ୱଦେଶ ସୀମାନ୍ତରେ । ଏଠାରେ ପାହାଡ଼ ଖାଲି ନିର୍ଜୀବ ପ୍ରସ୍ତରର ସ୍ତୂପ ନୁହେଁ, ମୁଦ୍ରାର ପୁଞ୍ଜିଭୂତ ସ୍ତୂପ । ତେଣୁ ଜଣେ ପ୍ରୌଢ଼ ଜିଓଲଜିଷ୍ଟ ଆନନ୍ଦରେ ଆତ୍ମହରା ହୋଇ ଚିତ୍କାର କରିଉଠିଥିଲେ "ସ୍ୱାଃ, ଲୁହାର ପାହାଡ଼ ନୁହେଁ, ଏ ସୁନାର ସାମ୍ରାଜ୍ୟ । କି ଭାଗ୍ୟବାନ ଏ ଦେଶର ଲୋକମାନେ ।" ସୁବ୍ରତକୁ ଏ ବସ୍ତୁସ୍ଥିତି ଅନୁଭୂତ କରିଥିଲା । ତେଣୁ ଶିଳ୍ପ ନଗରୀ ରାଉରକେଲାରେ ପାଦ ଦେଇ ଦେଇ ସୁବ୍ରତ ମନେ ମନେ ଭାବିଲା, ତେତିକୋଟି ଓଡ଼ିଆ ହୁଏତ ଆଶାବାଦୀ ହୋଇଉଠିଛନ୍ତି । ଆଜି ରାଉରକେଲା ଲୁହା କାରଖାନା ବସୁଛି—ଜାତିର ଦୁଃଖ ଯିବ ଏଥର । ଏଠି ଧନକେ ଅର୍ଥନୈତିକ ବିପ୍ଳବ ଆରମ୍ଭ ହେବ ଓଡ଼ିଆ ଜୀବନରେ । ସାହିତ୍ୟ, କଳା, କବିତା ନେଇ ଓଡ଼ିଆ କେବଳ ସ୍ୱପ୍ନ ଦେଖିଆସିଛି ଆଜିଯାଏ ଅତୀତ ଶତାବ୍ଦୀର । ଏଣିକି କାର୍ଖାନାର କର୍ମପୀଠ ହେବ ତା' ଜୀବନର ସଂଗ୍ରାମ ଭୂମି । ମାତ୍ର ଉପନ୍ୟାସର ଶେଷ ପରିଚ୍ଛେଦରେ ସୁବ୍ରତ ନିଜକୁ ଏକାନ୍ତ ଅସହାୟ ଓ ନିଃସଙ୍ଗ ମନେ କରିଛି । ନାୟକ ସୁବ୍ରତର ଏହିର ଆଶାବାଦରୁ ଏକାନ୍ତ ଅସହାୟତା ଓ ନିଃସଙ୍ଗତା ବୋଧ ପର୍ଯ୍ୟନ୍ତ ମାନସିକ ଅବସ୍ଥାର ଅନ୍ତରାଳରେ ଘଟିଥିବା ଘଟଣାର କଥାରୂପ 'ମୋ ସ୍ୱପ୍ନର ସହର' ।

ଆହତ ସୁବ୍ରତର ମାନସିକ ପ୍ରତିକ୍ରିୟା କଥାକାର ନାୟକ ଅତି ମର୍ମସ୍ପର୍ଶୀ ଭାଷାରେ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି—"ଭାବିଥିଲା ସୁବ୍ରତ : ତା ଜୀବନ ଏଇ ସହରରେ ଏକ ଉଜ୍ଜ୍ୱଳ ସାର୍ଥକତା ଭିତରେ ପ୍ରସାରିତ ହେବ । ସାଂସ୍କୃତିକ ଚେତନାର ବିଶ୍ୱମୈତ୍ରୀ ଭାବରେ ଅନୁପ୍ରାଣିତ ହେବ ସେ । ଝାଙ୍କର ପାହାଡ଼ ଜଙ୍ଗଲରୁ ଠେଲି ଉଠିବ ଶିଳ୍ପ ସଭ୍ୟତାର ଏପରି ଏକ ମହାନଗରୀ, ଯାହାର ବାଂସ୍ତମୂଳରେ କର୍ମ କଞ୍ଜାଳ ଭିତରେ ସେ ଦେଖିବ ଅପରନ୍ତ ସୁଖ ସମୃଦ୍ଧିର ଫେନାୟିତ ପ୍ରାଣତରଙ୍ଗ । ଯେଉଁପାଇଁ ଏ ସହର ନିର୍ମାଣରେ ପ୍ରଥମ ପ୍ରହରରେ ଦୃଷ୍ଟି ନିହିତ ସ୍ଥିତି ଇଟ ଖଣ୍ଡରେ ସେ ଦେଖିଥିଲା ନବ ଶିଳ୍ପାୟନର ସ୍ୱପ୍ନ । କୋଣାର୍କ କଳା ଶୈଳୀର ସ୍ୱପ୍ନ ଗୋଟିଏ ଐତିହାସିକ ଜାତିର ଉତ୍ତରଣର ସ୍ୱପ୍ନ ।

କରୁ କ'ଣ ହେବ ?'' ଟେଲିପ୍ଲେ ଚରେ ଗଢ଼ିଥିବା ଘଟଣାରେ ଉତ୍ପୀଡ଼ିତ ସୁବ୍ରତ ଯେତେବେଳେ ଅର୍ଦ୍ଧଦଗ୍ଧ ପ୍ରେସ୍ ଘରେ ତନ୍ଦ୍ରାଚ୍ଛନ୍ନ ଅବସ୍ଥାରେ ରହିଛି ସେତେବେଳେ ତିନୋଟି ଗୁପ୍ତାମୂର୍ତ୍ତିର ଆବିର୍ଭାବ ଘଟାଇ କଥାକାର ଲକ୍ଷ୍ମୀଧର, ନାୟକ ସୁବ୍ରତର ଅନ୍ତିମ ପରିଣତିର ସାଙ୍କେତିକ ଚିତ୍ର ପ୍ରଦାନ କରିଛନ୍ତି । କଥାକାରଙ୍କ କଳ୍ପିତ ଗୁପ୍ତ ମୂର୍ତ୍ତିମାନେ ହେଲେ ଭ୍ରଷ୍ଟାଚାର, ଦୁର୍ନୀତି ଓ ଦୁଃଶାସନ । ଦୁଃଶାସନର ଆବିର୍ଭାବରେ ବିସ୍ମିତ ସୁବ୍ରତ ପ୍ରଶ୍ନ କରିଛି—''ତୁମେ କେମିତି ଏ ଦୁହିଁଙ୍କ ସାଙ୍ଗରେ ? ଏମାନଙ୍କୁ ଜବତ କରିବା ଶାସନ ଦଣ୍ଡ ପରା ତୁମ ହାତରେ ? ଏକ ସାଙ୍ଗରେ ମିଳିମିଶି ଆସିଚ ଯେ ? ସଳସୂତର ଦୋସ୍ତି ?'' ଏହି ପ୍ରଶ୍ନପରେ ନାଟକୀୟ ସଳାପ ଟମ୍ଭକଟ ପରିଣତିର ଚିତ୍ର କଥାକାରଙ୍କ ସୃଷ୍ଟିରେ ଯେପରି ପ୍ରକାଶ ପାଇଛି ତାହା ନିମ୍ନମତେ ପ୍ରଦାନ କରାଗଲା । ଯଥା—

—ଚୁପ୍ କର । ଗର୍ଜି ଉଠିଲେ ତିନି ଗୁପ୍ତା ମୂର୍ତ୍ତି ।

—କାହିଁକି ଚୁପ୍ କରିବ ?

—କ'ଣ କରୁଛୁ ତୁ ଏ ସହରରେ ?

—ସଂଘର୍ଷ

—କ'ଣ ପାଇଁ ସଂଘର୍ଷ ?

—ବଞ୍ଚିବା ପାଇଁ ।

—ବଞ୍ଚିବାପାଇଁ ଯେ ସଂଗ୍ରାମ କରେ, ସେ କଣ ସ୍ୱପ୍ନ ଦେଖେ ?

—କାହିଁକି ନୁହେଁ ? ସ୍ୱପ୍ନ ତ ମଣିଷର ସହଜାତ ।

—କିନ୍ତୁ ସେ ସ୍ୱପ୍ନ ଯେଉଁଠି ବ୍ୟକ୍ତିକୈନ୍ଦ୍ରିକ ନ ହୋଇ, ଜଣେ ଜାତୀୟତାବାଦୀର ସ୍ୱପ୍ନ-ସାଧନା ହୁଏ···ଜାଣ ! ସାହାକୁ ଦେଶଦ୍ରୋହୀ' ଭାବରେ ଅଭିଯୁକ୍ତ ହୋଇ······

—ଦେଶଦ୍ରୋହୀ ? ସୁବ୍ରତ ବେପରୁଆ ଗଳାରେ ପ୍ରଶ୍ନ କଲା ।

—ହଁ ଦେଶଦ୍ରୋହୀ । ଆଉ ଜାଣ ଶାସ୍ତି କ'ଣ ?

—ଶାସ୍ତି ?

—ଅଳବତ୍ ।

—କ'ଣ ସେ ଶାସ୍ତି ?

—ନବାସନ ।

—ଯିବ ନ ଯାଏ···” ଏହାପରେ ଗୁପ୍ତାମୂର୍ତ୍ତିମାନେ ସୁବ୍ରତକୁ ଶୂନ୍ୟେ ଶୂନ୍ୟେ ଟେକି ନେଇ ଅତି ନିର୍ମମଭାବରେ ଭୂଇଁ ଉପରେ କଚାଡ଼ି ଦେଲେ । ତାର ହାତ ଗୋଡ଼ ଭାଙ୍ଗି ଚୂନା ହୋଇଗଲା । 'ଆତଙ୍କରେ ଚିତ୍କାର କରି ଉଠିଲା ସୁବ୍ରତ—ଏ କ'ଣ ? କେଉଁଠି ଆଣି ଫିଙ୍ଗି ଦେଲ ମତେ ? ସେଇ ସହର କାହିଁ ? ବୁକୁଫଟା ଆର୍ତ୍ତନାଦ । ଅନ୍ଧକାର ଭିତରେ ଏକ ଭୟଙ୍କର ପ୍ରତିଧ୍ୱନି, କାହିଁ ସେଇ ସହର ? ମୋ "ସ୍ୱପ୍ନର ସହର ?

ପରିଣତିରେ ସଙ୍କେତ ମାଧ୍ୟମରେ ଯେଉଁ ଚିତ୍ର ଦିଆଯାଇଛି ତାହାହିଁ ବୋଧହୁଏ ପ୍ରତ୍ୟେକ ସ୍ୱାଧୀନଚେତା, ସ୍ୱଦେଶପ୍ରେମୀର ଭାଗ୍ୟ-ଲିପି । ଅନ୍ତିମ ପରିଚ୍ଛେଦର ଏ ଚିତ୍ର ଯେତିକି ନାଟକୀୟ, ସେତିକି କରୁଣ; ଯେତିକି ମର୍ମସ୍ପର୍ଶୀ ସେତିକି ଆମୋଦଦାୟକ । ଉପନ୍ୟାସର ଗଠନ ଶିଳ୍ପ ଦୃଷ୍ଟିରୁ 'ମୋ ସ୍ୱପ୍ନର ସହର' ଉପନ୍ୟାସରେ ଯାହାକିଛି ତ୍ରୁଟି ବିଚ୍ୟୁତି ସମାଲୋଚକର ସନ୍ଧାନୀ ଆଖିରେ ପଡ଼େ, ଉପନ୍ୟାସର ମର୍ମସ୍ପର୍ଶୀ ନାଟକୀୟ ପରିଣତିର ଚିତ୍ର ଭିତରେ ସେ ସବୁ ଉଭେଇ ଯାଏ ଏବଂ ଉପନ୍ୟାସରେ ପ୍ରଚାରଧର୍ମିତାର ସମସ୍ତ ବିଲକ୍ଷଣର ଊର୍ଦ୍ଧ୍ୱରେ ଆନନ୍ଦ-ମୟ ପ୍ରବୃତ୍ତି ଅବ୍ୟାହତ ରହେ ।

ଉପନ୍ୟାସର ପରିଚ୍ଛେଦ ପରି ବିଭିନ୍ନ ଚରିତ୍ର ଚିତ୍ରଣରେ ଲେଖକଙ୍କର ଅସାଧାରଣ ଦକ୍ଷତା ଲକ୍ଷ୍ୟ କରାଯାଏ । କଥାକାର ନାୟକ ପରିଣତ ବୟସରେ ଏ ଉପନ୍ୟାସ ରଚନାରେ ହାତ ଦେଇଛନ୍ତି । ତେଣୁ ସମଗ୍ର ଜୀବନର ବିପୁଳ ଅଭିଜ୍ଞତା, ବିଶେଷତଃ ଏକ-ଦଶକରୁ ଅଧିକ କାଳ ଶିଳ୍ପ ନଗରୀ ରାଉରକେଲା ଅବସ୍ଥାନର ତିକ୍ତ-ମଧୁର ଅନୁଭୂତିର ନିବିଡ଼ ସ୍ପର୍ଶ ପାଇ ତାଙ୍କ ସୃଷ୍ଟ ଚରିତ୍ର ଗୁଡ଼ିକ ଜୀବନ୍ତ, ବାସ୍ତବ ଓ ସ୍ୱାଭାବିକ ହୋଇ ପାରିଛନ୍ତି । 'ମୋ ସ୍ୱପ୍ନର ସହର' ଶିଳ୍ପ ନଗରୀ ରାଉରକେଲାର ସାମାଜିକ, ରାଜନୈତିକ, ବୈଷୟିକ ତଥା ସାଂସ୍କୃତିକ ପରିବେଶରୁ ଆହୃତ ବିବିଧ ଚରିତ୍ର ସମ୍ବଳିତ ଏକ ବୃହତ୍ ଚିତ୍ରଶାଳା । ଇସ୍ପାତ ନଗରୀର ବିଭିନ୍ନ ସମସ୍ୟା ଓ ଘଟଣାକୁ ନେଇ ଏମାନେ ଗତିଶୀଳ ।

ଏମାନଙ୍କ ଭିତରେ ଅଛନ୍ତି ଓଡ଼ିଆ ବିଦ୍ୱେଷୀ ବଙ୍ଗାଳି ପ୍ରେମୀ ଷ୍ଟିଲ୍ ପ୍ଲାଣ୍ଟର ସର୍ବମୟ କର୍ତ୍ତା ଆଇ. ସି. ଏସ୍ ଅଫିସର ମିଷ୍ଟର ମଜୁମଦାର, ମ୍ୟାନେଜିଙ୍ଗ୍ ଡାଇରେକ୍ଟର ମି. ଜଗତ, ଚିଫ୍ ଇଞ୍ଜିନିୟର ମିଷ୍ଟର ଗୌରବଲ୍ ମାଲହୋତ୍ରା, ଉଚ୍ଚ ପଦସ୍ଥ ପ୍ରଶାସକ ମିଷ୍ଟର ଘୋଷ ମିତ୍ତାର, ଲ୍ୟାଣ୍ଡ ରିକ୍ଲାମେସନ୍ ଅଫିସର ଦୁର୍ନୀତିଗ୍ରସ୍ତ-କପିଳ ବେହେରା, ଓଡ଼ିଆ ବିଦ୍ୱେଷୀ, ଓଡ଼ିଆ ଗୁଇନ୍ଦା ଇନସ୍‌ପେକ୍ଟର ଅମ୍ବ୍ରିଶେଙ୍କର ମହାପାତ୍ର, ପୋଷ୍ଟମାଷ୍ଟର ସମୀର ବେହୁରା, ଉତ୍ତର ପ୍ରଦେଶାଗତ ଢର୍ମ୍ମଠ ମିଃ. ଜଗମୋହନ, ଥାନା ଅଫିସର ମିଃ. ହୁଣ୍ଡ୍ରିବାବୁ, ଜର୍ମାନ ଇଞ୍ଜିନିୟର ମିଃ. ଟାଉବେ, ହଟ୍ ଷ୍ଟ୍ରିପ୍ ମିଲ୍ କନଷ୍ଟ୍ରକସନ୍ ଏକ୍‌ସପର୍ଟ ଜର୍ମାନ ଯୁବକ ହୁଜ୍‌ମ୍ୟାନ୍, ଷ୍ଟିଲ୍ ପ୍ଲାଣ୍ଟର ଜେନେରାଲ କର୍ମଚାରୀ ମିସ୍ ହେଲେନା ହାରକେ, ଜର୍ମାନ ସାମ୍ବାଦିକା ମିସ୍ ଜେସ୍‌ମିନ୍ ବ୍ଲାଟାର, ପର୍‌ଚେଜ୍ ଅଫିସର ବ୍ୟାଚେଲର ରମଣୀ ବଲ୍ଲଭ ପଟ୍ଟନାୟକ, ରମଣୀ ପଟ୍ଟନାୟକଙ୍କ ଲେଡି ଫ୍ରେଣ୍ଡ ମିସ୍ ମାଳମା ମିଶ୍ର ୪ସ୍ୱୈରିଣୀ ବିଲଟା ସାମୁଏଲ୍, ସ୍ଥାନୀୟ ନେତା ଉତ୍କଳ ଦୁର୍ଗେଶ୍ୱର ମହାନ୍ତି, ମିଃ. ମହାନ୍ତିଙ୍କ ସହଯୋଗୀ ଭ୍ରମର ଜେନା, ସ୍ଥାନୀୟ ଦଲାଲ ପୂର୍ଣ୍ଣାନନ୍ଦ, 'ହୃପିନ୍‌ଲବାର'ର ମାଲିକ, କଣ୍ଟ୍ରାକ୍ଟର, ବଂଶୀଭୂଷଣ ପ୍ରହରାଜ ଦାସ, ଦାସଙ୍କ ସହଯୋଗୀ କୁଚଣ୍ଡୀ ଚୈତନ୍ୟ ଚୌଧୁରୀ, ମିଃ ଦାସଙ୍କ ହାତ ବାରସୀ ସ୍ଥାନୀୟ ଓଡ଼ିଆ ଗୁଣ୍ଡା ଆକୁଳ ପ୍ରଧାନ, ଆଦିବାସୀ ଯୁବକ ଠାକୁର ଓରମ, ଓରମ୍‌ର ସ୍ୱେଚ୍ଛାସ୍ୱୈରିଣୀ ଭଉଣୀ ଫୁଲମନ, ଗୁରୁଦ୍ୱାରର ସେକ୍ରେଟାରୀ କରବଲ ସିଂହ, ସାଉଥ ଇଣ୍ଡିଆନ୍ ହୋଟେଲର ମାଲିକ ବମୁଲ୍ ନାଇଡୁ, ସ୍ଥାନୀୟ ଚର୍ଚ୍ଚର ପାଦ୍ରୀ ସାହେବ, ମୁସଲମାନ ଜଫୁର ମିଆଁ, ବରହମ୍‌ପୁର ଆଗତ ମଦ୍ୟପ ପ୍ରୌଢ଼ ଚିନ୍ତୁଚନ୍ତ ପାଣିଗ୍ରାହୀ, ଚଳୁର ସମ୍ବାଦିକ ହତ୍ୟୁହାନ, ଲେଙ୍କମଠର ସାମ୍ବାଦିକ ସଜନୀକାନ୍ତ, ସାହିତ୍ୟପ୍ରେମୀ କୃଷ୍ଣକାନ୍ତ, 'ଜାତିର ଡାକ' ପତ୍ରିକାର ସହ-ସଂପାଦକ ଶଶଧର, କମ୍ୟୁନିଷ୍ଟ ଜୟକୃଷ୍ଣ ଏବଂ ଜାମସେଦପୁରରୁ ଆସି ରାଉରକେଲରେ ପ୍ରେସ୍ ପ୍ରତିଷ୍ଠା କରିଥିବା ସାହିତ୍ୟିକ, ସମାଜସେବୀ, ସ୍ୱଦେଶପ୍ରେମୀ, ସ୍ୱାଧୀନଚେତା ଓ 'ଜାତିର ଡାକ' ସାପ୍ତାହିକ ପତ୍ରିକାର ସମ୍ପାଦକ ସୁବ୍ରତ ପଟ୍ଟନାୟକ । ଏମାନଙ୍କ ବ୍ୟତୀତ ଚରିତ୍ର 'ଚକଶାଳା'କୁ ମଣ୍ଡନ କରିଛନ୍ତି ଆଉ ଅନେକ ଗୌଣ

ଚରିତ୍ର । ମୁଖ୍ୟ ହେଉ ବା ଗୌଣ ହେଉ ପ୍ରତ୍ୟେକଟି ଚରିତ୍ର କଥାକାରଙ୍କ ଯାଦୁକରୀ ଲେଖନୀ ସ୍ପର୍ଶରେ ଜୀବନ୍ତ ହୋଇ ଉଠିଛନ୍ତି ।

କେନ୍ଦ୍ର ସରକାର ରାଉରକେଲାରେ ଜର୍ମାନ କୋଲାବରେସନ୍‌ରେ ଷ୍ଟିଲ୍‌ପ୍ଲାଣ୍ଟ୍ ପ୍ରତିଷ୍ଠାର ଘୋଷଣା ପ୍ରକାଶ କରନ୍ତି ୧୯୫୪ ମସିହା ଫେବ୍ରୁଆରୀ ୨୮ ତାରିଖରେ । ସ୍ୱଦେଶପ୍ରେମୀ ସାହିତ୍ୟିକ ସୁବ୍ରତ ପଟ୍ଟନାୟକ ପ୍ରେସ ସ୍ଥାପନପାଇଁ ଧାମଦେବପୁରରୁ ଆସି ରାଉରକେଲାରେ ପଦାର୍ପଣ କରନ୍ତି ଜୁନ୍ ମାସରେ । ୧୯୫୪ଠାରୁ ୧୯୬୭ ନିର୍ବାଚନ ପର୍ଯ୍ୟନ୍ତ ରାଉରକେଲା, ଶିଳ୍ପନଗରୀର କ୍ରମ ବିବର୍ତ୍ତନ ରୂପକୁ ନେଇ ଆତ୍ମପ୍ରକାଶ କରିଛି 'ମୋ ସ୍ୱପ୍ନର ସହର' । ଇସ୍ପାତ ନଗରୀ ପ୍ରତିଷ୍ଠା ପରଠାରୁ ଅଣ ଓଡ଼ିଆ ଅଫିସର ମାନଙ୍କର ଓଡ଼ିଆ ବିଦ୍ୱେଷୀ ନୀତି, ବାସଚ୍ୟୁତ ଲୋକଙ୍କର ସମସ୍ୟା, ଆଦିବାସୀମାନଙ୍କୁ କ୍ଷତି ପୂରଣ ଦେବାରେ କପିଳ ବେବର୍ତ୍ତାଙ୍କ ଦୁର୍ନୀତି, ଜର୍ମାନ ସାହେବ ସାହେବାଣୀମାନଙ୍କର ସ୍ୱେଚ୍ଛାଚାରିତା, ସରଳ ଆଦିବାସୀ ଜୀବନର ପରିବର୍ତ୍ତିତ ରୂପ, ଜର୍ମାନ କ୍ଲବ, ବ୍ରାହ୍ମଣୀ କ୍ଲବ୍ ଓ ପ୍ରଭାକର ଦାସ ପ୍ରତିଷ୍ଠିତ ସ୍ପିନ୍ନଳ ବାର୍ ନିକଟରେ ଖୋଲିଥିବା ବ୍ୟଭିଚାରର ଚିତ୍ର, 'ସ୍ପ୍ରିଙ୍ଗଳ ବାର୍'ର ଦଶନ୍ଧି ଉତ୍ସବ ପାଳନ ଅବସରରେ ପ୍ରଭାକର ଦାସଙ୍କ ନୂଆ ମଦଭାଟି ପ୍ରସ୍ତୁତ ମଦବୋତଲର ଠିପି ଖୋଲା ଉତ୍ସବ, ବିଷାକ୍ତ ମଦ୍ୟପାନ କରି ଦୁଇଜଣ ମୃତ ଓ ସାତଜଣ ଅନ୍ଧ ହୋଇଯିବାର ଦୁର୍ଘଟଣା, ଅବକାରୀ ଓ ପ୍ରଶାସନିକ ଅଫିସରଙ୍କ ପାଇଁ ଡିନର ପାର୍ଟିର ଆୟୋଜନ, ଡିନର ପାର୍ଟି ପରେ ଉଦ୍ୟାନ ଘରେ ମଦ୍ୟପ ମଜୁରିଆ ତିରୁପତି ପାନ୍ତ୍ରଲୁ ବଉଟିଅକୁ ନେଇ ପ୍ରଭାକର ଦାସର ରାତିଯାପନ, ତିରୁପତି ପାନ୍ତ୍ରଲୁର କୁଡ଼ିଆ ଘରେ ଚାରି ଚଉଦ ବର୍ଷର ସାନ ଝିଅକୁ ନେଇ ରତନ ଚୌଧୁରୀ ଓ ଅନୁକୂଳ ପ୍ରଧାନଙ୍କ ଗଣଧର୍ଷଣ, ବ୍ୟାଚେଲର ରମଣୀ ପଟ୍ଟନାୟକଙ୍କ ନାରୀ ଘଟିତ ରହସ୍ୟମୟ ଜୀବନ, ବ୍ୟଭିଚାରୀ ପ୍ରଭାକର ଦାସଙ୍କ ପରାମର୍ଶରେ ଓଡ଼ିଆ ଗୁଣ୍ଡା ଅନୁକୂଳ ପ୍ରଧାନ ହାତ ସୁବ୍ରତର ପ୍ରେସ୍‌ଘର ଦାହ, ପାଦ୍ରି ସାହେବଙ୍କ ପରାମର୍ଶ କ୍ରମେ ଧର୍ଷିତା ଆଦିବାସୀ ଯୁବତୀ ଫୁଲମଣିକୁ ଜର୍ମାନ ସାହେବଙ୍କ ଗ୍ରହଣ, ସାତବର୍ଷର କନ୍ୟା ସନ୍ତାନର ଜନନୀ ମିସେସ୍ ବିଶ୍ୱାସ ସ୍ୱାମୀଙ୍କ ବିଦେଶଯାତ୍ରା ଅବସରରେ ମାଡ୍ରାସୀ

ବନ୍ଧୁଙ୍କ ସହିତ ଗର୍ଭଧାରଣ ଓ ମାତ୍ରାସୀ ବନ୍ଧୁଙ୍କ ଔରସରୁ ପୁତ୍ରସନ୍ତାନ ଲାଭ, ବିଦେଶ ପ୍ରତ୍ୟାଗତ ମିଷ୍ଟର ବିଶ୍ୱାସ ମିସେସ୍ ବିଶ୍ୱାସଙ୍କୁ ପୁନଃ ଗ୍ରହଣ ପ୍ରଭୃତି ବିଭିନ୍ନ ଘଟଣାରେ ଶିଳ୍ପନଗରୀ ରାଉରକେଲର ବିଭତ୍ସ ନଗ୍ନ ରୂପ ପ୍ରକାଶ କରିଛନ୍ତି କଳାକାର ଲକ୍ଷ୍ମୀଧର ନାୟକ ।

ଉପନ୍ୟାସର ନାୟକ ସୁବ୍ରତ ପଟ୍ଟନାୟକ ଶିଳ୍ପନଗରୀ ରାଉର-କେଲା ପ୍ରତିଷ୍ଠାରେ ଏକ ସୁଖ ସମୃଦ୍ଧ ସହରର ଯେଉଁ ସ୍ୱପ୍ନ ଦେଖିଥିଲା, ପରିସ୍ଥିତିର ଘାତ-ପ୍ରତିଘାତରେ ସେସ୍ୱପ୍ନ ବାସ୍ତବରେ ତାହା ଉଭେଇ ଯାଇଛି । ସେ ଉପଲବ୍ଧି କରିଛି "ଏଠି ନିଜ ଜାତି ଭାଇ ହିଁ ମୋର ଶତ୍ରୁ । ବିହାରରେ ଅପମାନିତ ହୋଇଥିଲି । ଓଡ଼ିଶାରେ ଉପେକ୍ଷିତ ହେଲି ।" ଏହା ନାୟକ ସୁବ୍ରତର ଉପଲବ୍ଧି ନୁହେଁ, ଏହା ନାୟକ ଲକ୍ଷ୍ମୀଧରଙ୍କ ଉପଲବ୍ଧି । ବ୍ୟକ୍ତିଗତ ଜୀବନରେ ବିଫଳ ହୋଇ ସେ ଲୋକଶକ୍ତିର ଜାଗରଣ ପାଇଁ କାମନା କରିଛନ୍ତି । ମାଳମା ମିଶ୍ର ସହିତ ଆଲୋଚନା ପ୍ରସଙ୍ଗରେ ସୁବ୍ରତ କହିଛି—ଗଣତନ୍ତ୍ର ନାଁରେ ଯେଉଁମାନେ ସ୍ୱେଚ୍ଛାଚାରୀ ଓ ଦୁର୍ନୀତିଗ୍ରସ୍ତ ହୋଇ ଯାଇଛନ୍ତି, ସେମାନଙ୍କୁ ଲୋକଶକ୍ତି ହିଁ ଠିକଣା ଜବାବ ଦେବ । ଏହାଶୁଣି ମାଳମା ମିଶ୍ର ପ୍ରଶ୍ନ କରିଛି—ଆପଣ ଲେଖକ, ଆପଣ ସ୍ୱପ୍ନଦର୍ଶୀ । ହେଲେ ଲୋକ ଶକ୍ତିକୁ ବାଟ ଦେଖାଇବ କିଏ ?" ମାଳମା ମିଶ୍ର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସୁବ୍ରତ କହିଛି—ଦେଖାଇବ ସମୟ । ଲୋକଶକ୍ତି ହିଁ ବ୍ୟକ୍ତି ବିଶେଷକୁ ବାଛିବ ସମଷ୍ଟି ଭିତରୁ । ବସେଇବ ନେଇ ପ୍ରଶାସନର ସର୍ବୋଚ୍ଚ ସିଂହାସନରେ । ପୁଣି ସମୟ ପଡ଼ିଲେ ଟାଣି ଆଣି ଫିଙ୍ଗିଦେବ ରସାତଳରେ ଯଦି ଜାତିର ସ୍ୱାର୍ଥକୁ ଅବଜ୍ଞା କରି ନିଜ ସ୍ୱାର୍ଥ ସିଦ୍ଧିର କୁତ୍ସିତ ଖେଳ ଆରମ୍ଭ କରିଦିଏ ପ୍ରିୟାପ୍ରୀତି ତୋଷଣ ଭିତରେ ।' ସ୍ୱେଚ୍ଛାଚାରୀ ଦୁର୍ନୀତିଗ୍ରସ୍ତଙ୍କୁ କେଉଁ ମାଧ୍ୟମରେ ମୂଳପୋଛ କରିପାରିବ ବୋଲି ମାଳମା ମିଶ୍ର ଯେତେବେଳେ ପ୍ରଶ୍ନ କରିଛି, ତାର ଉତ୍ତର ଦେବାକୁ ଯାଇ ସୁବ୍ରତ ଯାହା କହିଛି ତହିଁରୁ ତାର ସାମ୍ୟବାଦୀ ଆଦର୍ଶର ସୂକ୍ଷ୍ମ ପରିଚୟ ମିଳେ । ମାଳମା ମିଶ୍ରର ପ୍ରଶ୍ନର ଉତ୍ତରରେ ସୁବ୍ରତ କହିଛି—"—ମାଧ୍ୟମ : ସଂଗଠିତ ଗଣଶକ୍ତି । ନିର୍ଯ୍ୟାତିତ ନିପୀଡ଼ିତର ଅସନ୍ତୋଷରୁ ନିଆଁ ଜଳି

ଜ୍ୱଳିବ ଦିନେ । ସେଇ 'ନିଆଁ' ଦେଖେଇବ ଆଲୋକ ଅନ୍ଧକାର ଭିତରେ । ସେ ବିପ୍ଳବ ରୁଷିଆ ବା ଚୀନର ସାମ୍ୟବାଦ ଚିନ୍ତାଧାରାରୁ ଉଧାର ହୋଇ ଆସିବନି, ଆସିବ ଏଇ ଦେଶର କ୍ଷେତ ଖମାରର ଚାଷୀ, କଲ କାରଖାନାର ମଜ୍‌ଦୁର, ବସ୍ତା ଘାଟର ବାବନାଭୂତ ହୋଇ ବୁଲୁଥିବା ଲକ୍ଷ ଲକ୍ଷ ଶିକ୍ଷିତ ବେକାରଙ୍କ ସଙ୍ଗଠିତ ଆନ୍ଦୋଳନରୁ ।" ସୁବ୍ରତ ମୁହଁର ଏ ଭାଷାରେ ସ୍ପଷ୍ଟବାଦୀ ନିର୍ଭୀକ କଳାକାର ନାୟକଙ୍କ ଆଦର୍ଶବାଦ ପ୍ରତିଫଳିତ ।

ଉପନ୍ୟାସର ଭାବଧାରା ନାୟକ ସୁବ୍ରତର ଆତ୍ମଦର୍ଶନ ସ୍ୱଦେଶ ପ୍ରେମରୁ ଆରମ୍ଭ ହୋଇ ସଂଗଠିତ ଲୋକଶକ୍ତି ଓ ସାମ୍ୟବାଦ ଦର୍ଶନର ଆହ୍ୱାନରେ ଶେଷ ହୋଇଛି । ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ କଳାକାର ଲକ୍ଷ୍ମୀଧର ନାୟକଙ୍କ 'ଯେ ମରିନାହିଁ', 'ସର୍ବହରା', 'ହାରେ ଦୁର୍ଭାଗା ଦେଶ' ରେ ପ୍ରତିଷ୍ଠିତ ଚେତନାର ଏକ ପରିଣତ ବିକଶିତ ରୂପ ହେଉଛି 'ମୋ ସ୍ୱପ୍ନର ସହର' ।



ଜାତୀୟ କବି ବୀର କିଶୋର କଲେଜ
କଟକ

# ମୁଁ ତାଙ୍କୁ ଯେତିକି ଜାଣେ...



ବଂଶୀଧର ଭୂୟାଁ

ଯେଉଁମାନେ ଜୀବନର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ପରିପୂରଣ ପାଇଁ ଅବିରତ ସଂଗ୍ରାମ କରି ଚାଲନ୍ତି, ସେମାନେ ସେଥିରେ କୃତକାର୍ଯ୍ୟ ହୁଅନ୍ତୁ ବା ନ ହୁଅନ୍ତୁ, ଲୋକ ଦୃଷ୍ଟିରେ ସେମାନେହିଁ ସାଧକ ରୂପେ ପରିଗଣିତ ହୁଅନ୍ତି । ମୋ ଦୃଷ୍ଟିରେ ସେହିପରି ଜଣେ ସାଧକ, ସେ ସଙ୍ଗୀତଜ୍ଞ ରୂପରେ ହୁଅନ୍ତୁ, କି କବି ରୂପରେ, କି ଅଭିନେତା ରୂପରେ, କି ଔପନ୍ୟାସିକ ରୂପରେ, କି ସାମ୍ବାଦିକ ରୂପରେ- ତାଙ୍କୁ ମୁଁ ଯେପରି ଜାଣିଛି, ଉପଲବ୍ଧି କରିଛି, ଅନ୍ତରଙ୍ଗତାର ଆତ୍ମିକ ସ୍ପର୍ଶ ପାଇଛି, ସେ ହେଉଛନ୍ତି ଲକ୍ଷ୍ମୀଧର ନାୟକ, ଅନ୍ୟ ଭାଷାରେ ମୋର ଗୁରୁ ପ୍ରତିମ, ପଥ ଦ୍ରଷ୍ଟା ଓ ପ୍ରେରଣାଦାତା ।

ତାଙ୍କ ସୃଷ୍ଟି ଯେପରି ପ୍ରତିଟି ସାହିତ୍ୟିକ ବିଭବରେ ଦ୍ୟୁତିମନ୍ତ, ତାଙ୍କର କର୍ମମୟ ଜୀବନ ସେହିପରି ବହୁ ଭାବରେ କୁଶଳତାରେ ଅଭି- ଷିକ୍ତ । ତାଙ୍କୁ ଯେଉଁମାନେ କବି, ସାହିତ୍ୟିକ ରୂପେ ଚିହ୍ନିଛନ୍ତି, ସେମାନେ ଲକ୍ଷ୍ମୀଧର ନାୟକଙ୍କ ଗୋଟିଏ ମାତ୍ର ଦିଗର ପରିଚୟ ପାଇଛନ୍ତି, କିନ୍ତୁ ବାସ୍ତବ ଜୀବନରେ ସେ ଯେ ଜଣେ କଠୋର ଜୀବନ ସଂଗ୍ରାମୀ, ନିରଳସ କର୍ମଜୀବୀ ମଣିଷ—ପ୍ରତ୍ୟକ୍ଷ ସମ୍ପର୍କ ବିନା ତା କ'ଣ ଉପଲବ୍ଧି କରିହୁଏ ? ବୋଧହୁଏ ମୁଁ କିଛିଟା ଉପଲବ୍ଧି କରିଛି, ଯା ଫଳରେ ତାଙ୍କର ନିର୍ଦ୍ଦେଶିତ ପଥରେ ଚାଲୁ ଚାଲୁ ବହୁ ଥର ଝୁଣ୍ଟିଛି, କିନ୍ତୁ ଚାଲିଛି— ଅବିରାମ ଭାବରେ, ଏବେବି ।

ଆମେ ଦୁହେଁ ଥିଲୁ ଏକଦା ଓଡ଼ିଶା ମାନଚିତ୍ରରେ ଚିହ୍ନିତ ଉତ୍କଳମାତାର ମସ୍ତକ ସିଂହଭୂମିରେ । ଲୌହ ନଗରୀ ଜାମସେଦପୁର ଥିଲା ଆମ ଦୁହିଁଙ୍କର କର୍ମସ୍ଥଳ ।

ଲେଖାଲେଖିର ଅନୁପ୍ରେରଣା ଲାଭ କରେ, ମୁଁ ଯେତେବେଳେ ପତ୍ରପତ୍ରିକା ମାଧ୍ୟମରେ ମୁଣ୍ଡ ଟେକେ. ପ୍ରବାସୀ ଉତ୍କଳର ତରୁଣ କବି, 'ଝଙ୍କିଲା'ର ସମ୍ପାଦକ, 'ସେ'ର ପ୍ରେମ ବଦଗ୍ରଧ କବି ଲକ୍ଷ୍ମୀଧର ନାୟକଙ୍କ ସମ୍ପର୍କରେ ଆସେ । ବୋଧହୁଏ ୧୯୪୫ କି ୪୬ ମସିହା କଥା । ପ୍ରେସ ପରିଚାଳନା, ପତ୍ରିକା ସମ୍ପାଦନା, ପ୍ରବାସୀ ସାହିତ୍ୟ ଆନ୍ଦୋଳନ ସାଙ୍ଗକୁ ସାମାଜିକ ଓଡ଼ିଆ ନାଟକ ରଚନା ଓ ରଙ୍ଗମଞ୍ଚରେ ତାର ପ୍ରଦର୍ଶନ ଆଦି କାର୍ଯ୍ୟରେ ଦିନରାତି ଅକ୍ଳାନ୍ତ ପରିଶ୍ରମ କରି ଚାଲିଥିବା ଏକ ବ୍ୟକ୍ତିରୁ ସମ୍ଭବ । ଜାମସେଦପୁରର ଅନ୍ୟାନ୍ୟ ଓଡ଼ିଆ ସମାଜର ବିରୋଧ ସତ୍ତ୍ୱେ ନିଜ ଆଦର୍ଶ ଓ କାର୍ଯ୍ୟର ଆଶାବାଦୀ ନାୟକ ଯୁବକ ଲକ୍ଷ୍ମୀଧର ସାହିତ୍ୟ, ସାମ୍ବାଦିକତାକୁ ନିର୍ଦ୍ଦିଷ୍ଟ ରୂପରେଖ ଦେବା ସଙ୍ଗେ ସଙ୍ଗେ ବଞ୍ଚିବାର ଜୀବିକା ପାଇଁ ମଧ୍ୟ ମୂଳଦୁଆ ତିଆରି କରି ଚାଲିଥାନ୍ତି । କିନ୍ତୁ ପାରିବାରିକ ଗଣ୍ଡଗୋଳରେ ତାଙ୍କ ବାପାଙ୍କ ସହିତ ମନୋମାଳିନ୍ୟ ହେବା ଯୋଗୁଁ ପରିବାର ସହିତ ଅପୋସହୀନ ବିରୋଧ ତାଙ୍କୁ ଏକେଲା ଚାଲିବାରେ ପ୍ରେରଣା ଦେଲା ସିନା, ସେଥିରୁ ତାଙ୍କୁ ନିବୃତ୍ତ କରାଇ ପାରିଲାନି ।

ଏ ସମୟରେ ସେ ନିଜର ପ୍ରେସଟିଏ ପ୍ରତିଷ୍ଠା କଲେ ବିଷ୍ଟୁପୁରରେ । ନାଁ ରଖିଲେ 'ସିଟିପ୍ରେସ' । ଏଇ ପ୍ରେସଟି ହେଲା ଜାମସେଦପୁରର ତରୁଣ ସାହିତ୍ୟ ପ୍ରେମୀଙ୍କ ମିଳନସ୍ଥଳ । ଅନେକେ ନିଜ ଖର୍ଚ୍ଚରେ ସ୍ୱଲିଖିତ ପୁସ୍ତକ ମୁଦ୍ରଣ କରିବା ସଙ୍ଗେ ସଙ୍ଗେ ପାଣ୍ଡୁଲିପି ପ୍ରକାଶନ ତଥା ମୂଲ୍ୟବାନ ପରାମର୍ଶ ମାଧ୍ୟମରେ ସାହିତ୍ୟ ଆସର ବେଶ୍ ରସସିକ୍ତ ହେଉଥିଲା ।

ବାଳକୃଷ୍ଣ କରଙ୍କ ସଂପାଦିତ ଆନନ୍ଦ ଲହରୀ ଉପନ୍ୟାସ ମାଳାରେ ଲକ୍ଷ୍ମୀଧର ବାବୁଙ୍କ ଉଦ୍‌ଭ୍ରାନ୍ତ, ଭୁଲିଲି ହଠେ ହଣୀ ପ୍ରକାଶ ପାଇବା ପରେ ଓଡ଼ିଶାର ପ୍ରଗତିଶୀଳ ଔପନ୍ୟାସିକ ଭାବେ ତାଙ୍କର ଖ୍ୟାତି ସ୍ୱୀକୃତି ଲାଭ କଲା ।

ଜାମସେଦପୁରରେ ଏଇ ସବୁ ସାହିତ୍ୟିକ ଆନ୍ଦୋଳନ ମାଧ୍ୟମରେ ଯେଉଁ ତରୁଣମାନେ ତାଙ୍କର ଅନୁଗାମୀ ଥିଲେ, ସେମାନଙ୍କ ଭିତରେ ମୁଁ ଥିଲି ଅନ୍ୟତମ ।

ମୋର ସାହିତ୍ୟ ସାଧନାର ପୁଷ୍ଟି ପାଇଁ ଏକ ଗଳ୍ପ ସଂକଳନ ପ୍ରକାଶ କରିବାକୁ ମୁଁ ଏବଂ ମୋର ବନ୍ଧୁ ନରେନ୍ଦ୍ର ମହାନ୍ତି ସିଦ୍ଧାନ୍ତ ନେଲୁ । ଓଡ଼ିଶାର ବିଶିଷ୍ଟ ଗାଳ୍ପିକଙ୍କ ସହିତ ମୋର ପରିଚୟ କରାଇ ଦେଇ 'ଜୁଆର' ଗଳ୍ପ ସଂକଳନର ପ୍ରଥମ ଖଣ୍ଡରେ ଲେଖା ଦେବାକୁ ଯେଉଁମାନଙ୍କୁ ଅନୁରୋଧ ଜଣାଇଥିଲେ ଲକ୍ଷ୍ମୀଧର ବାବୁ, ସେମାନେ ହେଲେ ସର୍ବଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ହରିଶ୍ଚନ୍ଦ୍ର ବଡ଼ାଲ, ସଚ୍ଚି ରାଉତରାୟ, ରାଜକିଶୋର ରାୟ ପ୍ରଭୃତି ।

ଏହାପରେ 'ପ୍ରେମ ଓ ପ୍ରତିମା' ମୋର ପ୍ରଥମ ଉପନ୍ୟାସ ତାଙ୍କର ପ୍ରେରଣା ଓ ପାଣ୍ଡୁଲିପି ସଂଶୋଧନ କ୍ରମେ ସିଟି ପ୍ରେସ୍‌ରୁ ମୁଦ୍ରିତ ହେଲା ।

ଏହାପରେ କଟିଗଲା ୨।୩ଟି ବର୍ଷ । ସେତେବେଳକୁ ସିଟିପ୍ରେସ୍ ବେଶ୍ ପ୍ରତିଷ୍ଠା ଲାଭ କରିଥାଏ । ସେ ଝୁଙ୍କର ଘୁଡ଼ ଜାମସେଦପୁର କଲିକତା ହୋଇ ପ୍ରେସଟିକୁ ଠିଆ କରାଇ ପାରିଥାନ୍ତି । ଆମ ଦୁହିଁଙ୍କର ଅନ୍ତରଙ୍ଗତା ବୃଦ୍ଧି ସାଙ୍ଗକୁ ପୁନର୍ବାର ସାଥୀ ଉପନ୍ୟାସ ପ୍ରକାଶ କରିବାର ଯୋଜନା ଚାଲିଲା । ସାହିତ୍ୟ ସମ୍ବଲପୁରରେ ଆମେ ସ୍ୱପ୍ନ ଦେଖିଲୁ ଏକ ସମ୍ପ୍ରିମନ୍ତ ସୂର୍ଯ୍ୟକୁ । ସାଥୀ ସିରିଜ ପତ୍ରିକା ପ୍ରକାଶନ, ପ୍ରେସ ପ୍ରତିଷ୍ଠା ମାଧ୍ୟମରେ ହିଁ ଜାମସେଦପୁରରୁ ଜୟପୁର, କଟକରୁ ସମ୍ବଲପୁର ଦୂରତ୍ୱକୁ ହ୍ରାସ କରାଇବା ସମ୍ଭବ ହେବ ସିନା, ଅନ୍ୟଥା ନୁହେଁ ।

ସାଥୀ ସିରିଜ ପୁନଃ ପ୍ରକାଶିତ ହେଲା ଏବଂ ତାର ପ୍ରଥମ ସଂଖ୍ୟାଟି ତାଙ୍କର ଲେଖଣୀ ସଂସ୍କୃତ 'ସେ ମରି ନାହିଁ' କୁ ଧରି ମୁଁ ଜାମସେଦପୁର ଛାଡ଼ିଲି ୧୯୫୯ ମସିହା ଫେବୃଆରୀ ଏଗାର ତାରିଖରେ । ଓଡ଼ିଶାର ପୂରପଲ୍ଲୀରେ ପ୍ରବାସୀ ଓଡ଼ିଆଙ୍କ ଅନ୍ତର୍ବେଦନା ପ୍ରଚାର ଓ ସାଥୀ ସିରିଜ୍ ସଙ୍ଗଠନର ଶପଥ ନେଇ, ସାହିତ୍ୟ ସାଧନାର ପଥ ସେ ଅତି ଦୁର୍ଗମ, ଅର୍ଥାଭାବ, ଅନଟନ, ହତାଶାର ବର୍ଷିକା ସତ୍ତ୍ୱେ ଏକ ଉଜ୍ଜ୍ୱଳ ସମ୍ଭାବନାର ଆଶା ପୋଷଣ କରି ମୁଁ ଜାମସେଦପୁର ଛାଡ଼ିଲି ।

ମୋର ସ୍ପଷ୍ଟ ମନେ ଅଛି, ମୁଁ ଥାଏ ବ୍ରହ୍ମପୁରରେ । ଲକ୍ଷ୍ମୀଧର ବାବୁ ୨୭ ଓ ରୋଡରୁ ଏକ ଚିଠିରେ ମତେ ଲେଖିଥିଲେ ୨୭।୭।୧୯୪୯ ରେ ।

"ସତ କହିବାକୁ ଗଲେ ତମ ପରି ଜଣେ ସହଯୋଗୀ ଓ ନିଷ୍ଠାପର ଯୁବକଙ୍କୁ ପାଇ ନଥିଲେ ମୁଁ କେବେ ପୁଣି 'ସାଥୀ'ର ପୁନଃ-ଦ୍ଧାର ପାଇଁ ପରିକଳ୍ପନା କରିନଥାନ୍ତି । ମୁଁ ଜାଣେ ଏହା କେଡ଼େ ଦୁରୂହ ବ୍ୟାପାର । ତୁମେ ଯେ ଆଗଭର ହୋଇ ଏସବୁ କଷ୍ଟକୁ ମୁଣ୍ଡପାତି ସହି ନେଉଛ, ଏ ସହନଶୀଳତାର ଯଥାର୍ଥ ମୂଲ୍ୟ ତୁମ ଅଗୋଚରରେ ଅଦୂର ଭବିଷ୍ୟତରେ ଯେ ନ ମିଳିବ ଏ କଥା କିଆଁ ଭାବୁଚ ! ତୁମେ ତ ଜାଣ, ମୁଁ ଏସବୁ ବିଷୟରେ କେତେ ଦୁଃସାହସୀ ।"

ଏଇ ଅନୁପ୍ରେରଣାହିଁ ମୋ ଚାକିରି ଜୀବନରୁ ଏକ ବର୍ଷ ଛୁଟି ପକ୍ଷେ ବିଦାୟ ନେବାକୁ ମତେ ଉତ୍ସାହିତ କରିଥିଲା ।

ଗୋଟିଏ ବର୍ଷର କଠିନ ପରିଶ୍ରମ ସତ୍ତ୍ୱେ ସାଥୀର ଗ୍ରାହକ ସଂଗ୍ରହ ଆଶାନୁରୂପ ହୋଇ ପାରିଲନି । ତା' ତୁଳନାରେ ଖର୍ଚ୍ଚ ଅପେକ୍ଷା-କୃତ ବେଶି ହେଲା । ବ୍ରହ୍ମପୁରରେ ଆମର ସିଦ୍ଧାନ୍ତ କ୍ରମେ ମୁଁ ତାଙ୍କ ନିବାସ୍ଥଳ ଜଟଣୀ ଫେରି ଆସିଲି, ତା ପରେ କଟକ ।

କଟକ ରାଣୀହାଟରେ ପ୍ରତିଷ୍ଠା ଲାଭକଲା ମହାଲକ୍ଷ୍ମୀ ପ୍ରେସ ଓ ଉପନ୍ୟାସ ମହଲ । ଲକ୍ଷ୍ମୀଧର ବାବୁ ରହିଲେ ଜାମସେଦପୁରରେ, ମୁଁ କଟକରେ ।

ଆଶା-ନିରାଶାର ଦ୍ୱନ୍ଦ୍ୱଭିତରେ ମୁଁ ତାଙ୍କ ସଂପର୍କ ଛାଡ଼ି ୧୯୫୧ ପ୍ରାରମ୍ଭରେ ଗାଁକୁ ଚାଲିଗଲି ।

ଲକ୍ଷ୍ମୀଧର ନାୟକ ସାହିତ୍ୟ କ୍ଷେତ୍ରରେ ଜଣେ ଖ୍ୟାତିମନ୍ତ ପ୍ରତିଭା, ଏହା ଅନସ୍ୱୀକାର୍ଯ୍ୟ, କିନ୍ତୁ ଜୀବିକା ରୂପେ ସେ କେବେ ସାହିତ୍ୟକୁ ସେ-ପର୍ଯ୍ୟନ୍ତ ଉପଯୋଗ କରି ନଥିଲେ । ଜୀବନରେ ଯେଉଁ ବୈଷୟିକ ପ୍ରତିଷ୍ଠା ସେ ପାଇଲେ, ତା ସମ୍ଭବ ହେଇଛି କେବଳ ପ୍ରେସ ପରିଚାଳ-

ନାରେ ଦକ୍ଷତା ଯୋଗୁ ନୁହେଁ. ସେମିତ ସ୍ଥଳନାଠାରୁ ଆରମ୍ଭ କରି କମ୍ପୋଜ, ଇମ୍ପୋଜ ଯାଏ ପ୍ରେସର ପ୍ରତ୍ୟେକ କାର୍ଯ୍ୟ ସଂପାଦନାରେ ।

ପରବର୍ତ୍ତୀ ୩୦ ବର୍ଷ ତାଙ୍କ ଜୀବନର ସାଧନା ଓ ପ୍ରାପ୍ତିର ବର୍ଷ, ନିରବଚ୍ଛିନ୍ନ କର୍ମ-ଜୀବନ ଓ ସାହିତ୍ୟ-ଜୀବନର ସଂଗ୍ରାମର ବର୍ଷ ।

ଅଳ୍ପ କେଇଟି ବର୍ଷ ଭିତରେ ଆମର ଯେଉଁ ସମ୍ପର୍କ ଓ ଅନ୍ତରଙ୍ଗତା ଗଢ଼ି ଉଠିଥିଲା, ଏବେ ଦେଖୁଛି ମୋ ଜୀବନ ଧାରା ଓ ସାହିତ୍ୟ ଅନୁଚିନ୍ତା ଭିତରେ ତାଙ୍କର ସ୍ୱପ୍ନ ମୋ ଅଗୋଚରରେ ରୂପାୟିତ ହୋଇ ଚାଲିଛି ।

ମୋର ଗୁରୁପ୍ରତିମ ସାହିତ୍ୟିକ ଲକ୍ଷ୍ମୀଧର ନାୟକଙ୍କ ୫୦ ବର୍ଷର ସାହିତ୍ୟ ସାଧନା ପୂର୍ତ୍ତି ବର୍ଷ ଅବସରରେ ମୁଁ କଣ ବା ଲେଖିବି ତାଙ୍କ ସାହିତ୍ୟକୃତିର ଜଣେ ଅଜ୍ଞ ପାଠକ ହିସାବରେ ? ବ୍ୟକ୍ତିଗତ ଭାବେ ମୁଁ ତାଙ୍କୁ ଯେତିକି ଜାଣେ, ସେ ଯେ ତାଠୁ ଅଧିକ ମହାନ, ଅଧିକ ଗରିଷ୍ଠ, ଅଧିକ ଗଭୀର, ତା କେବଳ ବିଶ୍ଳେଷଣ ସାପେକ୍ଷ ।



ସମ୍ପାଦକ—ଜନସାହିତୀ
ଭଗତପୁର
କଟକ

# ମୋ ସ୍ମୃତିରେ ଲକ୍ଷ୍ମୀଧର ବାବୁ



ଡକ୍ଟର ବିକ୍ରମ ଦାସ

ସେ ଅନେକ ଦିନ ତଳର କଥା କିନ୍ତୁ ପୁରୁଣା ନୁହେଁ, ଏବେ ବି ନୂଆ ପରି ଲାଗୁଛି । ନବଭାରତ ପ୍ରେସ । ମୋର ପିତା ନୀଳକଣ୍ଠଙ୍କର ସାହିତ୍ୟ କେନ୍ଦ୍ର । କେତେ ବଡ଼, ଶ୍ରେଷ୍ଠ ସାହିତ୍ୟିକ ଓ ସାହିତ୍ୟପ୍ରେମୀ ସେଠାକୁ ଆସୁଥାଆନ୍ତି ସାହିତ୍ୟ ଚର୍ଚ୍ଚା ଓ ପରାମର୍ଶ ପାଇଁ ଓ ସେମାନଙ୍କ ଲେଖା ଛପା ହେବା ପାଇଁ ।

ମୁଁ ମେଡ଼ିକାଲ କଲେଜରେ ପଢ଼ୁଥାଏ । ସେଠାକୁ ଆସେ କେବଳ ପିତାଙ୍କ ଦର୍ଶନ ପାଇଁ ନୁହେଁ, ସାହିତ୍ୟିକ ଓ ଅନ୍ୟାନ୍ୟ ବଡ଼ ବଡ଼ ଲୋକଙ୍କର ଟିକିଏ କଥା ଶୁଣିବା ପାଇଁ । ସେଠାକୁ ଆସୁଥିବା ଲୋକମାନଙ୍କ ଭିତରେ ଜଣେ ଦୋହଲା ପତଳା ଲୋକଙ୍କ ସଙ୍ଗେ ମୋର ଦେଖା ହେଲା । ବନ୍ଧୁତ୍ୱ ଆସ୍ତେ ଆସ୍ତେ ବଢ଼ିଲା । ସେ ନନାଙ୍କ ସଙ୍ଗେ ଯେ କେବଳ ସାହିତ୍ୟ ଚର୍ଚ୍ଚା କରନ୍ତି ତା ନୁହେଁ, ନବଭାରତ ଅନୁଷ୍ଠାନଟି କିପରି ବଞ୍ଚି ରହିବ ସେଥିପାଇଁ ଆମ ନିଜ ଘର ଲୋକଭଳି ସେଇ ଲକ୍ଷ୍ମୀଧର ବାବୁ ଅଦମ୍ୟ ଚେଷ୍ଟା ଚଳାଇ ଆଥାନ୍ତି ।

ପ୍ରେସ କିପରି ଚାଲିବ, ଛପା କିପରି ଭଲ ହେବ, ଭଲ ଗ୍ରାହକଟିଏ କେଉଁଠୁ ମିଳିବ—ସବୁ ଚିନ୍ତା ତାଙ୍କର । ନବଭାରତ ପ୍ରେସଟି ଗୋଟିଏ ରାଜନୀତି ଓ ସାହିତ୍ୟର ମିଶା ଅନୁଷ୍ଠାନ ଥିଲା । ଲେଖା ଛପାରୁ ଯାହା ଆଦାୟ ହୁଏ ତାଠାରୁ ବେଶୀ ଖର୍ଚ୍ଚ ହୋଇଯାଏ । ସବୁବେଳେ ଯୋଦ୍ଧା, ବହୁତ କର୍ମୀ ସେଠାରେ ଆଥାନ୍ତି । ନନା ମଶିଣାଟି ଉପରେ ବହିଗଦା ଭିତରେ ପଡ଼ି ରହି ଥାଆନ୍ତି । ତାଙ୍କ ଚାରିପଟେ ସବୁବେଳେ ନାନା ପ୍ରକାର ଲୋକ ଘେରି ରହିଥାଆନ୍ତି ।

ଲକ୍ଷ୍ମୀଧରବାବୁ ନନାଙ୍କର ସେ ଭୋଳାନାଥ ଭାବ ଦେଖି ଭାବିଲେ ଏପରି ଚାଲିଲେ ସେ ଅନୁଷ୍ଠାନଟି ଶୀଘ୍ର ଧୂଳିରେ ମିଶିଯିବ । ସେ ନମ୍ର ଭାବରେ ନନାଙ୍କୁ ବୁଝାଇବାକୁ ଲାଗିଲେ । ପ୍ରେସ୍‌କୁ ସଜାଡ଼ିବାକୁ ଚେଷ୍ଟା କଲେ, କିନ୍ତୁ ଚାଣ୍ଡି ପଡ଼ିଥିବା ଅଡ଼ୁଆବାଲକୁ ପୁଣି ଫିଟାଇ ଠିକ୍‌କରିବା

ଅତି କଷ୍ଟ । ମୋ ପିତାଙ୍କର ସେ ଅତି ଅନୁରକ୍ତ । ସେ ମଧ୍ୟ ତାଙ୍କ ପ୍ରତି ଆକୃଷ୍ଟ । ଦୁହିଁଙ୍କ ଭିତରେ ବାପପୁଅପରି ସମ୍ପର୍କ । ଏ ସବୁ ସତ୍ତ୍ୱେ ସେ ସାହିତ୍ୟ ଅନୁଷ୍ଠାନଟି ବଞ୍ଚି ରହି ପାରିଲା ନାହିଁ । ଜନୀ ବି ସେ ସ୍ଥାନ ଗ୍ରହଣ ବଜମାଟିରେ ଯୋଗଦେଇ ବାଟସ୍ପୃଷ୍ଟ ହେଲେ । ଶେଷରେ ପ୍ରେସଟି ମୁଁ ବାଧ୍ୟ ହୋଇ ଲୋକ ସେବକ ମଣ୍ଡଳକୁ ଦାନ କରି ଦେଲି ।

ଲକ୍ଷ୍ମୀଧର ବାବୁ କିନ୍ତୁ ସାହିତ୍ୟକୁ ଛାଡ଼ିଲେ ନାହିଁ । ସେ ଗଳ୍ପ, ନାଟକ, ଉପନ୍ୟାସ କୋଡ଼ି କୋଡ଼ି ଲେଖି ଉତ୍କଳ ବାଣୀ ଭଣ୍ଡାରକୁ ଭରପୂର କରିବାରେ ଲାଗି ପଡ଼ିଲେ । ମୁଁ ମୋର ଡାକ୍ତରୀ ବିଦ୍ୟାରେ ବିଶେଷତଃ ଶିକ୍ଷାଦାନରେ ଲାଗିଥିଲି । ବହୁକାଳ ପରେ ଅକସ୍ମାତ ଲେଖକରତ୍ନ କୁଞ୍ଜ ବିହାରୀ ଦାଶଙ୍କ ଜନ୍ମ ଉତ୍ସବରେ ତାଙ୍କ ଘରେ ମୋର ଲକ୍ଷ୍ମୀଧର ବାବୁଙ୍କ ସଙ୍ଗେ ଦେଖା ହେଲା । ସେ ଟେପ୍‌ରେକର୍ଡ଼ ବଜାଇ ତାଙ୍କର ଲେଖା ଶୁଣାଇଲେ । ମୋର ମନଟା କପରି ହୋଇଗଲା । ମୁଁ ପଛରୁ ଯାଇ ତାଙ୍କୁ କୁଣ୍ଢାଇ ପକାଇଲି । କହିଲି ଆପଣ ମୋତେ ଚିହ୍ନି ପାରୁଛନ୍ତି ? ମୁଁ ସେଇ ବିକ୍ରମ । ତାଙ୍କ ଆଖି ଛଳଛଳ ହୋଇଗଲା । ସେ କହିଲେ ମୁଁ ତୁମ ଘରକୁ ଯିବି ।

କେତେ ଭାବନା ମନରେ ଜାଗିଲା । ନବଭାରତ ଅନୁଷ୍ଠାନଟି ବଞ୍ଚି ରହିଥିଲେ ହୁଏତ ସେ ଏତେଦିନ ମୋର ଅଦେଖା ହୋଇ ରହି ନଥାନ୍ତେ । ସେ ତାଙ୍କର ସାହିତ୍ୟ ତପସ୍ୟାରେ ରତ ଅଛନ୍ତି । ତାଙ୍କ ପିଲାଏ ମଧ୍ୟ ପାରିଲେଣି । ଭବ ଭର୍ଗଙ୍କୁ ହିଙ୍କଳତା ଜଣା ପଡ଼ୁଛି । କିନ୍ତୁ ତାଙ୍କର ଈପ୍‌ସିତ ଅନୁଷ୍ଠାନଟି ବଞ୍ଚି ରହିଥିଲେ ହୁଏତ ସେ ସେଠାରେ ଥାଆନ୍ତେ ଓ ତାଙ୍କଠାରୁ ଆମେ ବହୁତ କଥା ଶିଖି ଥାଆନ୍ତୁ । ପରସ୍ପର ଭାବ ଆଦାନ ପ୍ରଦାନରେ ହୁଏତ ଓଡ଼ିଆ ସାହିତ୍ୟ ଆହୁରି ଉନ୍ନତ ହୋଇ ଥାଆନ୍ତା ।

ଯାହା ଜଗତର ଇଚ୍ଛା । ଭଗବାନ ତାଙ୍କୁ ଦୀର୍ଘ ଜୀବନ ଦିଅନ୍ତୁ । ସେ ଓଡ଼ିଆ ସାହିତ୍ୟକୁ ଆହୁରି ବଳିଷ୍ଠ କରନ୍ତୁ—ଏତିକ ମାତ୍ର କାମନା ।

ଚନନକୋଣିଆ ବଟିକ୍ସ
କଟକ—୧

# ମନେପଡ଼େ



**କାର୍ତ୍ତିକ କୁମାର ଘୋଷ**

ଠିକ ହେଲୁ କରି ଫାଲ୍ଗୁନ—୧୯୩୫ ସାଲ ହବ କି କଣ, ଯାଇଥାଏ ଟାଟା ନଗର ଆର୍ଟ ଥିଏଟରକୁ ଧରି । ସଭିଙ୍କ ପାଖରେ ବାହାସ୍ଫୋଟ ମାରି କହୁଥାଏ ଦଳକୁ ଏଥର ବଙ୍ଗାଳୀ ପୁଅଙ୍କ ଆଗରେ ଥୋଇବ । ଆମ ବ୍ରଜରେ "ଥିଏଟର ବୋଲି କେହି ଜାଣନ୍ତି ନାହିଁ କଥାଟାକୁ ଓଲଟେଇ ଦେଇ ଫେରିବ । କଟକରୁ ବାହାରି ସିଧା ରେଲରେ ବସି ଚାଲିଲୁ ଟାଟା । ଜାଗା ବାଛିଲେ ବାବୁ ତାରିଣୀ ଚରଣ ଦାସ । ସେ ବେଳର ଭଲ ଫେଣ୍ଡ୍ (ଫୁଟବଲ) ଖେଳାଳୀ । ସାକ୍‌ଚୀରେ ବସା ନେଇଥାନ୍ତି—ଶସ୍ତା ଉଚିତସୁ ଥିଲା—ତାଙ୍କର ବସା ପାଖରେ ଜାଗାଟିଏ ଦେଖି ଥିଏଟର କରିବାକୁ ଠିକଣା କଲେ । ଥିଏଟର ଚାଲିଲା—ହେଲେ ପାଣିକୁ ହାତ ଚାଲିବା ଧୀରେ ଧୀରେ ଧ୍ୱମେଇ ଆସିଲା । ତାରିଣୀ ବାବୁ ଝାଉଁଳି ପଡ଼ିଲେ । ହେଲେ, ନିଜ ମହତ ରଖି ଦଳକୁ ନଇପାରି କରି ଦେବାର ସବୁ ଫିକିର ଫାନ୍ଦ ବସାଇଲେ । ସେତିକବେଳେ ଯୋଉ [illegible] ମାନେ ତାଙ୍କୁ ହେମତ ଦେଇ ଓଡ଼ିଆ ପଣ ଦେଖେଇ ଥିଲେ, ସେଇମାନଙ୍କ ଭିତରେ ଥିଲେ ମୋର ଅଜଣା ଅଚିହ୍ନା ଓଡ଼ିଆ ପୁଅ ଲକ୍ଷ୍ମୀଧର ନାୟକ—ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ । ସେ ମୋତେ ଚିହ୍ନି ନଥିଲେ ମାତ୍ର ବଡ଼ଭାଇ ଅଶ୍ୱିନୀବାବୁ (ଅଶ୍ୱିନୀ କୁମାର ଘୋଷ)ଙ୍କୁ ଜାଣିଥିଲେ—ସେଇଟା ଥିଲା ତାଙ୍କର ଆଉ ଏକ କାରଣ—ସେ କାରଣ ହେଲା ଅଶ୍ୱିନୀବାବୁ ଜଣେ ନାଟକ ଲେଖକ ଓ ଓଡ଼ିଆ ଜାତିର ଟେକ ପାଇଁ ପାଠକ ଦର୍ଶକ ।

ତାପରେ ୩୭ ବର୍ଷ କଟିଗଲା । କେତେ କୁଆଡ଼ୁ ଅଦଳ ବଦଳ ହୋଇ ଆର୍ଟ ଥିଏଟର ଭାଙ୍ଗି ଚାରି ଗୁଣରେ ଗଢ଼ି ଉଠିଲା

ଅନ୍ନପୂର୍ଣ୍ଣା ଥିଏଟର । ସେଇ ଅନ୍ନପୂର୍ଣ୍ଣା ଥିଏଟର ସାଙ୍ଗରେ ମୁଁ ଗଲି ଟାଟା ମୁଲକକୁ । ଏଥର ତମ୍ବୁ ପଡ଼ିଲା ଉତ୍କଳ ଏସୋସିଏସନର ପକ୍କା ଘରେ ।

ସେଇଠି ଦିନେ—ବେଳ ସକାଳ ୧୦ଟା ହେବକି କଣ, ଜଣେ ଭେଣ୍ଡିଆ ସାଥିରେ ଟିକି ଝିଅଟି ଧରି ଆସି ପହଞ୍ଚି ଗଲେ । ସମସ୍ତେ ତାଙ୍କୁ ଦେଖି ଭାରି ଖୁସି ହୋଇଗଲେ । କିଏ ହ'ହାତ, କିଏ ଗୋଟିଏ ହାତ —କିଏ ପାଦକୁ, କିଏ ମଥାକୁ ଛୁଇଁ ପ୍ରଣାମ କଲେ, ନମସ୍କାର କଲେ । ଆନନ୍ଦଟା ଟିକିଏ ହେଲୀ ହୋଇଗଲା । ମୁଁ ଆରପଟେ ଥିଲି—କିଏ ଡ଼ାକ ଦେଲା—ପଶି ଆସିଲି—ପହ୍ମିଲେ ଠିକ୍ ଠଉରେଇ ପାରିଲି ନାହିଁ— ହେଲେ ମନେ ପଡ଼ିଗଲା—ଏଇତ ସେଇ···ନାୟକ ବାବୁ—ମନେ ମନେ ସ୍ମୃତି ଖେଳିଗଲା ।

ତୁମର ମୋହର ପରିଚୟ କିଛି
ସେ ତ ନୁହେଁ ଅଜ୍ଞନକ,
ଚରିଖି, ଫିରେଖି ମନ ମାନ ଦେଖି
ହୃଦେ ଦେଇଥିଲ ଡ଼ାକ ।

ଲକ୍ଷ୍ମୀଧର ନାୟକ ସେତେବେଳକୁ ଟାଟା ମୁଲକରେ ଜଣେ ଖୁବ୍ ଜଣା ଶୁଣା ଲୋକ । ଗୁଣ୍ଡିଲା, ନୂଆ ହାଉ, ପୁରୁଣା ହାଉ, ଚହ୍ନାହାଉ ବା ଅଚହ୍ନା ହାଉ—ଟାଟାକୁ ଆସି କଦବା କୋଉ କାମରେ ଖାଲଡ଼ିପରେ ଚଢ଼ିଚଲେ, କବା ଅଇଥାନ ପାଇଁ ହଟହଟା ହେଲେ ସାହା ବୋଲି, ଭରସା ବୋଲି, ନପାରିଲେ ବ ହିମତ ଦବାକୁ ଥିଲେ ଜଣେ—ନାୟକ ବାବୁ ।

ତାଙ୍କ କଥା କହିଲେ ବସିଲେ ପୋଥି ହୋଇଯିବ—ମନେ ପକାଇବାକୁ ଜୀବନକାଳ ଶେଷ ହୋଇଯିବ—ଯାହାଙ୍କ କଥା ସମସ୍ତେ ଜାଣିଲେଣି—ମୋଠୁଁ ବଳକା ବୁଝିପାରିଲେଣି —ତାଙ୍କ ପାରିବା ପଣିଆ —ଖାଲି ମିଆଁ କମେଇବା ପାଇଁ ନୁହେଁ—ଜାତି ଭାଇ ବନ୍ଧୁବରଙ୍କ

ଅଚ୍ଛନ୍ତି—ଅଜଣା, ଅଚହ୍ନା କେହି ଯାହା ଲେଡ଼ିଲେ ଆଉରେ ଆସିବା ସ୍ବଭାବ, କୋଟିକ ଭିତରେ ଗୋଟିଏ ଦେଖା ଯାଏନା ।

ମୋ ସାଥିରେ ଚହ୍ନାହେଲା—ଦୁ'ପଦ କଥା ବି ହେଲା—ହେଲେ ସେଇ ଦଣ୍ଡକର ଦେଖା, କଥାହେବା—ଆଜି ମୋର ଏଇ ଏକାଅଶି ବର୍ଷ ବୟସରେ ବି ମନ ଭିତରେ ଲେଖାରହିଛି ଅଲିଭା ଅକ୍ଷରରେ ।

ମୋ'ଠୁ ସେ ବୟସରେ ସାନ—ହେଲେ ବହୁତ କଥାରେ ତାଙ୍କୁ ମୋଠୁ ବଡ଼ ବୋଲି ମାନେ ।

ତାଙ୍କର ଲେଖା ନାଟକ—ଜମିଦାର, ଧର୍ମପତ୍ନୀ, ଲଲବ୍ଲୁବକରେ ପାର୍ଟ କରି, ନିର୍ଦ୍ଦେଶ ଦେଇ ମୁଁ କମେଇଥିଲି ନାଁଆ । ମୁଁ ଲୋକେ ଜାଣିବାକୁ ନାଟ୍ୟୁଆ—ନାଟ୍ୟକାର ହେଇନି ।

ତାଙ୍କର "ଉଦ୍‌ଭ୍ରାନ୍ତ" ପଢ଼ି ମୋ ମନ ଚହଲି ଯାଇଥିଲା—ସେଦିନ ବି ମନ ମାନିଥିଲା ଏଇ ବହିର ଲେଖକ ମୋଠୁ ଅନେକ ବେଶି ଜାଣିଲା ବାଲା ।

ଏବେବି—ଏଇ ବର୍ଷେ, ଦୁ'ବର୍ଷ ତଳେ ତାଙ୍କର ଜନଣୀ ଘରେ ବସି, ତାଙ୍କର ମୁହଁରୁ ଶୁଣିଲି ତାଙ୍କର ଲେଖା କବିତାର ଆବୃତ୍ତି । ସେ-ଦିନ ବି ମନ ସ୍ବୀକାର କରିଥିଲା—ଲୋକଟି ଗୁଣୀ—ପେଟରେ ରହିଛି ସାହିତ୍ୟର ଅଫୁରନ୍ତ ଖଣି । ଖାଇପିଇ ଘରକୁ ଫେରିଲି ଯେତେବେଳେ, ମନଭିତରେ ଖାଲି ସେଦିନର କଥା ଓ ଘଟଣାଗୁଡ଼ିକ ଗୋଳେଇ ଘାଣ୍ଟି ହେଲା । ଘରକୁ ଆସି ବିଛଣା ଧରିଲି—ମନ ଭିତରେ ଥିଲା ସେଇ ଗୋଟିଏ ହସ ହସ ମୁହଁ—କି ଢଙ୍ଗରେ ସେ କହୁଥିଲେ—କି ଗଳାରେ ସେ ଆବୃତ୍ତି କଲେ—ମୋ ଅଭିନେତା ଜୀବନରେ ସେମିତି ପାରିନାହିଁ । ମନ ସେଇ ଗଳାଟଳର ଗୋଳେଇ ଆଖି ପାତକୁ ଛୁଇଁ ସେମିତି ଗୁହାରି କରି ବସିଲା—ଠାକୁରେ ତୁମେ ତାଙ୍କୁ ଆଇଷ ଦିଅ—ତାଙ୍କ କଲମ ତାଜା ରଖ । ମୋ ପାଇଁ ଆଉଥରେ—ଗୋଟିଏ ଥର ପାଇଁ—ବେଶି କଥା

ଧନକୁ ଆଜ—ତାଙ୍କର ପାଖରେ ବସି—ତାଙ୍କର ଘରେ ଦେମିତ ଶୁଣିବ କବତା ଆବୃତ୍ତି···ଆଜ ଓଡ଼ିଆ ଭାଷାର ସୁରକ୍ଷା ଓ ପ୍ରସାର ପାଇଁ ଅସଲ ବାଟ ।

ଲକ୍ଷ୍ମୀଧର ବାବୁଙ୍କ ସଙ୍ଗେ ମୋର ସଖ୍ୟତା···ନାହିଁ—ମୋର ବନ୍ଧୁତା···ନାହିଁ···ଅଛି···

"ମନ ଦଥା ନଥା ପ୍ରୀତ ବେଢର
ଛତଗ୍ରଟାର ଏ ଘୁଣ୍ଡ ଭଟରେ
ଶତର ରହୁଛ ରୂପର ଗାର ।
ଜଗବନ୍ଧୁ ହେ,
ପାଦରେ ମାଗୁଣି ମୋର
ଦାଇତା ସୁକୃତ ଯଦ ଥାଏ କଛୁ
ତାଙ୍କର ବଢ଼ତ କର ।"



ତଳ ତେଲଙ୍ଗାବଜାର
କଟକ—୧

# ସାହିତ୍ୟିକ ଲକ୍ଷ୍ମୀଧର



ରବିନାରାୟଣ ମହାପାତ୍ର

ତ୍ରିଂଶ ପୂଜା ପରିଷଦ ପକ୍ଷରୁ ସାହିତ୍ୟିକ ଲକ୍ଷ୍ମୀଧର ନାୟକଙ୍କର ଲେଖନୀର ସୁବର୍ଣ୍ଣ ଜୟନ୍ତୀ ଏବେ ପାଳିତ ହେଉଥିବା ଅତ୍ୟନ୍ତ ଆନନ୍ଦର ବିଷୟ । ଆଧୁନିକ ଓଡ଼ିଶାରେ ଜୀବଦ୍ଦଶାରେ ସାହିତ୍ୟିକଙ୍କୁ ସମ୍ମାନିତ କରିଯାଉଥିବା ନିଶ୍ଚିତଭାବେ ଏକ ଗୌରବଜନକ ପରମ୍ପରା । କାରଣ ଯଶୋ-ଦେହରେ କେବଳ ସମ୍ମାନିତ ହେବାର ଆଶା ସାହିତ୍ୟିକ ପ୍ରାଣରେ ପ୍ରତ୍ୱେଦନା ସୃଷ୍ଟି କରି ପାରିବାର ସମ୍ଭାବନା ନାହିଁ ।

ଅର୍ଦ୍ଧ କାଳଧରି ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକଙ୍କ ସାହିତ୍ୟ ସାଧନା ମୁଁ ଦେଖି ଆସିଛି । ସାହିତ୍ୟରେ ଚମତ୍କାର ଅଭିବ୍ୟକ୍ତି ଦେବା ପାଇଁ ତାଙ୍କର ବିପୁଳ ପ୍ରୟାସକୁ ମୁଁ ଶ୍ରଦ୍ଧା ଓ ସମ୍ମାନ କରେ । 'ହାରେ ଦୁର୍ଗା ଦେଶ' ରେ ତାଙ୍କ ଦେଶପ୍ରୀତି ଏବଂ ସମାଜ ଚେତନା ଯେପରି ମର୍ମସ୍ପର୍ଶୀ ହୋଇଛି, 'ସେ' କାବ୍ୟରେ ପତିତା ରମଣୀର ଜୟଗାନ ପାଇଁ ତାଙ୍କର କବିପ୍ରାଣ ସେପରି ଦରଦୀ ହୋଇ ଉଠିଛି । ତାଙ୍କ ଉପନ୍ୟାସ 'ଭୁଲିଲି ସତେ ସଖୀ' ଏବେ ଏକବିଂଶତି ସଂସ୍କରଣରେ ମଧ୍ୟ ଲୋକପ୍ରିୟତା ହରାଇ ନାହିଁ । 'ସେଇ ସୁନ୍ଦରୀ ତରୁଣୀ' ଉପନ୍ୟାସରେ ସମସାମୟିକ ଜୀବନ ସୁନ୍ଦର ଭାବରେ ପ୍ରତିଫଳିତ ।

ସେ ନାଟକ, କବିତା ଆଦି ଲେଖିଥିଲେ ମଧ୍ୟ ପ୍ରାଣର ଅଭିବ୍ୟକ୍ତି ସରଳ ବିରଳସ ଭାବରେ ଉପନ୍ୟାସରେ ବ୍ୟକ୍ତ କରିଛନ୍ତି । ତାଙ୍କ ଗଦ୍ୟ କବିତାଧର୍ମୀ ଏବଂ ପ୍ରାଞ୍ଜଳପ୍ରସ୍ତ । ସେଥିରେ ବାହ୍ୟାଚରଣରେ ହୀନମନ୍ୟତା ଏବଂ ଆଡ଼ମ୍ବର ନାହିଁ; ପ୍ରାଣେ ଛଳମନ୍ଦ, ଆଶା ନିରାଶାର କାହାଣୀ,

ଉପନ୍ୟାସର ଚରିତ୍ର ସବୁ ଧୂଳିଧୂସରିତ ଧରଣୀରୁ ସଂଗୃହୀତ ହୋଇ ଲକ୍ଷ୍ମୀଧରଙ୍କ ଲେଖନୀକୁ ପ୍ରେରଣା-ପୁଷ୍ଟ କରିଛି । ଭଲ ଏବଂ ମନ୍ଦ, ପାପ ଏବଂ ପୁଣ୍ୟର ଊର୍ଦ୍ଧ୍ୱରେ ସେମାନେ ମାନବିକତାର ଜୟଗାନ କରିଛନ୍ତି । ଲକ୍ଷ୍ମୀଧର ବାସ୍ତବରେ ଆମ ପିଢ଼ୀର ଜଣେ ବଳିଷ୍ଠ ସାହିତ୍ୟିକ ।

ଜୀବନର ନାନା ଝଡ଼ ଝଞ୍ଜା ମଧ୍ୟରେ ସେ ସଞ୍ଚୟ କରିଥିବା ଅନୁଭୂତିକୁ ସରଳ ଭାବରେ ବ୍ୟକ୍ତ କରିପାରିଛନ୍ତି । ସେଥିରେ ଅହଙ୍କାର କି ଦର୍ପ ନାହିଁ । ସେ ଯେପରି ଏକ ପାପ ପୁଣ୍ୟର ସଂଗମରେ ସେହି ଚିରକାଳର ମଣିଷକୁ ଖୋଜି ବୁଲିଛନ୍ତି । ସେହି ମଣିଷ ସୁନ୍ଦର ।

ଓଡ଼ିଆ ଉପନ୍ୟାସକୁ ଲୋକପ୍ରିୟ କରିବା ପାଇଁ ସେ ମାସିକ ଉପନ୍ୟାସ ପ୍ରକାଶନ ଆରମ୍ଭ କଲେ । କିନ୍ତୁ କୌଣସି ମତ ଏବଂ ନିୟମରେ ଛନ୍ଦିହୋଇ ରହିବା ତାଙ୍କ ରୀତି ବିରୋଧୀ । ସେ ସ୍ରଷ୍ଟା, ବ୍ୟବସାୟୀ ନୁହନ୍ତି ।

ବ୍ୟକ୍ତିଗତ ଭାବରେ ମୁଁ ତାଙ୍କୁ କବି ଭାବରେ ଶ୍ରଦ୍ଧାକରେ, 'ସେ' କାବ୍ୟରେ ସେହି ନାୟିକାମାନେ ଯେ ଅବସ୍ଥାଚକ୍ରରେ ରୂପଜୀବୀ—ତାହାର ଜୀବନର କରୁଣ ମର୍ମଭେଦୀ କାହାଣୀ ଏବେ ମଧ୍ୟ ମୋ ମନରେ ତରଙ୍ଗ ସୃଷ୍ଟି କରେ । ସମ୍ଭୋଗର ଅବସରରେ ନର, ନାରୀଙ୍କର ସମକକ୍ଷୀ ଦୃଷ୍ଟିରୁ ଏହି ସମ୍ଭୋଗ 'ପାପ' ପଦବାଚ୍ୟ ହୋଇଗଲେ, ଉଭୟେ ଦୋଷୀ ହେବାର କଥା । ମାତ୍ର ଆମ ସମାଜରେ ନାରୀହିଁ ଲାଞ୍ଛିତା, ଅପମାନିତା ଏବଂ ସମାଜଚ୍ୟୁତା । ଏହି ସାମାଜିକ ଅବିଚାରର ବିରୁଦ୍ଧରେ ଦରଦୀକବି ଲକ୍ଷ୍ମୀଧର ତାଙ୍କ ହୃଦୟକୁ ଖୋଲି ଦେଇଛନ୍ତି । ଚିରକାଳର ପ୍ରେମିକା ରୂପବତୀ ନାରୀର ଜୟଗାନରେ ମତ୍ତ ହୋଇ ସେ ଉଦାରବାଦୀ ପ୍ରେମିକର ହୃଦୟରେ ସବୁ ପରିସ୍ଥିତିକୁ ସ୍ୱୀକାର କରିବା ତାଙ୍କ ପ୍ରତିଭାର ଏକ ବଳିଷ୍ଠ ଦିଗ୍‌ଦର୍ଶନ ।

କବି-ବନ୍ଧୁ ମୁରଲୀ ଜେନା ଏବେ ସଂଗଠିତ ଭାବରେ ପ୍ରତିଭା ପୂଜା ପାଇଁ ଉଦ୍ୟମ କରୁଛନ୍ତି ଏବଂ ବହୁ ସାହିତ୍ୟିକଙ୍କର ଜୟନ୍ତୀ

ପାକୁଛନ୍ତି । ଏଥିରେ ଆନନ୍ଦିତ ହେବାର ଅଛି । ସାହିତ୍ୟ ସଂଗଠନରେ ସାହିତ୍ୟ ସୃଷ୍ଟି ହୁଏ ନାହିଁ, ମାତ୍ର ସାହିତ୍ୟ ସ୍ରଷ୍ଟାମାନଙ୍କ ମଧ୍ୟରେ ସଂପ୍ରୀତି ସୃଷ୍ଟି ହୁଏ । ଏହି ସଂପ୍ରୀତି ସାହିତ୍ୟ କ୍ଷେତ୍ରକୁ ଋଦ୍ଧିମନ୍ତ କରିଥାଏ ।

ଏବେ ଲକ୍ଷ୍ମୀଧର ନାୟକଙ୍କର ଲେଖାର 'ସୁବର୍ଣ୍ଣ ଜୟନ୍ତୀ' ଉତ୍ସବ ପାଳିତ ହେଉଛି । ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହା ଏକ ଅଭିନବ ପ୍ରୟାସ । ଏହି ପ୍ରୟାସ ପାଇଁ ମୁଁ ଜେନାଜୀଙ୍କୁ ଧନ୍ୟବାଦ ଜଣାଉଛି ।

ମୁଁ କବି, ନାଟ୍ୟକାର, ଔପନ୍ୟାସିକ ଲକ୍ଷ୍ମୀଧର ନାୟକଙ୍କୁ ତାଙ୍କ ଜୀବନର ଏ ଆନନ୍ଦମୁଖର ଅବସରରେ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି । ବନ୍ଦେ ଉତ୍କଳ ଜନନୀ ।



ଧ୍ରୁବାହାଟ
କଟକ—୧

# ଚରିତ୍ର ହୀନାର ଚିଠି



ବ୍ରଜମୋହନ ମହାନ୍ତ

ଚିଠି, ସତରେ ଖଣ୍ଡେ ଚିଠି, ପୁଣି ଗୋଟିଏ ଚରିତ୍ରହୀନାର ଚିଠି । କିଏ ଏହି ଚିଠିର ସ୍ରଷ୍ଟା ? ସେ ହେଉଛନ୍ତି ଆମର ଅତିପ୍ରିୟ—ଶ୍ରୀ ଲକ୍ଷ୍ମୀଧର ନାୟକ । ଏହାର ନାୟିକାକୁ ସେ ଦେଇଛନ୍ତି ଏକ ସ୍ୱତନ୍ତ୍ର ରୂପ । ଚରିତ୍ର ହୀନାର ଜନକ ଶ୍ରୀ ନାୟକ ହୋଇପାରନ୍ତି, କିନ୍ତୁ ଚିଠିର ଲେଖିକା ହେଉଛନ୍ତି ଆଶାମଣି । ଚିଠି ଖଣ୍ଡିକ ଆସିଛି ପୁରୀର ସବୁଜ ନିବାସରୁ ଶ୍ରୀ କମଳ ବାବୁଙ୍କ ପାଖକୁ ।

ସତରେ କିନ୍ତୁ ଏଇଟି ଗୋଟିଏ ଚିଠି ହେଲେ ମଧ୍ୟ ଏହା ଏକ ସଫଳ ଉପନ୍ୟାସ । ଗୋଟିଏ ନାରୀର ବିଦଗ୍ଧ ଜୀବନ-କାହାଣୀ । ଭାଷା ସରଳ, ତରଳ, ରସାଳ । ଚିଠିର ଆରମ୍ଭରେ ନାୟିକା ଲେଖିଛନ୍ତି :

"କମଳ ବାବୁ ! ଆଜି ତୁମ ଚିଠି ପାଇଲି । ତ' ଦିନ ହେଲା ପୁରୀ ଆସିଛି । ବାଲେଶ୍ୱର ଠିକଣାରେ ତୁମେ ଯେଉଁ ଚିଠି ଦେଇଥିଲ ତାହା ଦଶବାରଦିନ ହେଲା ବୁଲି ବୁଲି ଆସି ମୋ ପାଖରେ ପହଞ୍ଚିଲା । × ×"

ଠିକ ଚିଠି ନର ଚିଠି ଖଣ୍ଡିକ । ହେଲେ ଏଇଟି ଗୋଟିଏ ଉପନ୍ୟାସ । ଏଇ ଚିଠିରୁ ଜଣାଯାଏ ସେ ଆଶାମଣିର ଥିଲେ ଆଉ ଦୁଇଟି ଭଉଣୀ । ଆଶା ଯଦିଓ ବିବାହିତା, ତଥାପି କୁ-ଶିକ୍ଷା ଓ କୁ-ସଂସର୍ଗରେ ପଡ଼ି ସେ କପଟର ଚଳକୁ ଗୋଡ଼ ଖସାଇ ଦେଇଥିଲେ, ତାହାହିଁ ଏ ଚିଠିର ବିଷୟବସ୍ତୁ । ବନା ଭଇନାଙ୍କ କଥା, ସୁଧୀରଙ୍କ କଥା ଓ ସ୍ୱାମୀ ଶରତଙ୍କ କଥା ଚିଠିଟିରେ ମଧ୍ୟ ବର୍ଣ୍ଣିତ ହୋଇଛି ।

ପରିସ୍ଥିତିର ଚାପରେ ଓ ଦ୍ୱନ୍ଦ୍ୱର ଜ୍ୱାଳାରେ କେତେ ଗୋଟିଏ ବିବାହିତା ସ୍ତ୍ରୀ ଅସତୀ ହୋଇପାରେ, ତାହାହିଁ ଔପନ୍ୟାସିକ ବଡ଼

ଚତୁରତାର ସହ ବର୍ଣ୍ଣନା କରି ଔପନ୍ୟାସିକ ଶୈଳୀର ଏକ ଗୁରୁତ୍ୱ-ପୂର୍ଣ୍ଣ ପରିବର୍ତ୍ତନ ଆଣିଛନ୍ତି । ଅଧିକନ୍ତୁ ଉପନ୍ୟାସର ନାମ 'ଚରିତ୍ରହୀନାର ଚିଠି' ହେଲେ ମଧ୍ୟ ସମାଜ କଲ୍ୟାଣର ବିଶେଷ ଇଙ୍ଗିତ ଏଥିରେ ଦେଖି-ବାକୁ ମିଳେ ।

ସାମାଜିକ ଜୀବନରେ ପରିସ୍ଥିତିର ତାଡ଼ନା ଅନେକ ସମୟରେ ନାରୀର ସର୍ବସ୍ୱ ଲୁଣ୍ଠନ କରି ନେଇଥାଏ । ଫଳରେ ନାରୀ ହୁଏ ଅସତୀ, ଭ୍ରଷ୍ଟା, ବ୍ୟଭିଚାରିଣୀ । କିନ୍ତୁ ପରବର୍ତ୍ତୀ ଜୀବନରେ ଯେତେବେଳେ ସେ ତାର ଅତୀତକୁ ମନ୍ଥନ କରେ, ସେତେବେଳେ ନିଜେ ନିଜର ଅପରାଧ ହୃଦୟଙ୍ଗମ କରି ଅନ୍ତର୍ଦ୍ଦହନରେ ଦଗ୍ଧୀଭୂତା ହୁଏ । ଆଉ···ସମଗ୍ର ଭବିଷ୍ୟତ ତାର ସେହି ଦହନ ଜ୍ୱାଳାରେ ନଷ୍ଟଭ୍ରଷ୍ଟ ହୋଇଯାଏ ।

ଏପରି ନାରୀ ହୁଏତ ସମାଜରେ ବହୁତ ଅଛନ୍ତି । ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଜୀବନକୁ ଯଦି ଆଲୋକପାତ କରାଯାଏ, ତେବେ ହୁଏତ ଅନେକ ହେବେ ଧର୍ଷିତା, ନିନ୍ଦିତା, ଅପମାନିତା । କିନ୍ତୁ ବିବାଦଭୟରେ ଅନେକ କ୍ଷେତ୍ରରେ ଏ ଗୁପ୍ତ ସତ୍ୟର ପରିପ୍ରକାଶ ହୁଏ ନାହିଁ । ଫଳରେ ସ୍ୱାମୀ ଦୃଷ୍ଟିରେ ସ୍ତ୍ରୀ ତାର ଏକାନ୍ତ ଅନୁଗତ ଓ ସତୀତ୍ୱର ପରାକାଷ୍ଠାରେ ସେ ଏକ ମହୀୟସୀ ମହିଳା । ହୁଏତ ଖୁବ୍ କମ୍ କ୍ଷେତ୍ରରେ ସ୍ୱାମୀ, ସ୍ତ୍ରୀକୁ ବା ସ୍ତ୍ରୀ, ସ୍ୱାମୀକୁ ଚରିତ୍ର ଦୋଷରେ ଦୋଷୀ ସାବ୍ୟସ୍ତ କରିଥାଆନ୍ତି ।

କିନ୍ତୁ ଯଦି ସ୍ୱାମୀ, ସ୍ତ୍ରୀର ବା ସ୍ତ୍ରୀ, ସ୍ୱାମୀର ଅତୀତ ଆବର୍ଜନା ଦେଖିପାରନ୍ତି ଥାଆନ୍ତେ, ତେବେ ହୁଏତ ବହୁ ସାମାଜିକ ବିଶୃଙ୍ଖଳାରେ ଏ ପୃଥିବୀ ଅଶାନ୍ତ ହୋଇ ଉଠନ୍ତା ।

···ଠିକ୍ ଏହିପରି ଏକ ନାରୀର ଚରିତ୍ର ବିଶ୍ଳେଷଣ କରିବାକୁ ଯାଇ ଶ୍ରୀ ନାୟକ ହୁଏତ ସମଗ୍ର ନାରୀ ଜାତିର ସହୃଦୟତା ହାସଲ କରି ପାରିଛନ୍ତି ।



ସୁଜାତା ଭବନ
ରାଜା ବଗିଚା
କଟକ

# "କର୍ମଯୋଗୀ"
# ଶ୍ରୀ ନାୟକ



ନବକିଶୋର ଦାସ

୧୯୭୩ ମସିହା କଥା । ସର୍ବଭାରତୀୟ ସ୍ତରରେ ହେବାକୁ ଯାଉଥିବା ଗୋଟିଏ ପ୍ରତିଯୋଗିତା ପାଇଁ ମୋ ଦ୍ୱାରା ଲିଖିତ ଏକ ହିନ୍ଦୀ କାବ୍ୟ ବନ୍ଧ ପଠାଇବାର କଥା ଥିଲା । ନିର୍ଦ୍ଧାରିତ ନିୟମ ଅନୁସାରେ ସ୍ଥାନୀୟ ସାହିତ୍ୟ ସଂସ୍ଥାର ସ୍ୱୀକୃତିପ୍ରାପ୍ତ ସଭାପତିଙ୍କର ସ୍ୱାକ୍ଷର ଏବଂ ମୋହର ଆବଶ୍ୟକ ହେଲା । ମୁଁ ଲକ୍ଷ୍ମୀଧର ବାବୁଙ୍କ ନାମ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'ର ସଭାପତି ଭାବେ ପୂର୍ବରୁ ଶୁଣିଥିଲି । ସେ ସମୟରେ ତାଙ୍କର ଏଠାରେ ଏକ ପ୍ରେସ ମଧ୍ୟ ଥିଲା । ତାଙ୍କ ପାଖରେ ପହଞ୍ଚିଲି । ସେ ବାହାରକୁ କୌଣସି ଏକ କାର୍ଯ୍ୟରେ ଯିବାପାଇଁ ବାହାରିଥିଲେ । ମୁଁ ତାଙ୍କୁ ନିଜର କାର୍ଯ୍ୟ ବିଷୟରେ ଜଣାଇଲି । ସେ ତତ୍‌କ୍ଷଣାତ୍ ସମସ୍ତ କାର୍ଯ୍ୟ ଛାଡ଼ି ମୋ କାର୍ଯ୍ୟଟିକୁ ଶେଷ କଲେ । କେବଳ ସେତିକି ନୁହେଁ, ମୋର ସ୍ପଷ୍ଟ ମନେଅଛି, ମୁଁ ଜଣେ ଖାଣ୍ଟି ଓଡ଼ିଆ ହୋଇ ହିନ୍ଦୀରେ କବିତା ପୁସ୍ତକ ପ୍ରଣୟନ କରିଛି ଏ କଥା ଶୁଣି, ମତେ ପ୍ରଶଂସା ଓ ଉତ୍ସାହ ଦେବାରେ ଶତମୁଖ ହୋଇ ଉଠିଲେ ।

ଏହାପରେ ୩ ବର୍ଷ ବିତିଗଲା । ମୁଁ ଏକ ହିନ୍ଦୀ ନାଟକ 'ମୂର୍ଝାଇକଲି'ର ରିହର୍ସେଲ୍‌ରେ ଲାଗିପଡ଼ିଥାଏ । ହଠାତ୍ ମୋ ଘରେ ଆସି ସେ ଉପସ୍ଥିତ ହେଲେ । ହିନ୍ଦୀ ଭାଷାରେ ମୋର ଦକ୍ଷତା ଦେଖି ଖୁବ୍ ଆନନ୍ଦିତ ହେଲେ । ତିନି ଚାରିଦିନ ମଧ୍ୟ ସେ ପୁନର୍ବାର ଆସିଲେ ଏବଂ ତାଙ୍କ ରଚିତ କାବ୍ୟ ସଂକଳନ 'ଖୋଲା ଝର୍କା'ର କେତୋଟି କବିତା ଆବୃତ୍ତି କଲେ । ମୁଁ ମନ୍ତ୍ରମୁଗ୍ଧ ହୋଇ ବସି ରହିଲି । ଏହି କାବ୍ୟ ସଂକଳନକୁ ହିନ୍ଦୀରେ ଅନୁବାଦ କରିବାକୁ ମୁଁ ଏବେ ଚେଷ୍ଟା କରୁଛି ।

ତାଙ୍କ ପ୍ରେରଣାରେ ମୁଁ ଓଡ଼ିଆ କବିତା ଲେଖିବାକୁ ଆରମ୍ଭ କଲି । ହିନ୍ଦୀରେ ଲେଖାଲେଖି କରିବା ଏଣିକି ପ୍ରାୟ ବନ୍ଦ କରିଛି । ସେ ମତେ ଓଡ଼ିଆରେ ଜଣେ ବିଶିଷ୍ଟ କବିଭାବରେ ଦେଖିବାକୁ ଇଚ୍ଛା କରନ୍ତି । ସେ କହନ୍ତି—ଆଗେ ନିଜ ମାତୃଭାଷାର କବି ହୁଅ, ପରେ ହିନ୍ଦୀ ଭାଷାରେ ସର୍ବଭାରତୀୟ ସ୍ତରରେ କବି ହେବ । ଜୀବନରେ ବହୁ କବି, ଲେଖକ,

କଳାକାରଙ୍କ ସମ୍ପର୍କରେ ଆସିଛି, କିନ୍ତୁ ଲକ୍ଷ୍ମୀଧର ବାବୁଙ୍କ ସ୍ଥାନ ମୋ ନିକଟରେ ସର୍ବୋଚ୍ଚ ହୋଇ ରହିଛି । ଏହାର ଏକମାତ୍ର କାରଣ ତାଙ୍କର ନାଗରିକତାବାଦୀ ମନୋଭାବର ଆଦର୍ଶ । ସେ କହନ୍ତି, ଯେ ନିଜେ ବଡ଼ ହେବାକୁ ଚାହେଁ ସେ ଅନ୍ୟକୁ ବଡ଼ କରିବା ପାଇଁ ଆଗେଇ ଆସିବା ଉଚିତ୍ । ଏହି କଥାଟିକୁ ସାରାଜୀବନ ଦେଇ ସେ କାର୍ଯ୍ୟକାରୀ କରୁଛନ୍ତି ।

ଲକ୍ଷ୍ମୀଧର ବାବୁ ସାହିତ୍ୟ ହେଉ ବା ସଙ୍ଗୀତ ହେଉ, ପ୍ରତିଭା-ସମ୍ପନ୍ନ ଲୋକଟିଏ ଦେଖିଲେ ତାକୁ ସାହାଯ୍ୟ କରିବା ପାଇଁ ମୁକ୍ତ ପ୍ରାଣରେ ଆଗେଇ ଆସନ୍ତି । ଏହା ମୋର ବ୍ୟକ୍ତିଗତ ଅନୁଭବ । ଯେ ତାଙ୍କ ସାନ୍ନିଧ୍ୟ ଲାଭ କରିଛି, ସେ କଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସାଫଲ୍ୟ ଲାଭ କରିବାରେ ଆତ୍ମସନ୍ତୋଷ ଲାଭ କରିଛି ।

'ଜୀବନ ଓ ଜଗତକୁ ସମଗ୍ରତାରେ ଜାଣ' ଏହି ଦର୍ଶନ ତାଙ୍କ ବ୍ୟକ୍ତିଗତ ଜୀବନରେ ପ୍ରତିଫଳିତ ହୋଇଛି । ପ୍ରତ୍ୟେକ ସୂକ୍ଷ୍ମ ଲଳିତ-କଳାର ସେ ଜଣେ ଏକନିଷ୍ଠ ସାଧକ । ଅନ୍ୟ ଦିଗରେ ମଧ୍ୟ ନିଃସ୍ୱ, ନିଃସ-ହାୟ ମାନଙ୍କ ଉପରେ କାହାର ଅନ୍ୟାୟ ବା ଅତ୍ୟାଚାର ଦେଖିଲେ, ସେ ତାର ପ୍ରତିବାଦ କରିବାକୁ ପଛାନ୍ତି ନାହିଁ ।

ତାଙ୍କ ଜୀବନ ସ୍ୱତନ୍ତ୍ର । ସେ ଏକ ଆଶ୍ଚର୍ଯ୍ୟ ବ୍ୟକ୍ତିତ୍ୱ । କୃତ୍ରିମତାଠାରୁ (Hypocrisy) ବହୁ ଦୂରରେ । ଅତ୍ୟନ୍ତ ସହଜ, ସରଳ, ସୁପୁରୁଷ ।

ତାଙ୍କ ଗୀତ—ସଂଗୀତରେ ଯେ କେହି ମଧ୍ୟ ଆକୃଷ୍ଟ ଏବଂ ଆତ୍ମବିଭୋର ହେବେ । ସେ ଏକ ମରମୀ ଦରଦୀ କବି ଓ ସୁଗାୟକ ମଧ୍ୟ । ତାଙ୍କୁ ଦଶବର୍ଷ ଧରି ଜାଣିଥିଲେ ମଧ୍ୟ ତାଙ୍କର କବି ହୃଦୟର ଗଭୀରତା ମାପିବା ମୋ ପକ୍ଷରେ ଅସମ୍ଭବ ।

ସେ ଯେତିକି ଚଞ୍ଚଳ, ସେତିକି ସ୍ଥିର ଅଉ ଶାନ୍ତ । ତାଙ୍କ ସାନ୍ନିଧ୍ୟ ଭିତରେ ମୁଁ ପାଏ ସବୁଜ ପ୍ରକୃତିର ସ୍ପର୍ଶ । ସେ ତାଙ୍କ ଘର ପାଖର ପରିବେଶକୁ କଥାର ଅଜସ୍ରତାରେ, ହସର ଉଚ୍ଛୁଳିତାରେ, ମଳୟ ପରି ସୁରଭି-ମୂର୍ଚ୍ଛିତ କରି ତୋଳନ୍ତି ।

ସେ ଏକାଧାରରେ ଜଣେ ସ୍ୱପ୍ନଜୀବି କବି ଏବଂ ଏକନିଷ୍ଠ କର୍ମଯୋଗୀ ।

ଏଚ୍ଚିନୋ ଷ୍ଟାଫ୍ କ୍ୱାର୍ଟର, ଏଚ୍/୭, ନଂ. ୭
ଗୋଲମୁରି, ଜାମସେଦ୍‌ପୁର

# "ସିଂହଭୂମିର ଗୋପବନ୍ଧୁ" : ଏକ ଦୃଷ୍ଟିପାତ

●

ଧରଣୀଧର ବେହେରା

"ଥରେ ପଢ଼ିଥିଲି ମନ ହେଉଛି କୌଣସି ଜଣେ ଇଂରେଜୀ ଲେଖକର ଗୋଟିଏ ଧାଡ଼ି Under an English Sky ! × × ଭଲ ପାଇବାର ଭାଷା ତ ସବୁଦିନ ଏକଭଳିଆ । ଏଇ ଦୃଷ୍ଟିରୁ ମୁଁ ବି ଯଦି ଗୋପବନ୍ଧୁଙ୍କୁ ଖାସ୍ ସିଂହଭୂମିର ବୋଲି କହି ପକାଇଥାଏ, କ୍ଷତି କ'ଣ ? × × × ଆକାଶ ଅପରିସୀମ ବୋଲି ତ ଗୋଟିଏ ମୁଠାରେ ତାକୁ ଧରି ରଖିବାର ଏମିତି ପ୍ରୟାସ । ଗୋପବନ୍ଧୁ ଯାହା ଉତ୍କଳର ବୋଲି ତ, ଏ ଲେଖକ ତାଙ୍କୁ ଗୋଟିଏ ଜିଲ୍ଲାର ଚୌହଦି ଭିତରେ ଆବଦ୍ଧ କରି ନିଜର ବୋଲି ଜାବୁଡ଼ି ଧରି ନାଚିବାକୁ ଏମିତି ଅସ୍ଥିର !!"

ବାସ୍ତବିକ ଲବ୍ଧ-ପ୍ରତିଷ୍ଠ ସାହିତ୍ୟିକ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ 'ସିଂହଭୂମିର ଗୋପବନ୍ଧୁ' ପୁସ୍ତକରେ 'ଦାଦେ'ଙ୍କୁ ନିଜର ବୋଲି ଜାବୁଡ଼ି ଧରି ଅସ୍ଥିର ଭାବରେ ନାଚିବାକୁ ଚେଷ୍ଟା କରିଛନ୍ତି ନଅଟୋଟି ପରିଚ୍ଛେଦ ମଧ୍ୟରେ । 'ମୋ ସ୍ମୃତିରେ ଏବେ ବି ଜାଗ୍ରତ' ଠାରୁ 'ଶ୍ରଦ୍ଧାଞ୍ଜଳି' ପର୍ଯ୍ୟନ୍ତ ନାନା ଘଟଣାର ଉତ୍ଥାନ ପତନ ଭିତରେ କପର 'ଉତ୍କଳମଣି'ଙ୍କ ସାଧନାର ଶତସ୍ମୃତ ସଙ୍କେତ ବହନ କରିଛି 'ସିଂହଭୂମିର ହର୍‌ବଲସ୍' ସେ କଥା ପ୍ରମାଣ କରାଇବାକୁ ଲେଖକଙ୍କ ପ୍ରୟାସ ଅପ୍ରତିହତ ।

ସେଦିନ ବଳଭଦ୍ର ନାୟକଙ୍କ ଘରେ ପିଢ଼ାଉପରେ ବସି ଭୋଜନ କରିବାକୁ ଯାଉଥିବା ଅତିଥି ଗୋପବନ୍ଧୁ ଏବଂ ଅଣ୍ଡ୍ରୁଜ ସାହେବଙ୍କ ସହ ନାଥୁକନା ଥାଳପାଖରେ ବସି ଏଗାର, ବାର ବର୍ଷର ପିଲାର ନଡ଼ିଆ ଆଉ ଗୁଡ଼ ଚକଟା ପୂର ଦିଆ ଖରି ଚୁଲିରେ ତିଆରି ଏଣ୍ଡୁରି ପିଠା, ସରୁ ଚାଉଳ, ପାଣି କଖାରୁ ବଡ଼ି ଆଉ ନଡ଼ିଆ ପଡ଼ି ଦେଇ ହୋଇଥିବା ଚକାଣ୍ଟି ଓ କ୍ଷୀର ଖିଆ, ଏବଂ ଭୋଜନ ପରେ ଗୋପବନ୍ଧୁଙ୍କ ତୃପ୍ତ ତୃଣ୍ଡି-ବାଣୀ ସହ ଦେଖାଇଥିବା ମହାନୁଭବତା ଏବେ ମଧ୍ୟ ଲେଖକଙ୍କ ସ୍ମୃତିରେ ଜାଗ୍ରତ । ସେହି ସ୍ମୃତି-ରୂପକ ଅମୂଲ୍ୟ ସମ୍ପଦକୁ କେତୋଟି ପରିଚ୍ଛେଦ ମଧ୍ୟରେ ଲେଖି ୧୯୭୬ ମସିହାରେ ଅନୁଷ୍ଠିତ ହେଉଥିବା ଗୋପବନ୍ଧୁ ଜନ୍ମ-ଶତବାର୍ଷିକୀରେ ପ୍ରକାଶ କରିବା ଥିଲା ଲେଖକଙ୍କ ଇଚ୍ଛା । ଶେଷରେ ଲେଖକଙ୍କ ଇଚ୍ଛା ପୂର୍ଣ୍ଣ ହେଲା । ମାତ୍ର 'କଥା ଅନେକ

ଚଳିଗଲା, ଲେଖିହେଲା ନାଇ, ଅଣ୍ଟଣା ଅନେକ ଛପିଗଲା, ଜାଣିହେଲା ନାହିଁ । ତଥାପି ସିଂହଭୂମିରେ ଅଗ୍ରେନ୍ତ ତାଙ୍କ (ଗୋପବନ୍ଧୁଙ୍କ) କାହାଣୀ, ଆଜି ସେ ମାଟିରେ ସେ ହେଉଛନ୍ତି ଅମୃତର ସନ୍ତାନ ।

ଜୀବନୀ ଓ ସ୍ମୃତି-ମୂଳକ ତଥ୍ୟ ଗ୍ରନ୍ଥ ହେଁ 'ସିଂହଭୂମିର ଗୋପବନ୍ଧୁ' । ଏଥିରେ ତଥ୍ୟ ଅପେକ୍ଷା ଆବେଗ ବିବରଣୀ ଅଧିକ । ଏପରିକି କେତେକ ସ୍ଥଳରେ ପ୍ରଦତ୍ତ ତଥ୍ୟଗୁଡ଼ିକର ଯଥାର୍ଥତା ରକ୍ଷିତ ହୋଇନାହିଁ । ଲେଖକଙ୍କ ସ୍ୱୀକାରୋକ୍ତି ମଧ୍ୟ ଏ ପରିପ୍ରେକ୍ଷୀରେ ବର୍ଣ୍ଣନୀୟ— 'ବର୍ଷ, ମାସ, ତାରିଖର ଯଥାର୍ଥତା ଦୃଢ଼ତା ରଖିପାରିନି ଏ ଲେଖାରେ, କାରଣ ସିଂହଭୂମିକୁ ଗୋପବନ୍ଧୁ ନିର୍ଦ୍ଧାରିତଭାବରେ କେବେ ଆସିଥିଲେ, କୋଉଠି କ'ଣ କରିଥିଲେ ତାର ଧାରାବାହିକ ବିବରଣୀ କିଛି ନାହିଁ । ପୁଣି କେବେ ଗଲେ ଶେଷ ବିଦାୟ ନେଇ, ସେ କଥା ବି କେହି କହିପାରୁ-ନାହାନ୍ତି । ଘଟଣା ପ୍ରବାହର ଆଲୋଚନାରୁ ଏଠୁ ସେଠୁ ଯାହା ଯେମିତି ପାଇଛି, ତାକୁଇ ନେଇ ଏ ଲେଖାର ଅବତାରଣା । ଏଥିରେ ତଥ୍ୟ ଅପେକ୍ଷା ଆବେଗ ବେଶି—ଏତିକ ସ୍ୱୀକାର କରିବାରେ ମୋର କିଛି ଦ୍ୱିଧା ନାହିଁ" । ତଥାପି ଏକ ନିର୍ଦ୍ଦିଷ୍ଟ ଜିଲ୍ଲା ସିଂହଭୂମି ପାଇଁ ପଣ୍ଡିତ ଦାସଙ୍କର ଯେ କି ପ୍ରକାର ଅବଦାନ ଥିଲା, ସେ କଥା ଆମ ସାହିତ୍ୟରେ କାଁ ଭାଁ ଆଲୋଚନା ହୋଇଥିଲା ବେଳେ ଗଦ୍ୟକାର ଶ୍ରୀ ନାୟକ ଅନେକ ତଥ୍ୟ ସଂଗ୍ରହ କରି ସିଂହଭୂମିରେ ଗୋପବନ୍ଧୁଙ୍କ 'ପ୍ରଚାରର ଆରମ୍ଭ ଓ ବିକାଶ' ଏବଂ 'ଏଠି ସମସ୍ତର ପ୍ରତିଟି ମୁହୂର୍ତ୍ତ ତାଙ୍କ ସାର୍ଥକ ଜନ୍ମର ଶିହରଣରେ ସ୍ପନ୍ଦମାନ' ଏ କଥା ପ୍ରମାଣ କରାଇ ଆମ ଆଗରେ ଏକ ଅନାଲୋକିତ ଦିଗକୁ ଆଲୋକିତ କରାଇଛନ୍ତି ।

ଓଡ଼ିଶା ପାଇଁ, ଓଡ଼ିଆଙ୍କ ପାଇଁ କିଛି ନା କିଛି କରିବେ—ଏହା ଥିଲା ଜନନେ କୁଳବୃଦ୍ଧ ମଧୁସୂଦନ, ଜଗବନ୍ଧୁ ସିଂହ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ ପ୍ରମୁଖଙ୍କ ଲକ୍ଷ୍ୟ । ମାତ୍ର ପଣ୍ଡିତ ଗୋପବନ୍ଧୁଙ୍କର ଲକ୍ଷ୍ୟଥିଲା ଓଡ଼ିଶାର ସାଧାରଣ ଜୀବନ ଭିତରୁ ବିଶିଷ୍ଟ ଏକ ଓଡ଼ିଆ ବ୍ୟକ୍ତିତ୍ୱକୁ କାଟିଆଣି ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠିତ କରାଇବା । ଏଣୁ ନୂଆଁ, ଅନୂଆଁ, ସାନବଡ଼, ନିର୍ବିଶେଷରେ ସମସ୍ତେ ଥିଲେ ତାଙ୍କ ଆପଣାର । କେତେବେଳେ ଦୁଇଟା କଠିଜ ମାଡ଼ି ପୁଣି ବା କେତେବେଳେ ଖାଲି ପାଦରେ କାଦୁଅ ପଙ୍କ ଭିତରେ ଗାଁ ଗାଁ ବୁଲି ସେ ଲୋକ, ଭିକାରି

ସମସ୍ତଙ୍କ ଦୁଃଖ ଦୁର୍ଦ୍ଦଶା ବୁଝୁଥିଲେ । ତାତିପଟା ଖରା ବା ଝଡ ବର୍ଷାକୁ ତାଙ୍କର ଖାତିର ନ ଥିଲା । ସାରା ଓଡ଼ିଶା ବୁଲି ବୁଲିବା ଥିଲା ତାଙ୍କର ଅଭ୍ୟାସ । ଲେଖକଙ୍କ ଭାଷାରେ କହିଲେ, "କଷ୍ଟ ପାଉଛନ୍ତି ଅନେକ । ପାଦରେ କଣ୍ଟା ପଶିଯାଇ ରକ୍ତ ବାହାରୁଛି, କିନ୍ତୁ ବାଟ ଚଲା ବନ୍ଦ ହୋଇ ନାହିଁ । 'ମିଶୁ ମୋର ଦେହ ଏ ଦେଶ ମାଟିରେ'—ଏଇ ଆଦର୍ଶ ନେଇ ଦୁରଦୁରନ୍ତ ପଥ-ଯାତ୍ରୀ ସେ, ସବୁଦିନ ।" ବାସ୍ତବରେ ଅସରନ୍ତି ପଥରେ ପାଦ ଦେଇ ମଧ୍ୟ ଗୋପବନ୍ଧୁଙ୍କର ଚିନ୍ତା ଥିଲା ଓଡ଼ିଆବାସୀଙ୍କ ପାଇଁ । ନିଜ ମାତୃଭାଷା 'ଓଡ଼ିଆ' ପାଇଁ ।

ପୁସ୍ତକଟିରେ ଲେଖକଙ୍କ ଲେଖନୀ ଗୋପବନ୍ଧୁଙ୍କ ଜୀବନର ସମସ୍ତ ଦିଗକୁ ଅଳ୍ପ ବହୁତେ ଛୁଇଁଥିଲେ ମଧ୍ୟ ସମସ୍ତ ଭିତ୍ତି କରିଛି ଜଙ୍ଗଲାଞ୍ଚଳ ସିଂହଭୂମିକୁ । ସିଂହଭୂମିରେ ତାଙ୍କ ଅଙ୍ଗନିଭା ସୁଖ ଦୁଃଖ କାହାଣୀକୁ । ଅନେକ ସ୍ମୃତି, ଅନେକ ତଥ୍ୟ, ଅନେକ ବିବରଣୀ ତଥା ଅନେକ ସାକ୍ଷାତକାର ଭିତରେ ଲେଖକଙ୍କ ଇଚ୍ଛାର ଅନ୍ତର୍ଗତ । ମାତ୍ର ସମସ୍ତ ଭିତରେ ଆମେ ଦେଖୁଁ ଔପନ୍ୟାସିକ ଜୀବନ୍ତ ନାୟକଙ୍କୁ । 'ସିଂହଭୂମିର ଗୋପବନ୍ଧୁ' ଏକ ଜୀବନୀ ସ୍ମୃତିମୂଳକ ଗ୍ରନ୍ଥ ହୋଇଥିଲେ ମଧ୍ୟ, ଏଥିରେ ଜୀବନୀ ଗ୍ରନ୍ଥ ପରି କ୍ଳାନ୍ତିକର ବର୍ଣ୍ଣନା ଓ ରଙ୍ଗହୀନ ଭାଷା ନାହିଁ । ଏହାର ଔପନ୍ୟାସିକ ଶୈଳୀ, କାବ୍ୟିକ ଭାଷା ଓ ପ୍ରବାହମୟ ବର୍ଣ୍ଣନା ଏହାକୁ ଏକ ଅପୂର୍ବ ମନୋରଞ୍ଜନ ସାହିତ୍ୟ ସୃଷ୍ଟିରେ ରୂପାୟିତ କରିଛି । ସାବଲୀଳ କଥକତାରି ଭଙ୍ଗୀ ଏ ଗ୍ରନ୍ଥର ଏକ ବିଶେଷ ଆକର୍ଷଣ । କହିବା କଥା କ୍ଳାନ୍ତିକର ନ ହୋଇ, ହୋଇ ପାରିଛି ବେଶ ମନଛୁଆଁ । ବିଷୟବସ୍ତୁ ନିର୍ବାଚନରେ ଲେଖକଙ୍କ ବ୍ୟକ୍ତିତ୍ୱ ମଧ୍ୟ ଉପଲବ୍ଧ । ଏକ ଅନାଲୋଚିତ ଦିଗକୁ ବିସ୍ତୃତ ଭାବରେ ଆଲୋଚନା କରି ପୁସ୍ତକ ମାଧ୍ୟମରେ ଗୋପବନ୍ଧୁଙ୍କ ପ୍ରତି ନିଜର ଗଭୀର ଶ୍ରଦ୍ଧାଭାବ ପ୍ରକାଶ କରିଛନ୍ତି । ଗ୍ରନ୍ଥଟି କୌଣସି ବୈଷୟିକ ପ୍ରେରଣାରୁ ଲିଖିତ ହୋଇନାହିଁ, ଏଥିରେ ଲେଖକଙ୍କ ପ୍ରାଣର ସ୍ୱତଃସ୍ଫୂର୍ତ୍ତ ଆକୁଳତା, ଗଭୀର ହୃଦୟାବେଗ ମହାନ୍ ପୁରୁଷ ଗୋପବନ୍ଧୁଙ୍କ ପ୍ରତି ଅଶ୍ରୁ ତର୍ପଣ ପୂର୍ବକ ନିବେଦିତ ହୋଇଛି ।

●

ଓଡ଼ିଆ ବିଭାଗ, ବିଶ୍ୱଭାରତୀ, ଶାନ୍ତିନିକେତନ

# ଶେଷ ପୃଷ୍ଠା



ମୁରାରିମୋହନ ଜେନା

॥ ୧ ॥

ସତୁରି ବର୍ଷ ହେଲାଣି ତାହାକୁ
ଟିକିଏ ଆରାମ/ଟିକିଏ ବିରାମ
ଟିକେ ଅବସାଦ ନାହିଁ/ଟିକିଏ କ୍ଳାନ୍ତି ନାହିଁ
କପର କପର କଥାରେ ଭରିଚ
ଅବିରାମ ଭାବେ ଅଣନିଶ୍ବାସ ସୃଷ୍ଟି କରିଚି
ଯେତିକ ଯେତିକ ନାଟକର ଲେଖା/କାବ୍ୟ କବିତା
କଥା ଓ କାହାଣୀ/ଉପନ୍ୟାସର ବାଣୀ
ପଟାନ୍ତର ତା' ନାହିଁ,
ସେଇଥିପାଇଁ କି ସେଇଥି ପାଇଁ
ବିସ୍ମିତ ହୁଏ/ସସ୍ମିତ ହୁଏ
ଏଇ ମଣିଷଟା ପାଇଁ ।

॥ ୨ ॥

ପଚାଶ ବର୍ଷ ଧରି/ସାହିତ୍ୟର ଯେତେ
'ସେବା ଓ ସାଧନା କରି
ଏଇ ସାହିତ୍ୟର କୁଞ୍ଜ କାନନେ
ତା'ଆର ଲେଖନୀ
ଫୁଟାଇ ଦେଇଚି/ଲୁଟାଇ ଦେଇଛି

ଯେତେ ଅସୁମାରି ମନ ଭୁଲଣିଆ/ମନ ଲୋଭଣିଆ ଫୁଲ
ଯାହା ଅସ୍ତ ନାହିଁ/ଯାହା ଯନ୍ତ ନାହିଁ
କଳ୍ପିବା ପାଇଁ/ଜଳ୍ପିବା ପାଇଁ
ତାହାର ଅମୂଲ ମୂଲ ।

॥ ୩ ॥

ସାହିତ୍ୟ ଜୀବନ ଶିଳ୍ପ କଳାର
ସେ ଅଟଇ ପୂର୍ଣ୍ଣ
ପ୍ରଥମ ଶ୍ରେଣୀର ଦର୍ଜି,
ନିର୍ଭର ସିଏ କରି ନାହିଁ କେବେ
କାହାରଠାରୁ ତ ପାଇବା ପାଇଁ ଜ
ଟିକିଏ ମାତ୍ର ମର୍ଜି ।
ନିଜ ଅର୍ଜନେ ଅର୍ଜି ପାଇଛି
ସାହିତ୍ୟ ଜୀବନ ଶିଳ୍ପ କଳାର
ଯେତେ କମନୀୟ/ଯେତେ ନମନୀୟ
ଝଲକ ଝଲକ ଯେତିକ ଚିତ୍ରଶାଳା,
ଦେଲ ସେ ଆସିଛି ତାହାର ଗଳାରେ
ଲମ୍ବାଇବାକୁ ମାଳମାଳ ଆଜ
ଅଭିନନ୍ଦନ ମାଳା ।

॥ ୪ ॥

ଏଇ ମଣିଷକୁ ଗଢ଼ି ତୋଳିବାରେ
ଚିତ୍ତ ଉପରକୁ ଉଠାଇ ନେବାରେ
ସାହିତ୍ୟ ଦ୍ଵାରା ଯେତିକ ଯେତିକ
ଅଛି ନିର୍ଦ୍ଦେଶ ନାମା,
ତାହାରି ଲେଖକ/ଲେଖି ଯାଇଅଛୁ
ଶିଖାଇବାକୁ ଏଇ ମଣିଷକୁ

ସମୃଦ୍ଧ କର/ସଂସ୍କୃତ କର
ସାହିତ୍ୟ କଳାର ଯେତିକ ଯେତିକ
ଶାଢ଼ୀ ଓ ସେମିଜ୍
କୋଟ/ହାଓ୍ୱାଇ/ଜାମା ।

॥ ୫ ॥

ପୁଣି ବି କହିଲେ ବୁଝାଯିବ ଏଠି
ସାହିତ୍ୟରେ ଅଛି ଯେତିକ ଯେତିକ
ମାର୍ମିକତା ଓ ହାର୍ଦ୍ଦିକତାର କଥା
ସେଇଥିପାଇଁକି ବଥାଇଛି ତାର ମଥା
ତାହାରି ପାଇଁକି ସାଜ ରୂପକାର
ସକଳକୁ ସିଏ କରି ଆପଣାର
କରିଚି ତାହାରି ସାହିତ୍ୟର ଏଠି ସେବା !
ନିଜ ଉପମାର ସିଏ ଯେ ଉପମା
ଦର୍କାର ନାଇଁ/ଦର୍କାର ନାଇଁ
ଆଉ ଯେ ଉପମା ଦେବା ।



ଭଗତପୁର
କଟକ-୯